ॐ ୭ ଶ୍ରୀଶ୍ରୀ ଗୁରବେ ନମଃ

ସଚ୍ଚିଦାନନ୍ଦ ପରଜ୍ୟୋତି ଓଁକାର

ନାଦଃ ପରଃ ପୁମାନୀଶଃ ନିର୍ଗୁଣଃ ନିଷ୍କ୍ରିୟଃ ଶିବଃ

# ଶ୍ରୀଶ୍ରୀନାଦଲୀଳାମୃତ

ନାଦ ଏବ ମହଦ୍‌ବ୍ରହ୍ମ ପରମାତ୍ମା ପରଃ ପୁମାନ୍ ।
ଅଥୋ ନାଦମାଧାରାଦ୍‌ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତଂ ଶୁଦ୍ଧସ୍ଫଟିକସଙ୍କାଶଂ
କ୍ଷରୈର୍ବ୍ରହ୍ମ ପରମାତ୍ମା ।

କାମତୋଽକାମତୋ ବାପି ଯତ୍ କରୋମି ଶୁଭାଶୁଭଂ ।
ତତ୍ ସର୍ବଂ ତ୍ୱୟି ସନ୍ନ୍ୟସ୍ତଂ ତ୍ୱତ୍‌ପ୍ରଯୁକ୍ତଃ କରୋମ୍ୟହମ୍ ॥

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ ।
ବସୁନ୍ଧରା-ବାରି-ବିମାନ-ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଶ୍ରୀରାମାଶ୍ରମ
ଡୁମୁରଦହ
ହୁଗୁଲୀ

ଶ୍ରୀ ସୀତାରାମଦାସ ଓଁକାରନାଥ

ଅନୁବାଦିକା—ଶ୍ରୀମତୀ ଗୌରୀ ଦେବୀ

ପ୍ରକାଶିକା—ଶ୍ରୀମତୀ ଗୌରୀ ଦେବୀ
ବଙ୍ଗାଳିସାହି
କଟକ-୧

ପ୍ରାପ୍ତିସ୍ଥାନ
ନୀଳାଚଳ ଆଶ୍ରମ
ଚଟକ ପାହାଡ଼
ପୁରୀ

ଓ

ଶ୍ରୀଶ୍ରୀ ସୀତାରାମଦାସ ଓଁକାରନାଥ ପାଠଚକ୍ର
ଶ୍ରୀଶ୍ରୀ ରଘୁନାଥଜୀଉ ମନ୍ଦିର
ତେଲେଙ୍ଗାବଜାର
କଟକ-୧

# ଉତ୍ସର୍ଗ

ଅରବ-ରବ-ପ୍ରେମୀ ଶ୍ରୀମାନ୍ ଭୂଜେନ୍ଦ୍ରନାଥ ସରକାର

ଓ

ଅନ୍ୟାନ୍ୟ ପରମାନନ୍ଦ-ପଥର ପଥିକ

ବାପା ମାଆମାନଙ୍କ ନାମରେ ଏହି

**ଶ୍ରୀଶ୍ରୀନାଦଲୀଳାମୃତ** ଖଣ୍ଡିକ

ଉତ୍ସର୍ଗ କଲି ।

ଓଁକାରମଠ — ତୁମ୍ଭମାନଙ୍କର

ମାନ୍ଧାତା ଓଁକାରଜୀ — ସୀତାରାମ

ଗୁରୁ ସମ୍ପ୍ରଦାୟ — ବିଷ୍ଣୁପଦୀ ସଂକ୍ରାନ୍ତି

ନେମାର — ମାଘ ୩୦ ଦିନ

୧୩୭୨

ହରେକୃଷ୍ଣ ହରେକୃଷ୍ଣ କୃଷ୍ଣକୃଷ୍ଣ ହରେହରେ ।
ହରେରାମ ହରେରାମ ରାମରାମ ହରେହରେ ॥



ଶ୍ରୀଶ୍ରୀ ସୀତାରାମ ଦାସ ଓଁକାରନାଥ

# ଭୂମିକା

( ୧ )

ପରମ ଶ୍ରଦ୍ଧାଭାଜନ ଠାକୁର ଶ୍ରୀ ସୀତାରାମଦାସ ଓଙ୍କାରନାଥଜୀ "ଶ୍ରୀ ଶ୍ରୀ ନାଦଲୀଳାମୃତ" ନାମକ ଖଣ୍ଡିଏ ଉପାଦେୟ ଗ୍ରନ୍ଥ ଉପନିଷଦ୍-ପୁରାଣ ତନ୍ତ୍ରାଦି ଓ ବିବିଧ ସମ୍ପ୍ରଦାୟର ସନ୍ତ ମହାଶୟଗଣଙ୍କ ସଂଗୃହୀତ ଓ ପ୍ରକାଶିତ ବାଣୀମାନଙ୍କରୁ ସାଧକଗଣଙ୍କର କଲ୍ୟାଣ ପାଇଁ ସଙ୍କଳନ କରିଛନ୍ତି । ବାବାଜୀ ମହାରାଜଙ୍କ ପ୍ରତି ମୋର ଆନ୍ତରିକ ଗଭୀର ଶ୍ରଦ୍ଧାର ସନ୍ଧାନ ପାଇ ତାଙ୍କର ଭକ୍ତଗଣ ଏହି ଗ୍ରନ୍ଥର ଭୂମିକା ଲେଖି ଦେବାର ଭାର ମୋ ଉପରେ ଦେଇଛନ୍ତି । ମୋର ଅଯୋଗ୍ୟତା କଥା ସେମାନେ ଠାକୁରଙ୍କ ମହିମାର ଉଜ୍ଜ୍ୱଳତାରେ ଭୁଲି ଯାଇଛନ୍ତି । ମୁଁ ସେମାନଙ୍କ ଅନୁରୋଧ ରକ୍ଷା କରିବା ପାଇଁ ମୋର ଯଥାଶକ୍ତି ଚେଷ୍ଟା କରିଅଛି ଓ ନାଦତତ୍ତ୍ୱ ବିଷୟରେ ନିଜର କ୍ଷୁଦ୍ର ଅନୁଭବର ଆଧାରରେ ଶାସ୍ତ୍ରୀୟ ପରିଭାଷା ଅବଲମ୍ବନ ପୂର୍ବକ କିଛି କିଛି ରହସ୍ୟର ଚର୍ଚ୍ଚା ମଧ୍ୟ କରିଅଛି । ବିଷୟଟି ଅତ୍ୟନ୍ତ ଗହନ—ଭୂମିକାର ପରିମିତ ପରିସରରେ ଏହାର ସମ୍ୟକ୍ ଆଲୋଚନା ସମ୍ଭବପର ନୁହେଁ । ତଥାପି ଗ୍ରନ୍ଥକାରଙ୍କର ପୁଣ୍ୟ ସ୍ମୃତି ଓ ଶ୍ରୀଗୁରୁଙ୍କର ସ୍ୱତଃ-ସ୍ଫୂର୍ତ୍ତି କରୁଣା ମୋତେ ପ୍ରତି ପଦକ୍ଷେପରେ ବଳସଞ୍ଚାର ପୂର୍ବକ ଚଳାଇ ନେଇଛି ।

ଆତ୍ମ ସ୍ୱରୂପରେ ପୁନଃ ପ୍ରତିଷ୍ଠିତ ହେବାପାଇଁ ଶାସ୍ତ୍ରରେ ଯେଉଁ ସବୁ ଉପାୟ ନିର୍ଦ୍ଦିଷ୍ଟ ହୋଇଅଛି, ତନ୍ମଧ୍ୟରେ ନାଦସାଧନା ଅଥବା ନାଦାନୁସନ୍ଧାନ ଉତ୍କୃଷ୍ଟ ଉପାୟ ମଧ୍ୟରେ ପରିଗଣିତ ହୁଏ। ମହାଜନଗଣ ମୁକ୍ତ କଣ୍ଠରେ ନାଦର ମହିମା କୀର୍ତ୍ତନ କରିଛନ୍ତି। ପ୍ରାଚୀନ କାଳରେ ବାଗ୍ ଯୋଗକୁ ମୁମୁକ୍ଷୁ ଜନର ଆଶ୍ରୟ ଯୋଗ୍ୟ ସର୍ବାପେକ୍ଷା ସରଳ ରାଜମାର୍ଗ ବୋଲି ମନେ କରାଯାଉଥିଲା। ପରବର୍ତ୍ତୀ କାଳରେ ସନ୍ତଗଣ "ସୁରତ ଶବ୍ଦ-ଯୋଗ" ଆଖ୍ୟା ଦେଇ ଏବଂ ବୈଷ୍ଣବ ଆଦି ସମ୍ପ୍ରଦାୟର ଭକ୍ତଗଣ ନାମକୀର୍ତ୍ତନର ମାହାତ୍ମ୍ୟ ଘୋଷଣା କରି ପ୍ରକାରାନ୍ତରରେ ମନଃ-ସ୍ଥୈର୍ଯ୍ୟ ସାଧନ ପକ୍ଷରେ ଓ ମୂଢ଼ଚିତ୍ତର ବୋଧନ ପାଇଁ ନାଦର ପରମ ଉପଯୋଗିତା ସ୍ୱୀକାର କରିଅଛନ୍ତି। ଯୋଗ ଓ ତାନ୍ତ୍ରିକ ସାଧନାରେ ମନ୍ତ୍ର-ଜପ ଭିତରେ ମଧ୍ୟ ନାଦର ହିଁ ସର୍ବାତିଶାୟୀ ମହତ୍ତ୍ୱ ପ୍ରକାଶିତ ହୋଇଅଛି।

ଆତ୍ମା ନିର୍ବିକଳ୍ପ ପ୍ରକାଶାତ୍ମକ ସ୍ୱାତନ୍ତ୍ର୍ୟମୟ ଶିବ ସ୍ୱରୂପ— ଏହା ନିତ୍ୟ, ଶୁଦ୍ଧ, ବୁଦ୍ଧ ଓ ମୁକ୍ତ। କିନ୍ତୁ ଜୀବ ପରମ ସ୍ୱରୂପରେ ଶିବମୟ ହେଲେ ମଧ୍ୟ ପତିତ ଦଶାରେ ପରସ୍ୱରୂପ ଓ କେବଳ-ଚିଦ୍ରୂପ ଅପର ସ୍ୱରୂପ ଉଭୟଙ୍କୁ ବିସ୍ମୃତ ହୋଇ ରହିଅଛି। ଖାଲି ତାହା ନୁହେଁ, ସେ ଅନାତ୍ମ ବସ୍ତୁକୁ ଆତ୍ମା ବୋଲି ଭାବି ସେଥିରେ ଅହଂଭାବ ଆରୋପ କରୁଅଛି ଏବଂ ତଦନୁସାରେ କର୍ମ ସମ୍ପାଦନ ପୂର୍ବକ ସୁଖ-ଦୁଃଖ ରୂପରେ ସେହି ଫଳ ଭୋଗ କରୁଅଛି। ଏହାହିଁ ତାହାର ମାୟାଧୀନ ସାଂସାରିକ ଜୀବନ।

ଅଶୁଦ୍ଧ ବିକଳ୍ପର ଶୋଧନ ନ ହେବା ପର୍ଯ୍ୟନ୍ତ ଆତ୍ମା ନିଜ ସ୍ୱରୂପରେ ସ୍ଥିତିଲାଭ କରିପାରେ ନାହିଁ ଏବଂ ତାହାର ସ୍ୱାଭାବିକ ଐଶ୍ୱର୍ଯ୍ୟ ମଧ୍ୟ ଫୁଟି ଉଠିପାରେ ନାହିଁ। କିନ୍ତୁ ଏହି ଅଶୁଦ୍ଧ-ବିକଳ୍ପ-ଯୁକ୍ତ ଆତ୍ମାର ସ୍ଥିତି ସମସ୍ତଙ୍କ ପକ୍ଷରେ ଗୋଟିଏ ପ୍ରକାର ନୁହେଁ। ଏପରି

ଆତ୍ମା ସବୁ ଅଛନ୍ତି ଯେଉଁମାନେ ବିକଳ୍ପଯୁକ୍ତ ହୋଇ ମଧ୍ୟ ଅତି ଉଚ୍ଚ ଅଧିକାରସମ୍ପନ୍ନ । ଏମାନଙ୍କୁ କିମ୍ବାମାତ୍ର ଅବଲମ୍ବନ ପୂର୍ବକ କୌଣସି ବିଶିଷ୍ଟ ସାଧନାପଦ୍ଧତି ଅନୁସରଣ କରିବାକୁ ହୁଏ ନାହିଁ—ଏମାନେ ମନ୍ତ୍ର, ପୂଜା, ଧ୍ୟାନ, ଚର୍ଯ୍ୟା ପ୍ରଭୃତି କୌଣସି ନିୟନ୍ତ୍ରଣର ଅଧୀନ ନୁହନ୍ତି । ଏମାନେ ଭଗବାନଙ୍କର ଅତି ତୀବ୍ର ଅନୁଗ୍ରହ ପ୍ରାପ୍ତ ମହାପୁରୁଷ । ଏମାନଙ୍କର ଆତ୍ମ ସ୍ୱରୂପରେ ସମାବେଶ କୌଣସି ଉପାୟର ଅପେକ୍ଷା ରଖେ ନାହିଁ । ଯଥା ସମୟରେ ଏମାନଙ୍କ ଭିତରୁ ସ୍ୱାଭାବିକ ବିବେକ ଜ୍ଞାନ ଉତ୍ପନ୍ନ ହୁଏ ବୋଲି ଏମାନେ ବୁଝି ପାରନ୍ତି ଯେ ସ୍ୱ-ପ୍ରକାଶ ଶିବରୂପୀ ଆତ୍ମାକୁ ପ୍ରକାଶିତ କରିବାର ସାମର୍ଥ୍ୟ କୌଣସି ସାଧନା ବା ଉପାୟରେ ନାହିଁ । ଏହିପରି ବିବେକ ଉତ୍ପନ୍ନ ହେବା ଫଳରେ ଏମାନେ କ୍ଷଣକରେ ନିମରହିତ ଭାବରେ ଶିବାବେଶ ଲାଭ କରିଥାନ୍ତି । ଏମାନଙ୍କର ବିବେଚନ-ପ୍ରକାର କେତେକଟା ଏହିପରି—ଗୋଟିଏ ମାତ୍ର ଚିଦାତ୍ମିକ ଅପରିଚ୍ଛିନ୍ନ ତତ୍ତ୍ୱ ଅଛି; ଦେଶ, କାଳ, ଉପାଧି, ଆକାର, ଶବ୍ଦ ଓ ପ୍ରମାଣ ତାହାକୁ କିଦ୍‌ମାତ୍ର ସ୍ପର୍ଶ କରିପାରେ ନାହିଁ । ଏହି ତତ୍ତ୍ୱଟି ଅନ୍ୟ-ନିରପେକ୍ଷ ବୋଲି ସ୍ୱତନ୍ତ୍ର ଏବଂ ଆନନ୍ଦଘନ । ଖାଲି ଚେତକ ନୁହେଁ । ଏମାନେ ଭିତରୁ ଅନୁଭବ କରି ପାରନ୍ତି ଯେ ଏହି ତତ୍ତ୍ୱ ହିଁ ଏମାନଙ୍କର ନିଜ ସ୍ୱରୂପ । ଏମାନେ ପ୍ରତ୍ୟେକେ ହିଁ "ମୁଁ" ରୂପରେ ଏହି ତତ୍ତ୍ୱକୁ ଉପଲବ୍ଧି କରିଥାନ୍ତି ଏବଂ ଦେଖି ପାରନ୍ତି ଯେ ସମଗ୍ର ବିଶ୍ୱ ଏହି 'ମୁଁ'ରେ ପ୍ରତିବିମ୍ବ ପରି ଭାସମାନ ହୋଇଅଛି ।

ଏହି ସବୁ ପୁରୁଷଙ୍କର କିଞ୍ଚିତ୍ ନିମ୍ନସ୍ତରରେ ଏପରି ସବୁ ଆତ୍ମା ଅଛନ୍ତି, ଯେଉଁମାନେ ପୂର୍ବୋକ୍ତ ଆତ୍ମବର୍ଗଙ୍କ ପରି ଅଖଣ୍ଡ-ମଣ୍ଡଳ-ରୂପ ମହାପ୍ରକାଶରେ ସ୍ୱୟଂ ପ୍ରବେଶ କରି ପାରନ୍ତି ନାହିଁ ସତ, କିନ୍ତୁ ଆତ୍ମ ସ୍ୱରୂପରୁ ଅଭିନ୍ନ ସ୍ୱାତନ୍ତ୍ର୍ୟ-ଶକ୍ତିକୁ ଉପାୟରୂପେ

ଆଶ୍ରୟ କରି ବିନା ଆୟାସରେ ସେଥିରେ ପ୍ରବିଷ୍ଟ ହୁଅନ୍ତି, ଆଉ କିଛି ପୃଥକ୍ ଉପାୟ ଅବଲମ୍ବନ ଆବଶ୍ୟକ ହୁଏ ନାହିଁ । ଏମାନେ ମଧ୍ୟ ବିଧି-ନିଷେଧର ଅତୀତ ଏବଂ ମନ୍ତ୍ର, ପୂଜା, ଧ୍ୟାନ, ଚର୍ଯ୍ୟାଦି ନିୟନ୍ତ୍ରଣରୁ ମୁକ୍ତ । ଏହି ଯେଉଁ ସ୍ୱାତନ୍ତ୍ର୍ୟ-ଶକ୍ତି କଥା କୁହାଗଲା, ତାହାହିଁ ଦର୍ପଣ ତୁଲ୍ୟ ବୋଧାକାଶରେ ପ୍ରତିବିମ୍ବ ମୂଳ ଭାବ-ସମୂହକୁ ପ୍ରକାଶ କରାଏ । ପ୍ରକାଶଠାରୁ ପୃଥକ୍-ରୂପେ ଭାବସମୂହ ଭାସମାନ ହୋଇ ପାରେନାହିଁ—ଏଥିପାଇଁ ସମସ୍ତ ଭାବହିଁ ସ୍ୱରୂପତଃ ପ୍ରତି-ବିମ୍ବାତ୍ମକ । ପରମେଶ୍ୱରଙ୍କୁ ଯେ ବିଶ୍ୱରୂପ ବୋଲି କୁହାଯାଏ ଏହାହିଁ ତାହାର କାରଣ—ସେ ଅଜଡ଼ ବା ଚିଦାତ୍ମକ ବୋଲି ନିଜ ସ୍ୱରୂପର ଆମର୍ଶନ ସେଥିରେ ସର୍ବଦା ହେଉଅଛି । ଏହା ଅନେକଟା ନିଜ ମୁହଁ ନିଜେ ଦେଖିଲା ପରି । ଏହାହିଁ ସ୍ୱୟଂ ପ୍ରକାଶ ତତ୍ତ୍ୱର ମହିମା । ଏହି ଆମର୍ଶନର ମୂଳ ଯାହା, ତାହାରି ନାମ ପରନାଦ । 'ପରାବାକ୍' ରୂପେ ଏହାର ସ୍ୱରୂପ ଆଗମ ଶାସ୍ତ୍ରରେ କୀର୍ତ୍ତିତ ହୋଇ-ଥାଏ । ସ୍ୱରରୂପୀ ପରାମର୍ଶଗୁଡ଼ିକ ବୀଜ ଏବଂ ସେଥିରୁ ଉଦ୍ଭୂତ ବ୍ୟଞ୍ଜନରୂପୀ ପରାମର୍ଶଗୁଡ଼ିକ ଯୋନି । ଏହି ସବୁ ପରାମର୍ଶହିଁ ଶକ୍ତିର ନିଜ ସ୍ୱରୂପ । ମାୟିକ ଭୂମିରେ ଏବଂ ମାୟାତୀତ ବିଶୁଦ୍ଧ ବିଦ୍ୟାସ୍ତରରେ ଏଗୁଡ଼ିକ କାର୍ଯ୍ୟ କରିଥାନ୍ତି । ବିଶୁଦ୍ଧ ଶିବମୟ ଆତ୍ମ ସ୍ୱରୂପରେ ଏମାନେ ସମଷ୍ଟିଭାବରେ "ପୂର୍ଣ୍ଣ-ଅହନ୍ତା"-ରୂପ ଗ୍ରହଣ କରି ପରା-ବାଣୀ ରୂପରେ ବିରାଜ କରନ୍ତି, କିନ୍ତୁ ବିଶୁଦ୍ଧ ବିଦ୍ୟାସ୍ତରରେ ଏମାନଙ୍କ ମଧ୍ୟରେ ମାୟାର ଉନ୍ମେଷମାତ୍ର-ରୂପକ କିଞ୍ଚିତ୍ ସଙ୍କୋଚ ଆବିର୍ଭୂତ ହୁଏ । ମନ୍ତ୍ରର ସ୍ୱରୂପ ଏବଂ ମନ୍ତ୍ରାଧିଷ୍ଠାତା ଗୁରୁଙ୍କର ସ୍ୱରୂପ ଏହି ସ୍ଥାନରେ ପ୍ରତିଷ୍ଠିତ । କିନ୍ତୁ ମାୟିକ ଭୂମିରେ ଏହି ସବୁ ପରାମର୍ଶ ମାୟିକ ବର୍ଣ୍ଣର ରୂପ ଧାରଣ କରି ଆତ୍ମପ୍ରକାଶ କରେ । ଏହି ସ୍ଥଳରେ ଭେଦ ଏବଂ ବିଭାଗ

ଉଭୟହିଁ ପରସ୍ପରନ୍ତ ଭାବରେ ପ୍ରକାଶିତ ହୁଏ । ଏହି ବର୍ଣ୍ଣ ସବୁ ପଶ୍ୟନ୍ତୀ, ମଧ୍ୟମା ଓ ବୈଖରୀ ଦଶାରେ ବ୍ୟବହାରଯୋଗ୍ୟ ହୁଏ ଓ କ୍ରମଶଃ ବାହ୍ୟ ରୂପରେ ପ୍ରକଟ ହୋଇ ତତ୍ତ୍ୱରୂପରେ ଫୁଟିଉଠେ । ଏହି ସବୁ ମାୟୀୟ ବର୍ଣ୍ଣ ଜୀବନୀଶକ୍ତିଶୂନ୍ୟ ଶବ ପରି—ଏମାନଙ୍କର ନିଜର କିଛି ସାମର୍ଥ୍ୟ ନାହିଁ, କିନ୍ତୁ ପୂର୍ବବର୍ଣ୍ଣିତ ଶୁଦ୍ଧ ପରାମର୍ଶଗୁଡ଼ିକ ଏମାନଙ୍କୁ ଉଜ୍ଜୀବିତ କଲେ ଏମାନେ କାର୍ଯ୍ୟକ୍ଷମ ହୁଅନ୍ତି । ସେତେ-ବେଳେ ଏହିସବୁ ବର୍ଣ୍ଣ ବୀର୍ଯ୍ୟସମ୍ପନ୍ନ ହୋଇ ଭୋଗ ଓ ମୋକ୍ଷ ପ୍ରଦାନ କରିଥାନ୍ତି । ଯେଉଁ ପୁରୁଷ ନିଜର ଆତ୍ମାକୁ ସାକ୍ଷାତ୍କାର କରିବା ଅବସରରେ ଦେଖିପାରେ ଯେ ତାହାହିଁ ସମସ୍ତ ପରାମର୍ଶ ଅଥବା ଶକ୍ତିର ଏକମାତ୍ର ବିଶ୍ରାନ୍ତି-ସ୍ଥଳ, ସେହିଥିରେ ସମସ୍ତ ତତ୍ତ୍ୱ ଓ ଭୁବନ ପ୍ରଭୃତି ପ୍ରତିବିମ୍ବିତ ରହିଅଛି, ସେ ବିନା ପରିଶ୍ରମରେ ନିର୍ବିକଳ୍ପ ଭଗବତ୍ ସ୍ୱରୂପରେ ସମାବେଶ ଲାଭ କରେ, ତାହାର ଅନ୍ୟ କୌଣସି ସାଧନାର ପ୍ରୟୋଜନ ହୁଏ ନାହିଁ—ଏପରି କି ବିକଳ୍ପ-ସଂସ୍କାର ପାଇଁ ଭାବନା ମଧ୍ୟ ଆବଶ୍ୟକ ହୁଏ ନାହିଁ ।

ଯେଉଁ ସବୁ ଆତ୍ମା ଆହୁରି ନିମ୍ନସ୍ତରରେ ଅଛନ୍ତି, ସେମାନଙ୍କର ଅଧିକାର ଆହୁରି ସଙ୍କୁଚିତ । ପୂର୍ବବର୍ତ୍ତୀ ସ୍ତରରେ ବିକଳ୍ପ-ସଂସ୍କାରରେ କ୍ରମ ନ ଥାଏ—ଏହା କ୍ଷଣକରେ ସମ୍ପନ୍ନ ହୁଏ, କିନ୍ତୁ ନିମ୍ନସ୍ତରରେ କ୍ରମ ଥାଏ ଏବଂ ତାହାର ନାମ ଭାବନା । କିନ୍ତୁ ଭାବନା ପୂର୍ବରୁ ସତ୍-ତର୍କ, ସଦ୍-ଆଗମ ଓ ସଦ୍ଗୁରୁଙ୍କର ଉପଦେଶର ଆବଶ୍ୟକତା ଅଛି । ବର୍ତ୍ତମାନ କ୍ଷେତ୍ରରେ ଶୁଦ୍ଧ ବିକଳ୍ପ ଦ୍ୱାରା ଅଶୁଦ୍ଧ ବିକଳ୍ପର ସଂସ୍କାରକାର୍ଯ୍ୟ ସମ୍ପନ୍ନ କରିବାକୁ ହୁଏ । ଅନାଦି କାଳରୁ ପ୍ରତି ଜୀବ-ହୃଦୟରେ "ମୁଁ ବଦ୍ଧ" ଏହିପରି ଯେଉଁ ଧାରଣା ନିରୂଢ଼ ରହିଅଛି, ତାହାହିଁ ଅଶୁଦ୍ଧ ବିକଳ୍ପ— ସେହିଥିରୁ ସଂସାର ଉତ୍ପନ୍ନ ହୁଏ ।

ଭଗବାନଙ୍କର ଅନୁଗ୍ରହ-ଶକ୍ତି ତୀବ୍ର ମାତ୍ରାରେ ସଞ୍ଚାରିତ ହେଲେ ସଦ୍‌ଆଗମ ପ୍ରଭୃତି ନମ ଅବଲମ୍ବନ କରି ବିକଳ୍ପ ଶୋଧିତ ହୁଏ ଓ ପରତତ୍ତ୍ୱରେ ପ୍ରବେଶଲାଭ ଘଟେ । ପରତତ୍ତ୍ୱ ମଧ୍ୟ ଶୁଦ୍ଧ ବିକଳ୍ପର ବିଷୟ ନୁହେଁ । ଶୁଦ୍ଧ ବିକଳ୍ପ ଦ୍ୱାରା ଅଶୁଦ୍ଧ ଦ୍ୱୈତ ବାସନା ନିବୃତ୍ତ ହୁଏ, ପରତତ୍ତ୍ୱର ପ୍ରକାଶନ ପାଇଁ ଏହାର କୌଣସି କାରଣ ନାହିଁ । ପରତତ୍ତ୍ୱ ସର୍ବଦା ସର୍ବରୂପ ବୋଲି ସ୍ୱପ୍ରକାଶ, ବିକଳ୍ପର କୌଣସି ପ୍ରକାର ପ୍ରଭାବ ଏହା ଉପରେ ପଡ଼େ ନାହିଁ । ଶକ୍ତିପାତ ଅତ୍ୟନ୍ତ ଅଧିକ ହେଲେ ଆପେ ଆପେ ହୃଦୟାଭ୍ୟନ୍ତରରେ ସତ୍-ତର୍କର ଉଦୟ ହୁଏ । ଏହାକୁ ସାଧାରଣତଃ ଦୈବୀ ଦୀକ୍ଷା ବୋଲି ବର୍ଣ୍ଣନା କରାଯାଇଥାଏ । ଶକ୍ତିପାତର ମାତ୍ରା ଅପେକ୍ଷାକୃତ କମ୍ ହେଲେ ସାକ୍ଷାତ୍ ଭାବରେ ସତ୍-ତର୍କ ଉଦିତ ହୁଏ ନାହିଁ ସତ, କିନ୍ତୁ ଆଗମକୁ ଆଶ୍ରୟ କରି ହୁଏ । ଯେ ଆଗମର ନିରୂପଣ କରନ୍ତି ସେ ଗୁରୁ । ଆଗମ ଶବ୍ଦାତ୍ମକ ସଜାତୀୟ ବିକଳ୍ପାତ୍ମକ, ସେଥିରୁ ସମୁଚିତ ବିକଳ୍ପ ଉତ୍ପନ୍ନ ହୁଏ । ଏହି ସବୁ ବିକଳ୍ପ ବିଶୁଦ୍ଧ ବିକଳ୍ପ, ଏମାନଙ୍କ ଅବିଚ୍ଛିନ୍ନ ପ୍ରବାହ ହିଁ ସତ୍-ତର୍କର ସ୍ୱରୂପ । ପ୍ରଚଳିତ ଭାଷାରେ ଯାହାକୁ ଭାବନା ବୋଲି କୁହାଯାଏ, ତାହା ଏହି ସତ୍ତର୍କର ଧାରା ମାତ୍ର । ଯେଉଁ ଭୂତାର୍ଥ ଅସ୍ଫୁଟ ବୋଲି ଅଭୂତବତ୍ ବିଦ୍ୟମାନ ଥାଏ, ତାହା ମଧ୍ୟ ଏହା ଦ୍ୱାରା ପରିସ୍ଫୁଟ ହୁଏ । ଏହା ହିଁ ବସ୍ତୁତଃ ଶୁଦ୍ଧ ବିଦ୍ୟାର ପ୍ରକାଶ ଏବଂ ଯୋଗର ଏକମାତ୍ର ଅଙ୍ଗ । ଏହା ହିଁ ସାକ୍ଷାତ୍ ଯୋଗାଙ୍ଗ—ଅନ୍ୟାନ୍ୟ ଯୋଗାଙ୍ଗ ଅଳ୍ପାଧିକ ପରିମାଣରେ ବ୍ୟବଧାନ ବିଶିଷ୍ଟ ।

କିନ୍ତୁ ଯେଉଁସବୁ ସାଧକମାନଙ୍କର ଆଧାରଗତ ଯୋଗ୍ୟତା ଆହୁରି କମ୍ ସେମାନଙ୍କର ମଳିନ ବିକଳ୍ପ ଶୋଧନ ପାଇଁ ଶୁଦ୍ଧ ବିକଳ୍ପ ଯଥେଷ୍ଟ ନୁହେଁ । ତାଙ୍କୁ ସାହାଯ୍ୟ କରିବା ପାଇଁ ଜୀବସତ୍ତ୍ୱର

ବଦଗରୁ କୌଣସି ଗୋଟିଏ ଉପାୟ ଅବଲମ୍ବନ କରିବା ଆବଶ୍ୟକ । ଏହି ସବୁ ଉପାୟକୁ ହିଁ ସାଧାରଣତଃ ଜୀବର ସାଧନ ବୋଲି ବର୍ଣ୍ଣନା କରାଯାଏ । ଏହି ସବୁ ସାଧନ ବିଭିନ୍ନ ପ୍ରକାରର ହୋଇପାରେ । ତା ମଧ୍ୟରେ ତିନୋଟି ପ୍ରଧାନ—

୧ । ଗୋଟିଏ ଧ୍ୟାନାତ୍ମକ । ଏହା ବୁଦ୍ଧିର କାର୍ଯ୍ୟ । ବୁଦ୍ଧିର ଅସାଧାରଣ ଧର୍ମ ଅନୁସନ୍ଧାନ ।

୨ । ଦ୍ୱିତୀୟଟି ସ୍ଥୂଳରେ ଉଚ୍ଚାରଣାତ୍ମକ ଏବଂ ସୂକ୍ଷ୍ମରେ ବର୍ଣ୍ଣାତ୍ମକ । ଏହା ପ୍ରାଣର କାର୍ଯ୍ୟ । ଏହା ହିଁ ପ୍ରାଣର ଅସାଧାରଣ ଧର୍ମ ।

୩ । ତୃତୀୟଟି କରଣ-ମୁଦ୍ରାଦି କ୍ରିୟାତ୍ମକ । ଏହା ଦେହ ଇନ୍ଦ୍ରିୟ ପ୍ରଭୃତିର ବ୍ୟାପାର । ଇନ୍ଦ୍ରିୟ ବିଷୟ ପ୍ରାଣ ଆଦି ସମସ୍ତଙ୍କର ପିଣ୍ଡରୂପେ ଏକୀଭାବରେ ସଂସ୍ଥାନ ହିଁ ଦେହର ବିଶିଷ୍ଟ ଧର୍ମ ।

ଯେଉଁ ଉପାୟ ଦେହଠାରୁ ମଧ୍ୟ ବାହ୍ୟ ତାହା ଅତ୍ୟନ୍ତ ସ୍ଥୂଳ ଉପାୟ । ଏଠାରେ ତାହାର ଆଲୋଚନା କରାଯାଉ ନାହିଁ ।

ଯେ ବୁଦ୍ଧିସ୍ତରରେ ଅଭିମାନ ସମ୍ପନ୍ନ ତାଙ୍କ ପକ୍ଷରେ ଧ୍ୟାନ ହିଁ ଶ୍ରେଷ୍ଠ ଉପାୟ । ଯେ ପ୍ରାଣମୟ ଭୂମିରେ ଅଧିଷ୍ଠିତ, ତାଙ୍କ ପକ୍ଷରେ ଉଚ୍ଚାରଣ ହିଁ ପ୍ରଧାନ ଉପାୟ । ଯେଉଁ ସାଧକଙ୍କର ଦେହାତ୍ମଭାବ ଅତ୍ୟନ୍ତ ପ୍ରବଳ, ତାଙ୍କ ପକ୍ଷରେ କରଣ ମୁଦ୍ରା ଆସନ ପ୍ରଭୃତି ଉପାୟ ବିକଳ୍ପ-ଉପଶମ ପକ୍ଷରେ ସମଧିକ ଉପଯୋଗୀ । କିନ୍ତୁ ଏ ସମସ୍ତର ପୃଷ୍ଠଦେଶରେ ଶୂନ୍ୟ ଭୂମିରେ ସାଧନାର କୌଣସି ଉପଯୋଗ ସମ୍ଭବପର ନୁହେଁ ।

କଥାଟା ଆଉରି ସ୍ପଷ୍ଟ କରି କହୁଛୁ—ଏହି ବିଶ୍ୱ ପ୍ରମାତୃ-ପ୍ରମେୟାତ୍ମକ,—ଏହା ଆତ୍ମା ସାଙ୍ଗରେ ଅବିଭକ୍ତ ରୂପେ ଅବସ୍ଥିତ ବୋଲି ସମସ୍ତ ବୈଚିତ୍ର୍ୟସତ୍ତ୍ୱେ ବସ୍ତୁତଃ ପ୍ରକାଶାତ୍ମକ ଅଟେ । ଶୁଦ୍ଧ

ସଂବିତ୍-ସ୍ୱରୂପ ଆତ୍ମା ପୂର୍ଣ୍ଣ ହୋଇ ମଧ୍ୟ ଲୀଳାନ୍ତଳରେ ସ୍ୱାତନ୍ତ୍ୟ-ବୋଲି ନିଜ ମଧ୍ୟରେ ଅପୂର୍ଣ୍ଣତା ଅନ୍ୱେଷଣ କରିବାକୁ ଇଚ୍ଛାକରି ନିଜଠାରୁ ଅବିଭକ୍ତ ସମଗ୍ର ବିଶ୍ୱକୁ ନିଜଠାରୁ ବିଭକ୍ତବତ୍ କରନ୍ତି ଏବଂ ନିଜକୁ ସେତେବେଳେ ବିଶ୍ୱୋତ୍ତୀର୍ଣ୍ଣରୂପେ ଆମର୍ଶନ କରି ବିବିକ୍ତ ଆକାଶ ରୂପ ଧାରଣ କରନ୍ତି, ଅର୍ଥାତ୍ ସବୁପ୍ରକାର ଭାବରୁ ମୁକ୍ତ ହୋଇ ଅନାବୃତ ରୂପେ ସ୍ଫୁରିତ ହୁଅନ୍ତି । ଏହାହିଁ ଚୈତନ୍ୟର ଶୂନ୍ୟରୂପତା । ଯେଉଁ ପ୍ରମାତା ଏହି ଦଶାର ଅଧିଷ୍ଠାତା ତାହାଙ୍କୁ ହିଁ ଶୂନ୍ୟପ୍ରମାତା କୁହାଯାଏ । ମନେ ରଖିବାକୁ ହେବ ଏହି ଶୂନ୍ୟ ବସ୍ତୁତଃ ଶୂନ୍ୟ ନୁହେଁ, ଏହା ଅଭାବର ହିଁ ନାମାନ୍ତର—ଅର୍ଥାତ୍ ଯାବତୀୟ ଅବଲମ୍ବନ-ଧର୍ମ, ସଂସ୍କାରବର୍ଗ ଓ କ୍ଲେଶ ନ ରହିଲେ ସେହି ଅଭାବକୁହିଁ ଶୂନ୍ୟ ବୋଲି ଗଣନା କରାଯାଏ । ଏହି ଅବସ୍ଥାରେ ଭାବାତ୍ମକ ଅନୁଭୂତି ହୁଏ ନାହିଁ ।

ଶୂନ୍ୟପ୍ରମାତା କିଞ୍ଚିତ୍ ବହିର୍ମୁଖ ହେଲାକ୍ଷଣି ପ୍ରାଣପ୍ରମାତା ରୂପରେ ପରିଣତ ହୁଏ । ଶୂନ୍ୟପ୍ରମାତା ନିଜକୁ ଅପୂର୍ଣ୍ଣ ଭାବେ ବୋଲି ତାର ହୃଦୟରେ ଆକାଙ୍କ୍ଷା ଉଦୟ ହୁଏ ଏବଂ ଏହି ଆକାଙ୍କ୍ଷାର ବିଷୟକୁ ଗ୍ରହଣ କରିବା ପାଇଁ ସେ ନିଜ ସତ୍ତାଠାରୁ ପୃଥକକୃତ୍ ଆନ୍ତର ଓ ବାହ୍ୟ ପଦାର୍ଥ ଆଡକୁ ଆକୃଷ୍ଟ ହୁଏ, ଅର୍ଥାତ୍ ତାହାର ବହିର୍ମୁଖ ଭାବର ଉଦୟ ହୁଏ । ଏହି ସମୟରେ ସେ ପ୍ରାଣପ୍ରମାତା ନାମରେ ଅଭିହିତ ହୁଏ ।

ପ୍ରାଣ କଣ ? କିଞ୍ଚିତ୍ ଚଳନ ଅଥବା ସ୍ପନ୍ଦନର ପ୍ରଥମ ପ୍ରସର । ସଂବିତ୍ ବା ଚୈତନ୍ୟଶକ୍ତିଶୂନ୍ୟତା ପ୍ରକାଶ କରି ତାହା ଉପରେ ପ୍ରାଣ ରୂପ ଧାରଣ କରେ । ବାସ୍ତବିକ ବୁଦ୍ଧିର ଆବିର୍ଭାବର ପୂର୍ବରୁ ପ୍ରାଣର ଉଲ୍ଲାସ ଘଟିଥାଏ, କାରଣ ଅନ୍ତଃକରଣତତ୍ତ୍ୱର ସାରଭୂତ ବୁଦ୍ଧି ପ୍ରାଣକୁ ଆଶ୍ରୟ କରି ଆତ୍ମପ୍ରକାଶ କରିବାକୁ ସମର୍ଥ ହୁଏ ।

ଜୀବର ସ୍ୱାଧିଷ୍ଠିତ ଭୂମିର ତାରତମ୍ୟ ବଶତଃ ତାର ସାଧନ ପ୍ରକାରରେ ତାରତମ୍ୟ ଘଟିଥାଏ । ନିମ୍ନତମ ସ୍ତରର ଆତ୍ମାରେ ଜୀବ ଭାବ ପ୍ରବଳ ଥାଏ ବୋଲି ଜୀବର ଆଧାରନିଷ୍ଠ ବୈଚିତ୍ର୍ୟ ଅନୁସାରେ ତାହାର ସାଧନାର ବୈଶିଷ୍ଟ୍ୟ ସ୍ୱାଭାବିକ ।

ଅତଏବ ପ୍ରମାଣ ଭୂମିରେ ଉଚ୍ଚାର, ବୁଦ୍ଧି ଭୂମିରେ ଧ୍ୟାନ ଏବଂ ଦେହ ଭୂମିରେ କରଣ ଆଦି ଉପାୟ ରୂପେ ପରିଗଣିତ ହୁଏ । ଏହା ମଧ୍ୟରେ ଉଚ୍ଚାର ଆଦି ସବୁଠାରୁ ଅନ୍ତରଙ୍ଗ ଉପାୟ, ଧ୍ୟାନ ଆଦି ତାହା ତୁଳନାରେ ବହିରଙ୍ଗ ବୋଲି ଜାଣିବାକୁ ହେବ । ପ୍ରାଣାଦି ଜଡ଼ ଓ ଅପାରମାର୍ଥିକ ହେଲେ ମଧ୍ୟ ସେମାନଙ୍କର ଉଚ୍ଚାରାଦି ପରମାର୍ଥିକ ସ୍ୱରୂପପ୍ରାପ୍ତିର ସହାୟକ ହେବାରେ ବାଧା ନାହିଁ । ଏହାର ଏକମାତ୍ର କାରଣ ଏହି କି ଯେ, ପ୍ରାଣାଦି ପ୍ରମାତାରେ ଅହନ୍ତା ରହିଛି ବୋଲି ଜ୍ଞାତୃତ୍ୱ ଓ କର୍ତ୍ତୃତ୍ୱରୂପକ ପରମ ଐଶ୍ୱର୍ଯ୍ୟ ବିକଳ୍ପ ରୂପରେ ଉପସ୍ଥିତ ହୋଇପାରେ । କାରଣ ବିଭିନ୍ନ ପ୍ରକାର ଅବଚ୍ଛେଦ ଭିତର ଦେଇ ପରିସ୍ଫୁଟ ରୂପେ ଅବ-ଧାରଣ ସମ୍ଭବପର । ଏହା ଫଳରେ ତଦ୍‌ଗତ ଉଚ୍ଚାର ଅଥବା ଧ୍ୟାନ ପାରମାର୍ଥିକ ସ୍ୱରୂପଲାଭର ନିମିତ୍ତ ହୋଇପାରେ । ଶୂନ୍ୟ-ପ୍ରମାତାଠାରେ ମଧ୍ୟ ଏହି ପ୍ରକାର ଐଶ୍ୱର୍ଯ୍ୟ ସମ୍ଭବପର, କିନ୍ତୁ ପ୍ରାଣାଦି ପ୍ରମାତାଠାରେ ଯେପରି ନିଯୁତ ଅବଚ୍ଛେଦ ଅଛି, ଶୂନ୍ୟ-ପ୍ରମାତାରେ ସେ ପ୍ରକାର କୌଣସି ଅବଚ୍ଛେଦ ନାହିଁ । ସେଥିପାଇଁ ତାହା ବିକଳ୍ପିତ ହୋଇ ପାରେ ନାହିଁ ଏବଂ ସେଇଥିପାଇଁ ପରମାର୍ଥ-ପ୍ରକାଶର ନିମିତ୍ତ ମଧ୍ୟ ହୋଇପାରେ ନାହିଁ ।

ପ୍ରଶ୍ନ ହୋଇପାରେ, ପ୍ରାଣାଦି ଜଡ଼ ହୋଇ ମଧ୍ୟ ଯଦି ସେମାନଙ୍କ ବିଷୟ ପାରମାର୍ଥିକ ସ୍ୱରୂପ ପ୍ରାପ୍ତିର ନିମିତ୍ତ ହୋଇ-ପାରେ ତେବେ ଘଟପଟାଦି ବାହ୍ୟ ଜଡ଼ ପଦାର୍ଥ ବିଷୟ ମଧ୍ୟ କାହିଁକି

ସେହିପରି କମିତ୍ୟ ହୋଇ ନ ପାରିବ ? ଏହାର ସମାଧାନ ହେଲା—ପ୍ରାଣାଦି ଜଡ଼ ଓ ଚିତ୍ ଉଭୟ ଧର୍ମବିଶିଷ୍ଟ । ମାୟିକ ସୃଷ୍ଟିବିକାଶ ସମୟରେ ପରମେଶ୍ୱର ସ୍ୱେଚ୍ଛାରେ ବାହାରେ ଅବଭାସିତ ଭାବରାଶି ମଧ୍ୟରୁ ପ୍ରାଣାଦି କେଉଁ କେଉଁ ଜଡ଼ ପଦାର୍ଥକୁ ସ୍ୱ-ଗତ ଅହନ୍ତାତ୍ମକ କର୍ତ୍ତୃତ୍ୱ ଅଭିଷିକ୍ତ କରି ତାହାକୁ ଗ୍ରାହକ ରୂପେ ରଚନା କରିଛନ୍ତି, କିନ୍ତୁ ଘଟ-ପଟାଦି ଜଡ଼ ପଦାର୍ଥକୁ ଇଦନ୍ତାର ବିଷୟୀଭୂତ କରି ଚିଦ୍ରୂପତାର ଲଙ୍ଘନ ପୂର୍ବକ ଗ୍ରାହ୍ୟ ରୂପରେ ପ୍ରକଟିତ କରିଛନ୍ତି । ସେଥିପାଇଁ ପ୍ରାଣାଦି ଜଡ଼ ହେଲେ ମଧ୍ୟ ଗୋଟାଏ ହିସାବରେ ପରମେଶ୍ୱରଙ୍କର ସ୍ୱାତନ୍ତ୍ର୍ୟବଶତଃ ଚିତ୍ । ଜୀବ ଯେତେବେଳେ ଚିଦ୍ରୂପ ଜଡ଼ ପ୍ରାଣାଦିର ଜଡ଼ାତ୍ମକ ଭାବ ଆଚ୍ଛାଦନ କରି ଅର୍ଥାତ୍ ସେଥିରେ ଅହନ୍ତା ଅଭିମାନ ଅଭିଭୂତ କରି ସ୍ୱାତନ୍ତ୍ର୍ୟର ଉଲ୍ଲାସ ବଶତଃ ଚିଦ୍ରୂପ ଆକାରରେ ପାରମାର୍ଥିକ ସ୍ୱରୂପରେ, ଅର୍ଥାତ୍ ଅକୃତ୍ରିମ ପୂର୍ଣ୍ଣାହନ୍ତାର ଆସ୍ପଦରୂପରେ ନିଜକୁ ଅନୁଭବ କରେ, ସେତେ-ବେଳେ ଏହି ଜୀବ ଆଉ ଜୀବ ହୋଇ ରହେ ନାହିଁ—ସେ ଅଦ୍ୱୟ ହୁଏ ଏବଂ ସଂବିତ୍ ମାତ୍ର ରୂପେ ସ୍ଫୁରିତ ହୁଏ ।

( ୨ )

ନାଦତତ୍ତ୍ୱ ବୁଝିବାକୁ ହେଲେ ଆମ୍ଭମାନଙ୍କ ପୂର୍ବବର୍ଣ୍ଣିତ ତ୍ରିବିଧ ସାଧନ ମଧ୍ୟରେ ପ୍ରାଣଗତ ଉଚ୍ଚାରର ରହସ୍ୟଟି ଭଲ କରି ବୁଝିବାକୁ ହେବ । ପ୍ରାଣର ସ୍ୱାଭାବିକ ଧର୍ମ ହେଲା ଉଚ୍ଚାର । ଏହାର ଦୁଇ ପ୍ରକାର ବୃତ୍ତି ଅଛି—ଗୋଟିଏ ସାମାନ୍ୟ ବା ସ୍ପନ୍ଦାତ୍ମକ ଓ ଭେଦହୀନ ଏବଂ ଅପରଟି ବିଶିଷ୍ଟ ଯାହା ପ୍ରାଣାଦି ଭେଦରେ ପାଞ୍ଚ ପ୍ରକାର । ସାମାନ୍ୟ ବୃତ୍ତିବିଶିଷ୍ଟ, ବୃତ୍ତିନିଚୟର ଭିତ୍ତି ସ୍ୱରୂପ । ଏହା ଦେହକୁ ଆତ୍ମସାତ୍ କରି ରହିଛି ବୋଲି ଦେହ ଅଚେତନ ହେଲେ ମଧ୍ୟ ଚେତନବତ୍ ପ୍ରତୀତ ହୁଏ ।

ଏହି ପ୍ରାଣାତ୍ମକ ଉଚ୍ଚାରରେ ଗୋଟିଏ ଅବ୍ୟକ୍ତ ଧ୍ୱନି ନିରନ୍ତର ସ୍ଫୁରିତ ହେଉଅଛି । ଏହାକୁ ଅନାହତ ନାଦ କୁହାଯାଏ । ଏହା ପ୍ରତ୍ୟେକ ପ୍ରାଣୀଙ୍କର ହୃଦୟରେ ସ୍ୱାଭାବିକ ଭାବରେ ସର୍ବଦା ଚାଲିଛି —ଏହାର କେହି କର୍ତ୍ତା ନାହିଁ ଏବଂ କେହି ପ୍ରତିରୋଧକ ମଧ୍ୟ ନାହିଁ ! ଅବିଭକ୍ତ ଭାବରେ ଯାବତୀୟ ବର୍ଣ୍ଣ ଏଥିରେ ବିଦ୍ୟମାନ ରହିଅଛି— ଏହାହିଁ ବର୍ଣ୍ଣୋତ୍ପତ୍ତିର ନିମିତ୍ତ୍ୟ । ସେଥିପାଇଁ ଏହା ମଧ୍ୟ 'ବର୍ଣ୍ଣ' ପଦବାଚ୍ୟ ।

ଅନାହତ ନାଦର ମୁଖ୍ୟ ଅଭିବ୍ୟକ୍ତି-ସ୍ଥାନ ଦୁଇଟି ବୀଜ— ଗୋଟିଏ ସୃଷ୍ଟିବୀଜ "ସ"କାର ଓ ଦ୍ୱିତୀୟଟି ସଂହାରବୀଜ "ହ"କାର । ଏହି ଦୁଇଟି ବୀଜ ଆଶ୍ରୟ କରି ନାଦ ଅଭିବ୍ୟକ୍ତ ହୁଏ । ଯୋଗିଗଣ ଜାଣନ୍ତି ଯେ ପ୍ରାଣର ଆଦିମୂଳ ଅନୁସନ୍ଧାନ କଲେ ଚିଦାକାଶର ପ୍ରଥମ ସ୍ପନ୍ଦନଟି ଦୃଷ୍ଟିପଥରେ ପତିତ ହୁଏ । ଚିଦାକାଶର ସ୍ପନ୍ଦନଟି ମଧ୍ୟ ବସ୍ତୁତଃ ସ୍ୱତଃସିଦ୍ଧ ନୁହେଁ—ଏହା ପରମ ପୁରୁଷ ଓ ପରମା ପ୍ରକୃତିର ଯୋଗାବସ୍ଥାରୁ ଉଦ୍ଭୂତ । ବିନ୍ଦୁଯୁକ୍ତ "ହ"କାର (ହଂ) ପରମ ପୁରୁଷର ଓ ବିସର୍ଗଯୁକ୍ତ "ସ"କାର (ସଃ) ପରମା ପ୍ରକୃତିର ବାଚକ । ଉଭୟଙ୍କର ଯୁକ୍ତାବସ୍ଥା ହିଁ ଆଦି ହଂସର ରୂପ, ଯାହାକୁ ନିଃସ୍ପନ୍ଦ ଓ ସ୍ପନ୍ଦତତ୍ତ୍ୱର ସନ୍ଧିସ୍ଥାନ ବୋଲି ଧରି ନିଆଯାଇପାରେ । ଏହି ଆଦି ପ୍ରାଣକୁ ହିଁ ସବିତୃର ପ୍ରଥମ ପରିଣାମ କୁହାଯାଏ— ଏହାହିଁ ସୃଷ୍ଟିର ସକଳ ତତ୍ତ୍ୱର ଧାରିକା ଶକ୍ତି । ଆମ୍ଭମାନଙ୍କ ଦେହରେ ଶ୍ୱାସ-ପ୍ରଶ୍ୱାସର ଖେଳ ଏହି ହଂସରୂପୀ ପ୍ରାଣର କାମ । ହଂ-କାରରେ ବହିର୍ମୁଖ ଗତି ଅଥବା ଅନନ୍ତ ଦିଗକୁ ଗତି ହୁଏ ଏବଂ ସଃ-କାରରେ ଅନ୍ତଃପ୍ରବେଶ ବା ଦେହକୁ ପ୍ରତ୍ୟାବର୍ତ୍ତନ ସୂଚିତ ହୁଏ । ଏହି ଗତାଗତିର ନିୟାମକ ଆପାତତଃ ନିର୍ଗୁଣସ୍ଥ ଈଶ୍ୱର ଓ ମୂଳରେ କୁଳାକୁଳରେ ଅବସ୍ଥିତ ପରମ ହଂସ । ଏହାହିଁ ଅଜପା ମନ୍ତ୍ର ଯାହା ପ୍ରତି ମନୁଷ୍ୟ ଅହୋରାତ୍ରରେ ୨୧୬୦୦ ଜପ କରିଥାନ୍ତି ।

( ୩ )

ସୃଷ୍ଟିକ୍ରମରେ ଶବ୍ଦର ଗତି ପରାବାକ୍‌ଠାରୁ ବୈଖରୀ ବାକ୍ ଆଡ଼କୁ, କିନ୍ତୁ ସାଧନ କ୍ରମରେ ସଂହାର ଅଥବା ପ୍ରତ୍ୟାହାରର ଧାରା ଅବଲମ୍ବିତ ହୁଏ । ସେତେବେଳେ ଶବ୍ଦର ଗତି କ୍ରମଶଃ ବୈଖରୀ-ଠାରୁ ମଧ୍ୟମା ଓ ପଶ୍ୟନ୍ତୀ ଭିତର ଦେଇ ପରାବାକ୍ ଆଡ଼କୁ ହୁଏ । ବାଗିନ୍ଦ୍ରିୟ ଦ୍ୱାରା ଯେଉଁ ଶବ୍ଦର ଉଚ୍ଚାରଣ ହୁଏ ତାହା ଶବ୍ଦର ବୈଖରୀ ଅବସ୍ଥା । ଏହାହିଁ ଶବ୍ଦର ସ୍ଥୂଳ ରୂପ । ଜପ ଓ କୀର୍ତ୍ତନ ଆଦିରେ ବୈଖରୀ ବାକ୍‌କୁ ଆଶ୍ରୟ କରି ସାଧନ କାର୍ଯ୍ୟ ଆରମ୍ଭ ହୁଏ । ଏହି କାର୍ଯ୍ୟର ମୂଳରେ କର୍ତ୍ତାର ଇଚ୍ଛା ଓ କର୍ତ୍ତୃତ୍ୱ ଅଭିମାନ ବିଦ୍ୟମାନ ଥାଏ । ଅନ୍ୟାନ୍ୟ କର୍ମ ଯେପରି ସଂକଳ୍ପମୂଳକ, ଏହା ମଧ୍ୟ ଠିକ୍ ସେହିପରି । କିନ୍ତୁ ଗୁରୁଦତ୍ତ ମନ୍ତ୍ର ଅଥବା ଭଗବତ୍ ନାମ ନିଷ୍ଠା ପୂର୍ବକ ଯଥାବିଧି ଉଚ୍ଚାରଣ କରୁ କରୁ କ୍ରମଶଃ ଏପରି ଗୋଟିଏ ଅବସ୍ଥାର ଉଦୟ ହୁଏ, ଯେତେବେଳେ ଆଉ ଚେଷ୍ଟା-ପୂର୍ବକ ଉଚ୍ଚାରଣ ଆବଶ୍ୟକ ହୁଏ ନାହିଁ । ମନ୍ତ୍ର ବା ନାମ ସେତେ-ବେଳେ ଆପେ ଆପେ କଣ୍ଠରୁ ସ୍ଫୁରିତ ହେବାକୁ ଲଗେ ଅଥବା କଣ୍ଠ ନିରୁଦ୍ଧ ହେଲେ ହୃଦୟରୁ ଗୁଳିଥାଏ । ସୁତରାଂ ସ୍ଥୂଳ ଭାବରେ ଉଚ୍ଚାରଣ କରିବାର ସାମର୍ଥ୍ୟ ଆଉ ସେତେବେଳେ ନ ଥାଏ ଅଥଚ ଭିତରୁ ସ୍ୱତଃସ୍ଫୂର୍ତ୍ତ ଭାବରେ ଉଚ୍ଚାରଣ ଗୁଳିଥାଏ, ଏହା ସ୍ପଷ୍ଟ ଶୁଣା-ଯାଏ । ଏ ଅବସ୍ଥାକୁ ସାଧକଗଣ ସାଧାରଣତଃ ଜପ କରିବା ବା ନାମ କରିବା କହନ୍ତି ନାହିଁ, ଏହା ଜପ ଓ ନାମ ଆପେ ଆପେ ହେବା ଅବସ୍ଥା, କାରଣ ଏହା କାହାର ଇଚ୍ଛା ବା ପ୍ରଯତ୍ନକୁ ଅପେକ୍ଷା କରେ ନାହିଁ । ସାଧକ ଖାଲି ଅବହିତ ଚିତ୍ତରେ ଭିତରେ ହେଉଥିବା ନାମର ଏହି ଖେଳ ଲକ୍ଷ୍ୟ କରି ଆନନ୍ଦଲାଭ କରନ୍ତି ।

ଦେଖିବାକୁ ମିଳେ ଯେ ସଦ୍‌ଗୁରୁ-ପ୍ରଦତ୍ତ ନାମ ଚୈତନ୍ୟ-ସମ୍ପନ୍ନ ବୋଲି ସାଧକଙ୍କ ହୃଦୟ ପରିସ୍ଫୁଟ ଥିଲେ ଆପେ ଆପେ ଜପ ଚାଲିଥାଏ । ତାହାକୁ ଚେଷ୍ଟା କରି କରିବାକୁ ହୁଏ ନାହିଁ, ଖାଲି ଏକାଗ୍ର ଭାବରେ ଶ୍ରବଣ କରିବାକୁ ହୁଏ । ସାଧକର ଦୀର୍ଘ-କାଳବ୍ୟାପୀ ଅଭ୍ୟାସଫଳରେ, ବିଶେଷତଃ ଶ୍ରଦ୍ଧା ଭକ୍ତିର ପ୍ରଭାବରେ, ସାଧାରଣ ଭାବରେ ଅନୁଷ୍ଠିତ ଜପ ମଧ୍ୟ ଏହି ପ୍ରକାର ଅବସ୍ଥାରେ ପରିଣତ ହୁଏ । ଏହା ହିଁ ମନ୍ତ୍ରଚୈତନ୍ୟର ପୂର୍ବାଭାସ । ଏହି ଅବସ୍ଥାର ଉଦୟ ହେଲେ ସ୍ୱଭାବର ଧାରାଟି ଉନ୍ମୁକ୍ତ ହୁଏ ବୋଲି ପୁରୁଷକାରର ଆବଶ୍ୟକତା କ୍ରମଶଃ କମି ଆସେ । ତତ୍ତ୍ୱବିଶ୍ଳେଷଣ ଫଳରେ ବୁଝାଯାଏ ଯେ, ମନୁଷ୍ୟ ଯେଉଁ ପରିମାଣରେ କଳ୍ପିତ ଅଭିମାନରେ ଆବଦ୍ଧ ଏବଂ ପୂର୍ବ ସଂସ୍କାର ଓ ଫଳାକାଙ୍କ୍ଷା ଦ୍ୱାରା ସଙ୍କୁଚିତ ଠିକ୍ ସେହି ପରିମାଣରେ ତାହାର ପ୍ରାଣର କ୍ରିୟା ମଧ୍ୟ ଚୈତନ୍ୟର ସ୍ୱାଭାବିକ ଗତିରୁ ବଞ୍ଚିତ । ଏ ସମୟରେ ତାହାର ପ୍ରାଣ ବକ୍ରଗତିସମ୍ପନ୍ନ ହୋଇଥାଏ ବୋଲି ଇଡ଼ା ଓ ପିଙ୍ଗଳା ନାଡ଼ୀ ଅବଲମ୍ବନ ପୂର୍ବକ କ୍ରିୟା କରୁଥାଏ । ଯଥାବିଧି ସାଧନ ଅନୁଷ୍ଠିତ ହେଲେ ପ୍ରାଣ ଓ ଅପାନର ବିରୁଦ୍ଧ ପ୍ରବାହ କ୍ରମଶଃ ସାମ୍ୟ ପ୍ରାପ୍ତ ହୁଏ ଓ ଏହି ସମଶକ୍ତି ସୁପ୍ତ କୁଣ୍ଡଳିନୀର ଜାଗରଣ ବଶତଃ ମଧ୍ୟନାଡ଼ୀ ସୁଷୁମ୍ନାରେ ପ୍ରବିଷ୍ଟ ହୋଇ ସରଳ-ଗତିରେ ଊର୍ଦ୍ଧ୍ୱମୁଖକୁ ସଞ୍ଚାଳିତ ହୋଇଥାଏ । ଏହି ଊର୍ଦ୍ଧ୍ୱଦିଗକୁ ଚଳନ ବା ଚରଣ ହିଁ ଉଚ୍ଚରଣ ନାମରେ ଅଭିହିତ ହୁଏ । ପ୍ରାଣ ସଙ୍ଗରେ ମନ ମଧ୍ୟ କ୍ରମଶଃ ସୂକ୍ଷ୍ମ ଓ ନିର୍ମଳ ହୋଇ ଊର୍ଦ୍ଧ୍ୱଗତି ଲାଭକରେ । କୁଣ୍ଡଳିନୀ ପ୍ରବୋଧନରେ ପ୍ରାଣ ଓ ମନ ଏକାସାଙ୍ଗରେ ସଂସ୍କାର ଲାଭ କରେ । କୁଣ୍ଡଳିନୀ ଶବ୍ଦ-ମାତୃକା, ବିନ୍ଦୁ ବା ବିଶୁଦ୍ଧ ସତ୍ତ୍ୱ ଏହାର ନାମାନ୍ତର । ମନ ଓ ବାୟୁର ଊର୍ଦ୍ଧ୍ୱମୁଖ ସଞ୍ଚାରର ସଙ୍ଗେ

ସଙ୍ଗେ ଏହା ମଧ୍ୟ କ୍ଷୁବ୍ଧ ହୋଇ ନାଦରୂପ ଧାରଣ ପୂର୍ବକ ଊର୍ଦ୍ଧ୍ୱ-ଦିଗକୁ ବୋହିଯାଇ ଥାଏ । ନାଦର ଅଧିଷ୍ଠାନ ସୁଷୁମ୍ନା । ଏହା ଅଧଃ-ଶକ୍ତି ଦ୍ୱାରା ଉତ୍ଥିତ ହୋଇ,—ମୂଳାଧାରରୁ ଜାଗିଉଠି,—ପ୍ରାଣାତ୍ମିକା ଊର୍ଦ୍ଧ୍ୱ ଶକ୍ତିଦ୍ୱାରା ସମଗ୍ର ଜଗତ୍ ଓ ତତ୍ତ୍ୱ ଭୂମିର ଅଧିଷ୍ଠାତୃରୂପକ କାରଣ ବର୍ଗକୁ ଭେଦ କରି ଏହି ସୁଷୁମ୍ନା ନାଡ଼ୀର ଉପରିଭାଗରେ ନିର୍ଗତ ହୁଏ ଏବଂ ବ୍ରହ୍ମରନ୍ଧ୍ରରେ ବିଶ୍ରାନ୍ତ ହୋଇ ସର୍ବଭୂତରେ ଚୈତନ୍ୟରୂପେ ଆତ୍ମପ୍ରକାଶ କରେ । ବସ୍ତୁତଃ ନାଦାନ୍ତ ସ୍ଥାନ ବ୍ରହ୍ମରନ୍ଧ୍ରର କିଞ୍ଚିତ୍ ଊର୍ଦ୍ଧ୍ୱରେ,—ଏହିଠାରେ ନାଦ ଲୀନ ହୋଇ ସର୍ବପ୍ରାଣୀଙ୍କର ହୃଦୟରେ ସ୍ଫୁରିତ ହୁଏ । ଏହି ନାଦ ଅବ୍ୟକ୍ତ ଧ୍ୱନି ବା ଅଚଳ ଅକ୍ଷର ମାତ୍ର ।

ପ୍ରକୃତ ଅନାହତ ନାଦ ଅଭିବ୍ୟକ୍ତ ହେବା ପୂର୍ବରୁ ଇଡ଼ା ପିଙ୍ଗଳାର କ୍ରିୟା ମନ୍ଦୀଭୂତ ହେବା ସଙ୍ଗେ ସଙ୍ଗେ ନାନା ପ୍ରକାର ଶ୍ରୁତିମଧୁର ସ୍ଥୂଳ ନାଦ ଶୁଣାଯାଏ । ମନ ପ୍ରାଣ ଓ କୁଣ୍ଡଳିନୀର ଯୁକ୍ତଭାବରେ ସୂକ୍ଷ୍ମ ଓ ସୂକ୍ଷ୍ମତର ନାଡୀମାର୍ଗରେ ସଞ୍ଚରଣ ଫଳରେ ଏହି ସବୁ ଆନନ୍ଦଦାୟକ ଧ୍ୱନି ଶ୍ରୁତିଗୋଚର ହୁଏ । ଏଗୁଡ଼ିକ ବିଭିନ୍ନ ସ୍ତରରୁ ଉଦିତ ହୁଏ ଏବଂ ଏମାନଙ୍କର ସଂଖ୍ୟା ବସ୍ତୁତଃ ଅଗଣିତ ହେଲେ ମଧ୍ୟ ସାଧାରଣତଃ ଏମାନେ ନଅ ଶ୍ରେଣୀରେ ବିଭକ୍ତ ହୋଇଥାନ୍ତି । ଗୁରୁଙ୍କ ଉପଦେଶ ଏଇଆ ଯେ ଏହିସବୁ ଧ୍ୱନି ମଧ୍ୟରୁ କେତେଗୁଡ଼ିଏ ଅନାହତ ପ୍ରାପକ ହେଲେ ମଧ୍ୟ ପ୍ରକୃତରେ ଏମାନେ ଅନାହତ ନୁହନ୍ତି । ସେଥିପାଇଁ ଏଗୁଡ଼ିକୁ ପରିହାର କରି ଯେ ପ୍ରକୃତରେ ଅନାହତ ଧ୍ୱନି ବା ପରମ ନାଦ ତାହାକୁହିଁ ଆଶ୍ରୟ କରିବାକୁ ହେବ । ପକ୍ଷାନ୍ତରେ ଏପରି ମଧ୍ୟ ହୋଇଥାଏ ଯେ, ଏହି ସବୁ ମଧୁର ଧ୍ୱନି ଶୁଣୁ ଶୁଣୁ ଗୁରୁଦେବଙ୍କ କୃପାରୁ ଅକସ୍ମାତ୍ ଅନାହତ ନାଦ ଶ୍ରବଣପଥକୁ ଆସେ । ସେତେବେଳେ ଏହିସବୁ

ଅବାନ୍ତର ଧ୍ୱନି ଆଉ ଶୁଣାଯାଏ ନାହିଁ, କାରଣ ସେତେବେଳେ ମନ ଅନାହତରେ ଲୀନ ହୁଏ । ଏହା ସଙ୍ଗେ ସଙ୍ଗେ ବିଶୁଦ୍ଧ ଚୈତନ୍ୟର ପ୍ରକାଶଦ୍ୱାର ଖୋଲିଯାଏ ।

କିନ୍ତୁ ଏହା ଭିତରେ ମଧ୍ୟ କ୍ରମ ଅଛି । ଅବିଚ୍ଛିନ୍ନ ନାଦର ଉଦୟ ମଧ୍ୟମା ବାକ୍‌ର ଆବିର୍ଭାବ ସୂଚିତ କରେ । ବୈଖରୀ ବାକ୍‌ରେ ସାଧକର ଅଭିମାନ-ମୂଳକ କର୍ଣ୍ଣକ୍ରିୟା ଥାଏ, କିନ୍ତୁ ମଧ୍ୟମା ଉଦୟ ହେଲେ ଅନେକ ସମୟରେ କଣ୍ଠ ରୁଦ୍ଧ ହୋଇଯାଏ, ଅଥବା ରୋଧ ଘଟିବାକୁ ଆରମ୍ଭ କରେ । ଗୋଟାଏ ଦିଗରେ ଯେପରି କଣ୍ଠଦ୍ୱାର ନିରୁଦ୍ଧ ହୁଏ, ଅପର ଦିଗରେ ସେହିପରି ମଧ୍ୟ ନାଡ଼ୀର ଅଧୋଦ୍ୱାର କ୍ରମଶଃ ଅଧିକ ଉନ୍ମୀଳିତ ହେଉଥାଏ ଏବଂ କ୍ରମଶଃ ଅଧିକ ମାତ୍ରାରେ ପ୍ରାଣ ମନ ଓ କୁଣ୍ଡଳିନୀ ସୂକ୍ଷ୍ମ ଭାବ ପ୍ରାପ୍ତ ହୋଇ ମଧ୍ୟମାର୍ଗରେ ପ୍ରବିଷ୍ଟ ହୁଏ । କ୍ରମଶଃହିଁ ଦୃଷ୍ଟିର ଅନ୍ତର୍ମୁଖତା ବଢ଼ିବାରେ ଲାଗେ । ଫଳରେ ଅବିଦ୍ୟାଚ୍ଛନ୍ନ ହୃଦୟାକାଶ ନିର୍ମଳ ହେବା ସଙ୍ଗେ ସଙ୍ଗେ ଆଲୋକିତ ହୋଇ ଉଠେ । ବାସନାର କାଳିମା ବା କୁଜ୍‌ଝଟିକା ଚିତ୍ତରୁ ଅପସୃତ ହୁଏ । ଅନ୍ତରାକାଶ ନିର୍ମଳ ହେବା ସଙ୍ଗେ ସଙ୍ଗେ ହୃଦୟ-ସରୋବରସ୍ଥ ଭାବ-କମଳଟି ପ୍ରସ୍ଫୁଟିତ ହୋଇ ଊର୍ଦ୍ଧ୍ୱମୁଖ ହୁଏ । ଅନାହତର ସୂଚକ ଅବାନ୍ତର ନାଦ ସବୁ ମଧ୍ୟ ନାଡ଼ୀଶୋଧନ, ଭୂତଶୋଧନ ଓ ଚିତ୍ତଶୋଧନର କାର୍ଯ୍ୟ କରେ । ବସ୍ତୁତଃ ଚେତନ ଶବ୍ଦ ହିଁ ଜ୍ୟୋତିରୂପରେ ଏହି ସଂସ୍କାର କାର୍ଯ୍ୟ ସାଧନ କରିଥାଏ । କିନ୍ତୁ ଏହି ଅବସ୍ଥାରେ ମଧ୍ୟ ସାଧାରଣତଃ ସ୍ଥିର ଭାବରେ ଜ୍ୟୋତି ଦର୍ଶନ ହୁଏ ନାହିଁ, ତେବେ ତମୋହରଣ ରୂପକ ଜ୍ୟୋତିର କାର୍ଯ୍ୟ ଅବାଧରେ ଚାଲିଥାଏ । ତମୋନିବୃତ୍ତି ସଙ୍ଗେ ସଙ୍ଗେ ଏହି ସବୁ ଅବାନ୍ତର ଧ୍ୱନି କ୍ରମଶଃ କ୍ଷୀଣରୁ କ୍ଷୀଣତର ହେଉଥାଏ । ପରେ ଏପରି ଗୋଟିଏ ସ୍ଥିତିର ଉଦୟ ହୁଏ ଯେତେ-

ବେଳେ ନିର୍ମଳ ବାହ୍ୟ ଆକାଶରେ ସୂର୍ଯ୍ୟମଣ୍ଡଳ ଉଦୟ ହେଲା ପରି ବିଶୁଦ୍ଧ ଅନ୍ତରାକାଶରେ ଜ୍ୟୋତିମଣ୍ଡଳ ସ୍ପଷ୍ଟ ଭାବରେ ଭାସି ଉଠେ । ଏହି କାର୍ଯ୍ୟଟି କ୍ରମିକ ହୋଇପାରେ ଅଥବା କ୍ରମହୀନ କ୍ଷଣକରେ ମଧ୍ୟ ହୋଇପାରେ । ଏଇଟି ମଧ୍ୟମା ପାର ହୋଇ ପଶ୍ୟନ୍ତୀ ଅବସ୍ଥାର ବାକ୍ ସଞ୍ଚାରର ଲକ୍ଷଣ । ପୂର୍ଣ୍ଣ ପଶ୍ୟନ୍ତୀ ଅବସ୍ଥାର ଉଦୟ ହେଲେ ପୂର୍ବ ବର୍ଣ୍ଣିତ ନାଦଧ୍ୱନି ସବୁ ଥାଇ ମଧ୍ୟ ନ ଥାଏ, ଅର୍ଥାତ୍ ସେତେବେଳେ ଆଉ ଶ୍ରୁତିଗୋଚର ହୁଏ ନାହିଁ, କାରଣ ଏହି ସମୟରେ ମନ ଉପରମ ପ୍ରାପ୍ତ ହୁଏ । ଏହାହିଁ ମନ୍ତ୍ରାତ୍ମକ ଇଷ୍ଟ ଦେବତାଙ୍କର ସାକ୍ଷାତ୍କାରର ଅବସ୍ଥା, ଏହାହିଁ ଷୋଡ଼ଶ କଳା-ବିଶିଷ୍ଟ ଆତ୍ମାର ଷୋଡ଼ଶୀ ବା ଅମୃତ କଳାର ଅଭିବ୍ୟକ୍ତିର ସୂଚନା । ଏହି ଅବସ୍ଥାରେ ଆତ୍ମାର ଅଧିକାର ନିବୃତ୍ତ ହୁଏ, କାରଣ ଭୋଗ ଓ ଅପବର୍ଗ ଏହି ଦୁଇଟି ପୁରୁଷାର୍ଥ ସେତେବେଳକୁ ସମ୍ପନ୍ନ ହୋଇ ସାରିଛି । ବୈଖରୀବାକ୍‌ର ଏହିଠାରେ ଉପଶମ ହୁଏ ବୋଲି ଜାଣିବ । ଜ୍ୟୋତିଷ୍ପୁଞ୍ଜ ପ୍ରବୃତ୍ତି ଯେପରି ଚରମରେ ଅସ୍ମିତାରେ ଉତ୍କର୍ଷ ଲାଭ କରେ, ଏହି ଜ୍ୟୋତି ଦର୍ଶନ ମଧ୍ୟ ସେହିପରି କ୍ରମଶଃ ନିଜର ସତ୍ତ୍ୱ-ସାକ୍ଷାତ୍କାରରେ ପର୍ଯ୍ୟବସିତ ହୁଏ । ବୈଖରୀରେ ଶବ୍ଦ ଓ ଅର୍ଥ ମଧ୍ୟରେ ପରସ୍ପର ଭେଦ ଥାଏ, ମଧ୍ୟମାରେ ଉଭୟଙ୍କ ମଧ୍ୟରେ ଭେଦ ଥାଏ ଏବଂ ତାହା ସଙ୍ଗେ ସଙ୍ଗେ ଅଭେଦ ମଧ୍ୟ ଥାଏ, କିନ୍ତୁ ପଶ୍ୟନ୍ତୀରେ ମୋଟେ ଭେଦ ନ ଥାଏ । ସେତେବେଳକୁ ଏକମାତ୍ର ଅଭେଦ ବିରାଜ କରେ ଅର୍ଥାତ୍ ପଶ୍ୟନ୍ତୀ ଅବସ୍ଥାରେ ଶବ୍ଦ ଓ ଅର୍ଥ ଅଭିନ୍ନ ହୁଏ—ଏହାର ନାମ ମନ୍ତ୍ର-ସାକ୍ଷାତ୍କାର । ଏହା-ପରେ ସର୍ବ ବିକଳ୍ପର ଉପଶମ ହୋଇଗଲେ ଯେତେବେଳକୁ ପୂର୍ଣ୍ଣ ଅହନ୍ତାର ବିକାଶ ହୁଏ ସେତେବେଳେ ଯାଇ ବୁଝିବାକୁ ହେବ ଯେ ପରାବାକ୍‌ର ଆତ୍ମପ୍ରକାଶ ଘଟିଅଛି । ଏହି ପରାବାକ୍

ପରମେଶ୍ୱରଙ୍କର ପରମ ଶକ୍ତି ଏବଂ ଏହା ତାଙ୍କଠାରୁ ଅଭିନ୍ନ । ଏହାର ସ୍ୱରୂପ ନଟ୍ଟୋଦ୍ଭବ ଏବଂ ସେଥିପାଇଁ ଏହି ସ୍ଥାନରେ ହିଁ ଜୀବ ନିଜର ଶିବଭାବକୁ ପୁନଃପ୍ରାପ୍ତ ହୋଇଥାଏ । ପଶ୍ୟନ୍ତୀରେ ଅଖଣ୍ଡ ଜ୍ୟୋତିର୍ମଣ୍ଡଳ ଦର୍ଶନ ହୁଏ, ଚିଦାକାଶରେ ଏହି ଜ୍ୟୋତିର୍ମଣ୍ଡଳକୁ ଭେଦ କରିପାରିଲେ ସ୍ୱୟଂପ୍ରକାଶ ନିଜ ସ୍ୱରୂପ ଫୁଟି ଉଠେ । ସେତେବେଳକୁ ଆଉ ଆକାଶ ନ ଥାଏ, ସୁତରାଂ ଚିଦାକାଶ ମଧ୍ୟ ନ ଥାଏ, ନିଜ ମଧ୍ୟରେ ନିଜ ସ୍ୱରୂପ ଫୁଟିଉଠେ । ଏଇଥିପାଇଁ ଉପନିଷଦ୍ କହିଛନ୍ତି—"ସ୍ୱେ ମହିମ୍ନି" । 'ଜ୍ୟୋତିରଭ୍ୟନ୍ତରେ ରୂପମତୁଲ୍ୟଂ ଶ୍ୟାମସୁନ୍ଦରମ୍'—ଏହାରି ନାମ ଜ୍ୟୋତିଭେଦ କରି ସ୍ୱରୂପ ପ୍ରାପ୍ତି । ପଶ୍ୟନ୍ତୀର ଯେଉଁଠି ପୃଷ୍ଠଭୂମି ତାହାହିଁ ପରା । ଦୃଷ୍ଟି-ବୈଲକ୍ଷଣ୍ୟ ବଶତଃ ସେହି ପରାକୁ ଯେପରି କେହି କେହି ବିଶୁଦ୍ଧ ଆତ୍ମସ୍ୱରୂପର ଅନ୍ତରଙ୍ଗ ଶକ୍ତି ବୋଲି ଭାବନ୍ତି, ସେହିପରି କେହି କେହି ଏହାକୁ ଭେଦ କରିବା ହିଁ ମାନବଜୀବନର ଚରମ ସାର୍ଥକତା ବୋଲି ବିଶ୍ୱାସ କରନ୍ତି । ଏହି ଦୃଷ୍ଟିରୁ ମତରେ ପରାବାକ୍ ହିଁ ଶବ୍ଦ-ବ୍ରହ୍ମରୂପକ ସୂର୍ଯ୍ୟମଣ୍ଡଳ ଏବଂ ଏହାକୁ ଭେଦ କରି ଆତ୍ମସ୍ୱରୂପରେ ସ୍ଥିତ ହେବାହିଁ ମହାଜ୍ଞାନର ଯଥାର୍ଥ ଫଳ ।

ଚିତ୍‌ଶକ୍ତି ଆତ୍ମସ୍ୱରୂପର ଅନ୍ତରଙ୍ଗ ଶକ୍ତି । ଆନନ୍ଦଶକ୍ତି ମଧ୍ୟ ସେଇଆ । କିନ୍ତୁ ଏପରି ଗୋଟିଏ ସ୍ଥିତି ଅଛି, ଯେଉଁଠାରେ ଚିତ୍‌ଶକ୍ତି ଆତ୍ମସ୍ୱରୂପରେ ସମରସ ଭାବରେ ବିରାଜ କରେ ବୋଲି ତାହାର ପ୍ରାଧାନ୍ୟ ଲକ୍ଷିତ ହୁଏ ନାହିଁ । କିନ୍ତୁ ସୃଷ୍ଟି ପୂର୍ବରୁ ଏହି ଚିତ୍‌ଶକ୍ତି କ୍ରିୟାତ୍ମକ ରୂପ ଧାରଣ କରେ, ଅର୍ଥାତ୍ ଚିତ୍‌ସ୍ୱରୂପରେ ଅକ୍ଷୁଣ୍ଣ ସାମ୍ୟ ଥିବା ସତ୍ତ୍ୱେ ଚିତ୍‌ଶକ୍ତି ଯେପରି ଉଦ୍ରିକ୍ତ ହୋଇ ମହାମାୟାଙ୍କୁ କ୍ଷୁବ୍‌ଧ କରେ । ମହାମାୟା କୁଣ୍ଡଳିନୀ ବା ବିନ୍ଦୁ ରୂପରେ ବିଶ୍ୱର ମୂଳ ଉପାଦାନ ସ୍ୱରୂପ ଅବ୍ୟକ୍ତ ରହିଅଛନ୍ତି । ଏହା ଅଛି କି

ନାହିଁ ତାହାର କୌଣସି ନିଦର୍ଶନ ନାହିଁ, କାରଣ ଏହା ଅବ୍ୟକ୍ତ । କିନ୍ତୁ ପରମେଶ୍ୱରଙ୍କର ସ୍ୱାତନ୍ତ୍ର୍ୟରୂପା ଚିତ୍‌ଶକ୍ତି କ୍ରିୟାରୂପରେ ପ୍ରବଳତା ଧାରଣ କରେ, ବିନ୍ଦୁ କ୍ଷୁବ୍‌ଧ ହୁଏ । ସେତେବେଳେ ଏହି କ୍ଷୁବ୍‌ଧ ବିନ୍ଦୁଠାରୁ ନାଦ ଓ ଜ୍ୟୋତିର ସ୍ଫୁରଣ ହୁଏ । ବସ୍ତୁତଃ ନାଦ ଓ ଜ୍ୟୋତି ନିତ୍ୟ ବୋଲି ଗୋଟିଏ ହିସାବରେ ବିନ୍ଦୁ କ୍ଷୋଭର ପୂର୍ବରୁ ବିଦ୍ୟମାନ । ସେତେବେଳର ଏହି ଜ୍ୟୋତି ପରମ ପ୍ରକାଶରୂପେ ଏବଂ ନାଦ ପରନାଦରୂପେ କୌଣସି କୌଣସି ସ୍ଥାନରେ ବର୍ଣ୍ଣିତ ହୋଇଥାଏ । ବିଶ୍ୱର ଦୃଷ୍ଟି ଅନୁସାରେ ଏହି ପରିସ୍ଥିତିରେ ନାଦ କିମ୍ବା ଜ୍ୟୋତି କାହାରି କଳ୍ପନା କରାଯାଏ ନାହିଁ, କାରଣ ତାହା ଅବ୍ୟକ୍ତ ପଦ । କିନ୍ତୁ ଚିତ୍‌ଶକ୍ତି କ୍ରିୟାତ୍ମକ ହେବା ସଙ୍ଗେ ସଙ୍ଗେ ନାଦ ଓ ଜ୍ୟୋତି ସମସୂତ୍ର ଭାବରେ ସୃଷ୍ଟିର ମୂଳଠାରୁ କ୍ରମଶଃ ବହିର୍ମୁଖୀ ଅଧିକତର ଆତ୍ମପ୍ରକାଶ କରିଥାଏ । ସେଥିପାଇଁ ଯେଉଁଟା ଚିତ୍‌ଶକ୍ତିର ପରବିନ୍ଦୁର ଅଭିମୁଖ ଦିକ୍ ସେଇଟିକୁ ନାଦମୟ କୁହାଯାଇପାରେ ଏବଂ ଯେଉଁଟି ତାହାର ଚିତ୍‌ସ୍ୱରୂପ ପରମେଶ୍ୱରଙ୍କ ଅଭିମୁଖ ଦିକ୍ ସେଇଟିକୁ ନାଦାତୀତ କୁହାଯାଇପାରେ । ବସ୍ତୁତଃ ଚିତ୍‌ଶକ୍ତିରେ ଏପରି ବିଭାଗ ନାହିଁ ଏବଂ ରହିବା ମଧ୍ୟ ସମ୍ଭବ ନୁହେଁ । ଅର୍ଥାତ୍ ଶକ୍ତିର ବହିର୍ମୁଖ ଅବସ୍ଥାରେ ବିନ୍ଦୁ ଅକ୍ଷୁବ୍‌ଧ ଥାଏ ବୋଲି ବା କ୍ରିୟାଶକ୍ତିର ଉନ୍ମେଷ ନାହିଁ ବୋଲି ସବୁ କିଛି ଏକ ପରମ ଅବ୍ୟକ୍ତ ରୂପରେ ବିଦ୍ୟମାନ ଥାଏ । ସେତେବେଳେ ଆଉ ନାଦ ନାହିଁ, ଜ୍ୟୋତି ନାହିଁ, ବିନ୍ଦୁ ନାହିଁ ଏବଂ ଶିବ-ଶକ୍ତି ମଧ୍ୟ ସେତେ ଯେପରି ନାହିଁ, ଅଥଚ ସବୁ କିଛି ଏକ ଅବ୍ୟକ୍ତ ମହାସତ୍ତାରୂପରେ ଅଛି ।

ଏଇଥିପାଇଁ ପ୍ରାଚୀନ ଆଗମରେ ପରବିନ୍ଦୁ ଓ ପରନାଦରେ କେହି କେହି ଅଭେଦ କଳ୍ପନା କରିଛନ୍ତି ଏବଂ କେହି କେହି ଭେଦ

କଳ୍ପନା କରିଛନ୍ତି । ଦ୍ୱୈତଦୃଷ୍ଟିରେ ପରବିନ୍ଦୁଠାରୁ ପରନାଦ ଭିନ୍ନ— ଏହି ନାଦସୃଷ୍ଟିର ହୃଦୟସ୍ଥ ନିହିତ ବୀଜରୂପକ ନାଦ ନୁହେଁ, କାରଣ ତାହା ବିନ୍ଦୁଠାରୁ ଆବିର୍ଭୂତ ହୁଏ । କିନ୍ତୁ ଏହା ବିନ୍ଦୁର ଅଙ୍ଗୀତ । ଏହାକୁ କୌଣସି ତତ୍ତ୍ୱ ମଧ୍ୟରେ ଧରାଯାଏ ନାହିଁ ଅଥବା ଧରିବାକୁ ହେଲେ ବିଶ୍ୱାଙ୍ଗୀତ ଶକ୍ତିରେ ଅନ୍ତର୍ଭୂତ କରାଯାଇପାରେ । ଏହି ସ୍ଥଳରେ ପରନାଦ ଓ ବିଶୁଦ୍ଧ ସତ୍ତ୍ୱ ବା ଚିତ୍ସତ୍ତା ପ୍ରାୟ ଅଭିନ୍ନ । ଅଦ୍ୱୈତ ଦୃଷ୍ଟିରେ ପରା ବାକ୍ ଆତ୍ମାର ସ୍ୱରୂପ ଶକ୍ତି ଏବଂ ସ୍ୱରୂପଠାରୁ ଅନତିରିକ୍ତ ବୋଲି ଚିଦ୍ରୂପା । ପରାଶକ୍ତି ଓ ପରାବାକ୍ ଅଭିନ୍ନ— ସେଇଥିପାଇଁ ଏହି ଶକ୍ତିକୁ ବୋଧର ନିତ୍ୟସିଦ୍ଧ ବାଗ୍ରୂପା ଶକ୍ତି ବୋଲି ବର୍ଣ୍ଣନା କରାଯାଇଅଛି, ଯାହା ଅଭାବରେ ପ୍ରକାଶ ପ୍ରକାଶମାନ ହୋଇ ମଧ୍ୟ 'ସ୍ୱୟଂପ୍ରକାଶ' ପଦବାଚ୍ୟ ହୋଇପାରେ ନାହିଁ । ଏହି ପରାବାକ୍ହିଁ ଆତ୍ମାର ନିଜର ବିମର୍ଶରୂପା ସ୍ୱରୂପାନୁବନ୍ଧ ଶକ୍ତି ।

ବିନ୍ଦୁ କ୍ଷୁବ୍ଧ ହେବାପରେ ଯେଉଁ ନାଦ ଓ ଜ୍ୟୋତିର ପ୍ରାକଟ୍ୟ କଥା କୁହାଗଲା ତାହାହିଁ ସୃଷ୍ଟିର ମୂଳ । ତେବେ ମନେ ରଖିବାକୁ ହେବ ଯେ, ସୃଷ୍ଟିର ମୂଳରେ ସଦା ଦୁଇଟି କାର୍ଯ୍ୟ ବିଦ୍ୟମାନ ରହିଛି । ଗୋଟିଏ କାର୍ଯ୍ୟ ମୂଳରେ ଏକମାତ୍ର ସ୍ୱଭାବ ହିଁ କାମ କରୁଛି, ପୁରୁଷ ଇଚ୍ଛା ବା ପ୍ରଯତ୍ନର କୌଣସି ପ୍ରୟୋଜନ ନାହିଁ— କେବଳ ସାନ୍ନିଧ୍ୟ ହିଁ ପର୍ଯ୍ୟାପ୍ତ । କିନ୍ତୁ ଆଉ ଗୋଟିଏ କାର୍ଯ୍ୟ ମୂଳରେ ଇଚ୍ଛାଶକ୍ତି ଅଥବା ତଦନୁରୂପ କୌଣସି ଶକ୍ତି ବିଦ୍ୟମାନ ରହିଅଛି । ପ୍ରଥମ କାର୍ଯ୍ୟଟି ନ ରହିଲେ ଦ୍ୱିତୀୟ କାର୍ଯ୍ୟର କୌଣସି ସମ୍ଭାବନା ରହେନାହିଁ । ବାୟୁମଣ୍ଡଳରେ ସ୍ୱାଭାବିକ ଭାବରେ ନିରନ୍ତର ବାୟୁ ସଞ୍ଚରଣ କରୁଅଛି । ସୂର୍ଯ୍ୟ ଆଦି ଜ୍ୟୋତିଷ୍କମଣ୍ଡଳରୁ ନିରନ୍ତର କିରଣମାଳାର ବିକୀରଣ ହେଉଅଛି । ଏହିପରି ସ୍ୱଭାବର ଶକ୍ତି ସ୍ୱଭାବବଶରେ

ନିରନ୍ତର ସ୍ୱକାର୍ଯ୍ୟ ସାଧନ ଦିଗରେ ଉନ୍ମୁଖ ହୋଇ ଚାଲିଛି । ଏହା ନିତ୍ୟ ଏବଂ ସ୍ୱୟଂ ସ୍ଫୂର୍ତ୍ତିଶୀଳ । କିନ୍ତୁ ଏହି କ୍ରିୟାଶୀଳ ଶକ୍ତିକୁ କୌଣସି ପ୍ରୟୋଜନ ସାଧନରେ ନିୟୋଗ କରିବାକୁ ହେଲେ ତାହାକୁ ନିୟନ୍ତ୍ରଣ କରିବା ପାଇଁ ଇଚ୍ଛା ଶକ୍ତିର ଦରକାର ହୁଏ । ଇଚ୍ଛାଶକ୍ତିର ପ୍ରଭାବରେ ଏବଂ ନିର୍ଦ୍ଦେଶରେ ଏହି ସ୍ୱଭାବର ଶକ୍ତି ଇଚ୍ଛା ଅନୁରୂପ ଆକାର ଧାରଣ କରେ, ଇଚ୍ଛାର ପ୍ରେରଣା ନ ଥିଲେ ଏହା କୌଣସି କାର୍ଯ୍ୟ ସାଧିତ କରେ ନାହିଁ । ଅଥଚ ଶକ୍ତିର ସ୍ପନ୍ଦନ ହେଉଥାଏ, ଏହା ନିଶ୍ଚିତ । ସାଙ୍ଖ୍ୟରେ ସଦୃଶ ପରିଣାମ ଓ ବିସଦୃଶ ପରିଣାମ କଥା ଅଛି । ସଦୃଶ ପରିଣାମରେ ସୃଷ୍ଟି-ଆଦି କୌଣସି ପ୍ରୟୋଜନ ସିଦ୍ଧ ହୁଏ ନାହିଁ, କାରଣ ସେତେବେଳେ ଗୁଣ-ବୈଷମ୍ୟ ହୁଏ ନାହିଁ, ପ୍ରକୃତିରେ ସାମ୍ୟଭାବର ଖେଳ ଚାଲିଥାଏ । କିନ୍ତୁ ଇଚ୍ଛାର ସମ୍ଭବ ଘଟିଲେ ଅଥବା ଭୋଗନିମିତ୍ତ କର୍ମବୀଜର ପରିପକ୍ୱତା ଫଳରେ ଅର୍ଥସୃଷ୍ଟି ସମ୍ପାଦନ ପାଇଁ ଧର୍ମ ପରିଣାମ-ସାଧକ ତତ୍ତ୍ୱାନ୍ତର-ପରିଣାମ ସ୍ଥଳରେ ଗୁଣଗତ ବୈଷମ୍ୟ ଆପେ ଫୁଟିଉଠେ । ଏହା ବିସଦୃଶ ପରିଣାମ । ସ୍ୱରୂପ-ପରିଣାମ ଆପେ ଆପେ ଘଟିଥାଏ, କିନ୍ତୁ ଧର୍ମ୍ମ ପରିଣାମର ମୂଳରେ ସାକ୍ଷାତ୍ ଭାବରେ ଇଚ୍ଛା ବା କର୍ମ ବିଦ୍ୟମାନ ଥାଏ ଓ ତତ୍ତ୍ୱାନ୍ତର-ପରିଣାମରେ ତାହାହିଁ ବିପ୍ରକୃଷ୍ଟ ଭାବରେ ଥାଏ । ତାନ୍ତ୍ରିକ ଯୋଗୀଙ୍କ ଦୃଷ୍ଟି କ୍ଷେତ୍ରରେ ମଧ୍ୟ ଏହିପରି ଦୃଷ୍ଟାନ୍ତ ଦେଖାଯାଏ । ସୃଷ୍ଟି ମୁଖରେ କଳାର ପ୍ରସାର ଆପେ ଆପେ ହୋଇ ଯାଇଥାଏ, କିନ୍ତୁ ତତ୍ତ୍ୱର ପ୍ରସାର ଠିକ୍ ସେହିପରି ହୁଏ ନାହିଁ । ତା ପରେ ତତ୍ତ୍ୱଠାରୁ ଭୁବନର ଆବିର୍ଭାବ ଏକ ପ୍ରକାର ଅର୍ଥସୃଷ୍ଟିର ଅନ୍ତର୍ଗତ ବୋଲି ସ୍ଫୁଟ ଭାବରେହିଁ ପ୍ରୟୋଜନର ଅପେକ୍ଷା କରେ । ସେଥିପାଇଁ ଇଚ୍ଛା, କର୍ମ ବା ଅଧିକାର ଭୁବନ-ସୃଷ୍ଟିର ପଶ୍ଚାତ୍‌ରେ ରହିବାକୁ ବାଧ୍ୟ ।

( ୪ )

ବର୍ତ୍ତମାନ ସ୍ଥଳରେ ମଧ୍ୟ ନାଦ ସମ୍ବନ୍ଧରେ ଏହି ରହସ୍ୟଟି ମନେ ରଖିବାକୁ ହେବ । ପ୍ରାଣର ଚଳନରେ ବର୍ଣ୍ଣାଦିର ଉଦୟ ହୋଇଥାଏ । ପ୍ରାଣର ଚଳନ ଦୁଇ ପ୍ରକାର—ଗୋଟିଏ ସ୍ପନ୍ଦାତ୍ମକ ଓ ସ୍ୱାଭାବିକ, ଦ୍ୱିତୀୟଟି କ୍ରିୟାତ୍ମକ ଓ ପ୍ରଯତ୍ନ ପାଇଁ । ଯେଉଁଟି ସ୍ପନ୍ଦନରୂପକ ସ୍ୱାଭାବିକ ଚଳନ ସେଥିରେ ସ୍ୱଭାବତଃହିଁ ବର୍ଣ୍ଣର ଉଦୟ ହୁଏ । ବର୍ଣ୍ଣର ଉଦୟରେ କାହାରି ଇଚ୍ଛା ବା ପ୍ରଯତ୍ନ ଆବଶ୍ୟକ ହୁଏ ନାହିଁ—ବର୍ଣ୍ଣସବୁ ନିତ୍ୟରୂପକ ଓ ସର୍ବଦା ଅବିଶିଷ୍ଟ । କିନ୍ତୁ ମନ୍ତ୍ରପଦାଦିର ଉଦୟ ଯୋଗୀଙ୍କର ଇଚ୍ଛା ବ୍ୟତୀତ ଘଟିପାରେ ନାହିଁ—ସେମାନେ ଅଗଣିତ ଓ ଅନିତ୍ୟ, ବର୍ଣ୍ଣପରି ପରିଗଣିତ ଓ ନିତ୍ୟ ନୁହନ୍ତି । ଯୋଗୀ ପ୍ରୟୋଜନ ବିଶେଷର ଅନୁରୋଧରେ ବିଶିଷ୍ଟ ମନ୍ତ୍ରାଦି ଅଭିବ୍ୟକ୍ତ କରିବାକୁ ଇଚ୍ଛାକଲେ ତଦନୁରୂପ ପ୍ରଯତ୍ନ କରନ୍ତି ଏବଂ ତାହା ଫଳରେ ଅଭିପ୍ରେତ ମନ୍ତ୍ରାଦି ଉଦିତ ହୁଏ । ଅବଶ୍ୟ ଏହି ଉଦୟ ପ୍ରାଣର ଚଳନରେ ହିଁ ହୁଏ ସେଥିରେ ସନ୍ଦେହ ନାହିଁ, କିନ୍ତୁ ସେଥିପାଇଁ ଇଚ୍ଛା ଓ ପ୍ରଯତ୍ନ ଆବଶ୍ୟକ ହୁଏ । ଦୀକ୍ଷା ସମୟରେ ଗୁରୁ ଶିଷ୍ୟର ମନ୍ତ୍ରୋଦ୍ଧାର ମଧ୍ୟ ଏହି ପ୍ରଣାଳୀରେ ହୋଇଥାଏ । କିନ୍ତୁ ବର୍ଣ୍ଣର ଅଭିବ୍ୟକ୍ତି ପାଇଁ ଇଚ୍ଛା ବା କୃତିର ପ୍ରୟୋଜନ ହୁଏ ନାହିଁ । ତାହା ସ୍ୱଭାବତଃ ଅଭିବ୍ୟକ୍ତ ହୋଇଥାଏ—ପ୍ରକୃତପକ୍ଷରେ ତାହା ନିରନ୍ତର ଅଭିବ୍ୟକ୍ତ ହେଉଅଛି । ଚିତ୍-ଶକ୍ତି ବା ସମ୍ବିତ୍ ସ୍ପନ୍ଦରୂପା । ଯେତେବେଳେ ସୃଷ୍ଟିମୁଖରେ ଏହା ପ୍ରାଣ-ରୂପରେ ପରିଣତ ହୁଏ ସେତେବେଳେ ଏହି ପ୍ରାଣକୁ ଭିତ୍ତି କରି ବିରାଟ ଦେଶ ଓ ବିରାଟ କାଳର ପ୍ରାସାଦ ଗଢ଼ିଉଠେ । ମୂର୍ତ୍ତି-ବୈଚିତ୍ର୍ୟର ଆଭାସନ ଶକ୍ତିରୁ ଦେଶ ଏବଂ କ୍ରମର କଳନାରୁ କାଳ ଉଦ୍ଭୂତ ହୁଏ । ସମଗ୍ର ବିଶ୍ୱ ପ୍ରାଣରେ ହିଁ ପ୍ରତିଷ୍ଠିତ । ଯେଉଁଠାରେ ପ୍ରାଣ ଅଛି ବା

ସ୍ପନ୍ଦ ଶକ୍ତିର ଖେଳ ଅଛି ସେଠାରେ ପ୍ରବାହ ନିଶ୍ଚୟ ରହିବ—ମୂଳରେ ଏହି ପ୍ରବାହଟି ସରଳ ଥାଏ, ପରେ ତାହା କ୍ରମଶଃ ବକ୍ରଭାବରେ ପରିଣତ ହୁଏ। ନାଦର ଯେଉଁଟି ପରମରୂପ ସେଇଟି ଏହି ସରଳ ପ୍ରଭାବରେ ହିଁ ପରିସ୍ଫୁରିତ ହୁଏ। ତାହା ସର୍ବଦା ପ୍ରକାଶମାନ—ତାହାର ତିରୋଭାବ କେବେହେଲେ ହୁଏ ନାହିଁ। କିନ୍ତୁ ନାଦର ଅପର ରୂପର ନିରନ୍ତର ଉଦୟ ଓ ଅସ୍ତ ହେଉଅଛି। ଉଭୟ ବର୍ଣ୍ଣୋଦୟର ଅନ୍ତର୍ଗତ ଏବଂ ପ୍ରଯତ୍ନ-ନିରପେକ୍ଷ ଓ ସ୍ୱାରସିକ। ନାଦର ପରାପର ରୂପରେ ସୂକ୍ଷ୍ମତମ ତାରତମ୍ୟ ଅଛି। ଯେଉଁଟି ବର୍ଣ୍ଣର ପରମ ସ୍ୱରୂପ ତାହାର ସୂକ୍ଷ୍ମତର ଅବସ୍ଥାରେ ବର୍ଣ୍ଣଗତ ଭେଦ ବା ବିଭାଗ ନ ଥାଏ, କାରଣ ତାହାହିଁ ସର୍ବବର୍ଣ୍ଣର ଅବିଭକ୍ତ ସାମାନ୍ୟ ରୂପ। ପୂର୍ବରୁ ଯେଉଁ ଅନାହତ ଧ୍ୱନି କଥା କୁହାଯାଇଛି, ସେଇ ତାହାର ସ୍ୱରୂପ। ଏହି ଧ୍ୱନି ପ୍ରାଣୀମାନଙ୍କେ ସମସ୍ତଙ୍କର ହୃଦୟରେ ସର୍ବଦା ଆପେ ଆପେ ଧ୍ୱନିତ ହେଉଅଛି—

ଏକୋ ନାଦାତ୍ମକୋ ବର୍ଣ୍ଣଃ ସର୍ବବର୍ଣ୍ଣାବିଭାଗବାନ୍।
ସୋଽନସ୍ତମିତ ରୂପତ୍ୱାତ୍ ଅନାହତ ଇବୋଦିତଃ ॥

ଏହାର କେବଳ ଉଦୟ ଅଛି, ଅସ୍ତ ନାହିଁ। ପର ବର୍ଣ୍ଣର ଯେଉଁଟି ଅପେକ୍ଷାକୃତ କମ୍ ସୂକ୍ଷ୍ମ ଅବସ୍ଥା, ସେଠାରେ ଉଦୟ ଅଛି ଅସ୍ତ ମଧ୍ୟ ଅଛି। ତେବେ ଏ ଅସ୍ତ ନୁହେଁ, କାରଣ ଏ ଅସ୍ତ-ମଧ୍ୟରେ ପୁନରୁଦୟର ସନ୍ଧାନ ମିଳେ। ସୂକ୍ଷ୍ମ ବର୍ଣ୍ଣର ତିନୋଟି ସ୍ତର ଅଛି ତିନୋଟି ଯାକର ସୂକ୍ଷ୍ମତାର ତାରତମ୍ୟ ଅଛି। ସ୍ଥୂଳ ବର୍ଣ୍ଣର ଉଦୟ ବର୍ଗକ୍ରମରେ ହୁଏ। ଏକ ଅହୋରାତ୍ରରେ ଅଷ୍ଟବର୍ଗର ଉଦୟ ହୁଏ। ଏହି ଉଦୟ ସମ୍ବନ୍ଧରେ ବିବିଧ ପ୍ରକାର ମତ ଅଛି—ଗୋଟିଏ ମତରେ ଏହା ବାହ୍ୟ ଅହୋରାତ୍ରର ଅଧୀନ, ଅନ୍ୟ ମତରେ ଏହା କାହାର ଅଧୀନ ନୁହେଁ। ପୂର୍ବମତରେ ଯେଉଁ

ବଳୟୁ ହୁଏ ତାହା ବିଷମ, କିନ୍ତୁ ଉତ୍ତର ମତରେ ଏହି ଉଦୟ ବିଷମ ନ ହୋଇ ସମଭିବ୍ୟାପନ୍ନ ହୁଏ । ଉତ୍ତର ମତାନୁସାରେ ପ୍ରାଣ-ସଞ୍ଚାରର ପରିମାଣ ୩୬ ଅଙ୍ଗୁଳ ବୋଲି ଗୋଟିଏ ଗୋଟିଏ ବର୍ଗର ଉଦୟ ୪½ ଅଙ୍ଗୁଳ ହୋଇଥାଏ । ପୂର୍ବ ମତରେ ଗୋଟିଏ ଗୋଟିଏ ସଂକ୍ରାନ୍ତିରେ ୯୦୦ ଶତ ପ୍ରାଣର ସଞ୍ଚାର ଅର୍ଥାତ୍ ଶ୍ୱାସ ପ୍ରଶ୍ୱାସର ସଂଖ୍ୟା ହୋଇଥାଏ । ଦିବାଭାଗରେ ୧୨ଟି ସଂକ୍ରାନ୍ତି ଓ ରାତିରେ ୧୨ଟି ସଂକ୍ରାନ୍ତି ନିର୍ଦ୍ଦିଷ୍ଟ ଅଛି । ଦିବାଭାଗରେ ପ୍ରାଣର ଯେଉଁ ଚାର ହୁଏ ତାହାର ସଂଖ୍ୟା ୧୦୮୦୦ । ରାତ୍ରି କାଳରେ ମଧ୍ୟ ଏତିକି ହୁଏ । ମୋଟ ଚାର ଅଥବା ଶ୍ୱାସ-ପ୍ରଶ୍ୱାସର ସଂଖ୍ୟା ୨୧୬୦୦ । ଏହାହିଁ ଅହୋରାତ୍ରରେ ମନୁଷ୍ୟର ଶ୍ୱାସ-ପ୍ରଶ୍ୱାସର ସଂଖ୍ୟାବିଶିଷ୍ଟ ଅଜପା ।

ଏହି ଯେଉଁ ବର୍ଣ୍ଣର ଅବିଭକ୍ତ ସାମାନ୍ୟ ରୂପ ବା ନାଦ କଥା କୁହାଗଲା ଏହା ବ୍ରହ୍ମ-ପ୍ରଣବ-ସଂଲଗ୍ନ ନାଦ ବା ଜ୍ୟୋତି । ଏହିଠାରେ ମନ ଲୟପ୍ରାପ୍ତ ହେଲେ ଯାଇ ପରମପଦ ସାକ୍ଷାତ୍କାର ହୁଏ । ମନ ନ ଥିଲେ ନାଦ ନ ଥାଏ । ପୁଣି ନାଦ ନ ଥିଲେ ମନ ମଧ୍ୟ ନ ଥାଏ । କେହି କେହି ଏହି ଅବସ୍ଥାଟିକୁ "ପରବ୍ରହ୍ମ ଅବସ୍ଥା ବୋଲି ନିର୍ଦ୍ଦେଶ କରନ୍ତି । ଯେତେବେଳେ (ଆବରଣ ବଶତଃ) ନାଦ ଶ୍ରୁତ ହୁଏ ନାହିଁ ସେଇଟା ବିକ୍ଷିପ୍ତ, କ୍ଷିପ୍ତ ଅଥବା ମୂଢ଼ ଦଶା, କିନ୍ତୁ ଯେତେବେଳେ ନାଦ ଶ୍ରୁତିଗୋଚର ହୁଏ ସେଇଟି ଏକାଗ୍ର ଅବସ୍ଥା ଅଥବା ଜ୍ଞାନର ଅବସ୍ଥା । ଆଉ ଯେତେ-ବେଳେ ନାଦ-ଶ୍ରବଣ ସ୍ଥଗିତ ହୋଇଯାଏ ତାହା ପରର ନିରୋଧ ଅବସ୍ଥା । ସେତେବେଳେ ମନର ବୃତ୍ତି ରହେ ନାହିଁ, ଖାଲି ସଂସ୍କାରମାତ୍ର ରୂପେ ମନ ବିଦ୍ୟମାନ ଥାଏ । କିନ୍ତୁ ଏହି ସଂସ୍କାର ମଧ୍ୟ

ଯେତେବେଳେ ଉଦ୍ଭେ ନାହିଁ, ସେତେବେଳେ ଚନ୍ମାତ୍ର ବା ଶୁଦ୍ଧ ଆତ୍ମାର ସ୍ୱରୂପ ସ୍ଥିତି ବୋଲି ଜାଣିବାକୁ ହେବ ।

ଏହି ଅବିଭକ୍ତ ବର୍ଣ୍ଣ ବା (ପର) ନାଦ କିମ୍ବା (ପର) ଜ୍ୟୋତି ବସ୍ତୁତଃ ଚଦାତ୍ମିକା ଶକ୍ତି । ଏହା ହିଁ 'ପରାବାକ୍' ପଦବାଚ୍ୟ । ପୂର୍ଣ୍ଣ ଅହନ୍ତା ଏହାର ସ୍ୱରୂପ, ଏହା ପୂର୍ବରୁ କୁହାଯାଇଛି । ଯେଉଁମାନେ ପରାବାକ୍‌କୁ ଓ ଜ୍ୟୋତିକୁ ବିନ୍ଦୁ-କ୍ଷୋଭ-କାରଣ ମନେ କରନ୍ତି ସେମାନେ ଏହି କାରଣ ଅବସ୍ଥାର କାର୍ଯ୍ୟ ଭାବର ଦିଗଟିକୁ ଲକ୍ଷ୍ୟ କରିଥାନ୍ତି । ସେଥିପାଇଁ ସେହି ମତ ଅନୁସାରେ ପରାବାକ୍‌କୁ ଭେଦ ନ କରି ଆତ୍ମା ନିଜର ଶିବସ୍ୱରୂପ ଲାଭ କରି ପାରେ ନାହିଁ । ଏହି ଦୃଷ୍ଟିରୁ ପରାବାକ୍ ହିଁ ଶବ୍ଦବ୍ରହ୍ମରୂପକ ଉବ ଯାହାକୁ ବୋଧରୂପୀ ଖଡ଼୍‌ଗଦ୍ୱାରା ଭେଦ କରି ସ୍ୱରୂପ ଲାଭ କରିବାକୁ ହୁଏ ।

ଏହି ମାହାତ୍ମ୍ୟିତ ଚିନ୍ମୟ ଓ ଅସୀମ ନାଦପ୍ରବାହ ବିଶ୍ୱକଲ୍ୟାଣ ପାଇଁ ଊର୍ଦ୍ଧ୍ୱରୁ ଭ୍ରୂ-ମଧ୍ୟରେ ପତିତ ହୋଇଥାଏ । ଗଙ୍ଗା ଯେପରି ବିଷ୍ଣୁପଦରୁ ଶିବଙ୍କ ମସ୍ତକରେ ଅବତୀର୍ଣ୍ଣ ହୋଇଛନ୍ତି ସେହିପରି ଏହି ନାଦ ଗଙ୍ଗା ମଧ୍ୟ ବିଶ୍ୱସୃଷ୍ଟି ପାଇଁ ଓ ଜୀବର ପରମ କଲ୍ୟାଣ ସାଧନ ପାଇଁ ଅବତୀର୍ଣ୍ଣ ହୋଇଅଛନ୍ତି । ଭ୍ରୂମଧ୍ୟ ସ୍ଥାନ ହିଁ ଚକ୍ରର କେନ୍ଦ୍ର-ବିନ୍ଦୁ । ଏହି ସ୍ଥାନରେ ପ୍ରକୃତି ହ, କ୍ଷ ଓ ଏମାନଙ୍କ ମଧ୍ୟରେ ଲିଂଗାଜ ରକ୍ଷା କରି ସୃଷ୍ଟି ମୁଖରେ ତଳକୁ ଅବତୀର୍ଣ୍ଣ ହୁଅନ୍ତି । ମନୋଭୂମି ସଞ୍ଚାଳନ ପାଇଁ ଏହି ତିନୋଟି ବର୍ଣ୍ଣ ଭ୍ରୂ-ମଧ୍ୟରେ ସଂରକ୍ଷିତ ହୁଏ । ଏହା ପରେ ଚକ୍ର ସୂତ୍ର ଅବଲମ୍ବନପୂର୍ବକ ଅଧଃ ପ୍ରଦେଶରେ କ୍ରମଶଃ ତିନୋଟି ମଣ୍ଡଳ ରଚିତ ହୁଏ—ପ୍ରଥମେ ସୋମ ମଣ୍ଡଳ, ତା ପରେ ସୂର୍ଯ୍ୟମଣ୍ଡଳ ଏବଂ ଶେଷରେ ଅଗ୍ନିମଣ୍ଡଳ । ତିନୋଟି ଯାକ ମଣ୍ଡଳ ବର୍ଣ୍ଣମୟ ବୋଲି ଜାଣିବ । ଏମାନଙ୍କ ମଧ୍ୟରେ ସୋମମଣ୍ଡଳ ସ୍ୱରବର୍ଣ୍ଣମୟ, ସୂର୍ଯ୍ୟମଣ୍ଡଳ କ-କାରଆଦି ୨୫ଟି ବ୍ୟଞ୍ଜନ ବର୍ଣ୍ଣମୟ, ଏବଂ ଅଗ୍ନିମଣ୍ଡଳ ଯ-କାର

ଆଦି ଅବଶିଷ୍ଟ ବ୍ୟଞ୍ଜନ ବର୍ଣ୍ଣମୟ । ଏହି ତିନି ମଣ୍ଡଳରେ କ୍ରମଶଃ କାରଣ ଦେହ, ସୂକ୍ଷ୍ମ ଦେହ ଓ ସ୍ଥୂଳ ଦେହ ଉଦ୍ଭୂତ ହୁଏ । ଇଚ୍ଛା, ମନ ଏବଂ ପ୍ରାଣର ଅଭିବ୍ୟକ୍ତିର ଏହାହିଁ କ୍ରମ । ଏହି ପର୍ଯ୍ୟନ୍ତ ବର୍ଣ୍ଣମାଳାତ୍ମକ ରଚନା ସମ୍ପୂର୍ଣ୍ଣ ହେଲେ ବର୍ଣ୍ଣସମଷ୍ଟି ଆହୁରି ତଳକୁ ଅବତରଣ କରେ ଏବଂ ଅଜ୍ଞାନମୟ କାରଣ ସମୁଦ୍ରକୁ ଯାଇ ନିମଗ୍ନ ହୁଏ । ସେତେବେଳେ ଏହାର ନାମ ହୁଏ କୁଣ୍ଡଳିନୀ । ଏଇଟି ଚିନ୍ମୟ ବର୍ଣ୍ଣମାଳାର ସୁପ୍ତ ଅବସ୍ଥା । ଏହା ବ୍ୟଷ୍ଟି ଓ ସମଷ୍ଟିରେ ସମାନ ଭାବରେ ହୋଇଥାଏ ।

ଏ ପର୍ଯ୍ୟନ୍ତ ଯାହା କୁହାଗଲା ସେଥିରୁ ପ୍ରତୀତ ହେବ ଯେ ନାଦରୁ ସମଗ୍ର ବିଶ୍ୱ ସୃଷ୍ଟି ହୁଏ ଏବଂ ସୃଷ୍ଟ ବିଶ୍ୱର ଅନ୍ତରରେ ନାଦହିଁ ପ୍ରାଣ ବା ଜୀବନୀ ଶକ୍ତି ରୂପେ ନିହିତ ଥାଏ । ଏହାହିଁ ଅନନ୍ତ ବିଶ୍ୱକୁ ଗର୍ଭରେ ଧାରଣ କରି ପ୍ରସୁପ୍ତ ଭୁଜଗାକାରରେ ଅବସ୍ଥାନ କରୁଅଛି । ଆଗମବିଦ୍‌ଗଣ ଏହାକୁ ସ୍ୱୟମ୍ ଉଚ୍ଚରଣଶୀଳ ଅନଚ୍‌କ ହ୍‌ କାର ବା ପରମ ବୀଜ ବୋଲି କହନ୍ତି । ଏହି ଅବସ୍ଥାରେ ଏହାର ନାଦ-ଭାବ ଅଭିଭୂତ ଥାଏ ଏବଂ ପ୍ରାଣାତ୍ମକ ଭାବ ଉନ୍ମୁକ୍ତ ଥାଏ । ଏହା ଯେତେବେଳେ ବିଶ୍ୱକୁ ଗର୍ଭରେ ଧାରଣ କରିଥାଏ ସେତେ-ବେଳେ ଏହାର ନାମ ହୁଏ ପରା କୁଣ୍ଡଳୀ; ଯେତେବେଳେ ଏହା ନାଦାତ୍ମକ ରୂପରେ ସ୍ଫୁରିତ ହୁଏ ସେତେବେଳେ ଏହାର ନାମ ହୁଏ ବର୍ଣ୍ଣକୁଣ୍ଡଳୀ ଏବଂ ଯେତେବେଳେ ଏହି ନାଦରୂପ ମଧ୍ୟ ବୁଡ଼ିଯାଇ ଗଭୀର ସୁଷୁପ୍ତିରେ ଅବସ୍ଥାନ ହୁଏ ସେତେବେଳେ ଏହାର ନାମ ହୁଏ ପ୍ରାଣକୁଣ୍ଡଳୀ ।

ଏହି ପ୍ରାଣହିଁ ହଂସ । ଏହା ଆପଣା ସ୍ୱଭାବ ଅନୁସାରେ ଅଧଃ-ଊର୍ଦ୍ଧ୍ୱ ସଞ୍ଚରଣ କରେ—'ହ' କାର ବିମର୍ଶରୂପେ ହାନ (ତ୍ୟାଗ) କରେ ଓ 'ସ' କାର ବିମର୍ଶରୂପେ ସମାଦାନ (ଗ୍ରହଣ) କରେ—

ତ୍ୟାଗ ଓ ଗ୍ରହଣ ଏହାର ସ୍ୱଭାବ । ଏହାହିଁ ନାଦାତ୍ମକ ହଂସର ନିତ୍ୟ ଉଚ୍ଚାର । ଅନଚ୍କ (ହ୍)-ଅଭିବ୍ୟଞ୍ଜକ ଅ କାର । ଏହା ନାଦର ଶିରରୂପେ କଳ୍ପିତ ହୁଏ । ଏହି ଅ କାର ସଙ୍ଗେ ଯୋଗ ହେଲେ ଉ କାର ଅଧଃ-ଊର୍ଦ୍ଧ୍ୱ ସଞ୍ଚାରକ ବୋଲି ଚରଣରୂପେ କଳ୍ପିତ ହୁଏ । ଉକାର ଯୋଗ ହେଲେ ବିନ୍ଦୁ ପ୍ରଭୃତି ପ୍ରମେୟର ପ୍ରାକଟ୍ୟର ସୂତ୍ରପାତ ହୁଏ । ଏହା ଅନୁସ୍ୱାର ବା ମ କାର ମାତ୍ରାରେହିଁ ହୋଇଥାଏ । ଏହିପରି ଅ-ଉ-ମ ରୂପେ ବା ପ୍ରଣବ ରୂପେ ଏହି ଉଚ୍ଚାରଣର ଉପଲବ୍ଧି ସମ୍ଭବପର ହୁଏ । ଏହାହିଁ ବର୍ଣ୍ଣର ଉଚ୍ଚାର ।

ଏହି ଯେଉଁ ବର୍ଣ୍ଣ-ଉଚ୍ଚାରର ବିବରଣ ଦିଆଗଲା, ଠିକଏ ଅନ୍ତର୍ମୁଖ ହେଲେ ଏହାର ଅନୁଭୂତି ଯେ କୌଣସି ସାଧାରଣ ବ୍ୟକ୍ତିର ମଧ୍ୟ ହୋଇପାରେ । ଏହା ନାଦର ସ୍ଥୂଳ ଅନୁଭୂତି । କୁଣ୍ଡଳିନୀ ଶକ୍ତି ପ୍ରବୁଦ୍ଧ ହେଲେ ଏହା ଅଳ୍ପାଧିକ ପରିମାଣରେ ସମସ୍ତେ ଲାଭ କରି ପାରିବେ । ପୂର୍ବରୁ କୁହାଯାଇଛି ଯେ ମନ ଓ ପ୍ରାଣ ସମ୍ମିଳିତ ହୋଇ ଜାଗ୍ରତ କୁଣ୍ଡଳିନୀ ସହିତ ଯୋଗରେ ମଧ୍ୟ-ନାଡ଼ୀରେ ପ୍ରବେଶ କଲା ମାତ୍ରେ ଅନନ୍ତପ୍ରକାର ବିଚିତ୍ରତାସମ୍ପନ୍ନ ସ୍ଥୂଳ ନାଦର ଅନୁଭବ ହେବାକୁ ଆରମ୍ଭ ହୁଏ । ସାଧାରଣତଃ ଦଶ ପ୍ରକାର ଧ୍ୱନିର ବର୍ଣ୍ଣନା ମିଳେ, ଏହାର ମଧ୍ୟ ନାନା ପ୍ରକାର ଭେଦ ଅଛି । ନଅଟି ଧ୍ୱନି ତ୍ୟାଗ କରି ଦଶମଟିକୁ ଅବଲମ୍ବନ କରିବାର ବିଧାନ ଅଛି । ଏଗୁଡ଼ିକ କ୍ରମଶଃ ଅଧିକତର ସୂକ୍ଷ୍ମ । ସୁଷୁମ୍ନା ନାଡ଼ୀ ବ୍ରହ୍ମନାଡ଼ୀ ସତ, କିନ୍ତୁ ଯେ ପର୍ଯ୍ୟନ୍ତ ଏହା ସହିତ ସଂସୃଷ୍ଟ ଅନ୍ୟ ନାଡ଼ୀ ଯୋଗସୂତ୍ର ଛିନ୍ନ ନ ହୁଏ ସେ ପର୍ଯ୍ୟନ୍ତ ଏହା ପ୍ରକୃତ ବ୍ରହ୍ମନାଡ଼ୀ-ପଦ-ବାଚ୍ୟ ହୁଏ ନାହିଁ । ବଜ୍ରା, ଚିତ୍ରିଣୀ ପ୍ରଭୃତି ନାଡ଼ୀ ବ୍ରହ୍ମନାଡ଼ୀର ପୂର୍ବାଭାସ । ଏହି ନାଡ଼ୀ-ସଂଘଟ୍ଟ ବଶତଃ

ମନ, ବାୟୁ ଓ କୁଣ୍ଡଳିନୀର ସଞ୍ଚାର ବିଭିନ୍ନ ମାର୍ଗରେ ଘଟିଥାଏ । ବ୍ୟକ୍ତିଗତ ଆନ୍ତର ପ୍ରକୃତିର ଭେଦବଶତଃ ଏପରି ହୋଇଥାଏ । ସେଥିପାଇଁ ସ୍ଥୂଳ ନାଦର ବୈଚିତ୍ର୍ୟ ଘଟେ । ନାଦ ସହିତ ଜ୍ୟୋତିର ସମ୍ବନ୍ଧ ଅଛି । ନାଦର ଭିନ୍ନତା ପରି ଜ୍ୟୋତିର ମଧ୍ୟ ଭିନ୍ନତା ହୋଇଥାଏ । ଯେଉଁଥିରେ କୌଣସି ରଙ୍ଗ ନାହିଁ ତାହାହିଁ ବିଶୁଦ୍ଧ ଜ୍ୟୋତି—ଯାହା ଶୁଭ୍ରପ୍ରକାଶ ଅଥବା ଅ-ବର୍ଣ୍ଣ-ପ୍ରକାଶ । ବିଶୁଦ୍ଧ ନାଦ ମଧ୍ୟ ତାହାହିଁ, ଯେଉଁଥିରେ ସ୍ୱରଗତ, ମାତ୍ରାଗତ ଓ ଗୁଣଗତ କୌଣସି ବିଭାଗ ନାହିଁ ।

ହଠଯୋଗରେ ନାଦସାଧନାର ଉପଦେଶ ଅଛି । ଆଦିନାଥ ଶଙ୍କର ପ୍ରୋକ୍ତ ସଉଠେ କୋଟି ଲୟଯୋଗ ମଧ୍ୟରେ ନାଦାନୁ-ସନ୍ଧାନରହିଁ ଶ୍ରେଷ୍ଠତ୍ୱ ସ୍ୱୀକୃତ ହୋଇଅଛି । ହଠଯୋଗୀଗଣ ଆରମ୍ଭ, ଘଟ, ପରିଚୟ ଓ ନିଷ୍ପତ୍ତି ଏହି ଚାରୋଟି ନାଦଭୂମିର ବର୍ଣ୍ଣନା କରିଥାନ୍ତି । ନିଷ୍ପତ୍ତି ଅବସ୍ଥା ସିଦ୍ଧ ଅବସ୍ଥା । ଏହାର ଗୋଟିଏ ଗୋଟିଏ ଅବସ୍ଥାରେ ଗୋଟିଏ ଗୋଟିଏ ଗ୍ରନ୍ଥିର ଭେଦ ହୁଏ ଓ ଗୋଟିଏ ଗୋଟିଏ ପ୍ରକାର ଶୂନ୍ୟର ଉଦୟରେ ଗୋଟିଏ ଗୋଟିଏ ପ୍ରକାର ଧ୍ୱନିର ଅଭିବ୍ୟକ୍ତି ହୁଏ । ଏ ସମ୍ବନ୍ଧରେ ଅଧିକ ବିବରଣ ବର୍ତ୍ତମାନ ପ୍ରସଙ୍ଗରେ ଅନାବଶ୍ୟକ ।

ଅ-ଉ-ମ ରୂପରେ ଯେଉଁ ନାଦବିନ୍ଦୁ କଥା ପୂର୍ବରୁ କୁହା-ଯାଇଅଛି ତାହା ଯୋଗାଭ୍ୟାସବଶତଃ କ୍ରମଶଃ ଅଧିକ ଅଧିକ ସୂକ୍ଷ୍ମତା ପ୍ରାପ୍ତ ହୁଏ । ମକାର ମାତ୍ରା ପରେ ଏହି ଉଚ୍ଚାର ଭ୍ରୂମଧ୍ୟରେ ବିନ୍ଦୁରୂପ ଧାରଣ କରେ । 'ଅ'-କାର ଆଦି ତିନି ମାତ୍ରାରେ ସ୍ଥୂଳ ସୂକ୍ଷ୍ମ କାରଣ ରୂପେ ବିହିତ ନିଃଶେଷ ଭେଦ ବିଦ୍ୟମାନ ଅଛି—ଏହିସବୁ ଭେଦ ପିଣ୍ଡୀଭୂତ ହୋଇ ଅବିଭକ୍ତ ରୂପେ ଯେଉଁଠାରେ ବିହିତ ହୁଏ ତାହାହିଁ ବିନ୍ଦୁ । ଏଠାରେ ବେଦ୍ୟ ବା ଜ୍ଞେୟ ହିଁ

ପ୍ରଧାନ । ଯୋଗୀଗଣଙ୍କର ନଅଟି ଯୋଗଭୂମି ବା ଚିନ୍ମୟ ଅନୁଭୂତି ଭୂମି ଭିତରେ ବିନ୍ଦୁ ହିଁ ପ୍ରଥମ । ଏଇ ନଅଟି ଭୂମି ମଧ୍ୟ 'ନବନାଦ' ନାମରେ ପ୍ରସିଦ୍ଧ । ସ୍ଥୂଳରେ ଯେପରି ନାଦର ନଅଟି ବିଭାଗ କଳ୍ପିତ ହୁଏ, ସୂକ୍ଷ୍ମରେ ମଧ୍ୟ ସେହିପରି ନଅଟି ବିଭାଗ କଳ୍ପିତ ହୁଏ । ବିନ୍ଦୁର ଉଚ୍ଚାରଣ-କାଳ ଅର୍ଦ୍ଧମାତ୍ରା—ଅର୍ଦ୍ଧମାତ୍ରାରେ ପ୍ରବିଷ୍ଟ ନ ହେବା ପର୍ଯ୍ୟନ୍ତ ଏହିସବୁ ଯୋଗଭୂମି ମିଳେ ନାହିଁ । ଏକ ମାତ୍ରାରୁ ଅର୍ଦ୍ଧ ମାତ୍ରାରେ ପ୍ରବେଶ ଅତ୍ୟନ୍ତ ଦୁରୂହ । ମନର ଲୌକିକ ସ୍ଥିତିରେ ଅର୍ଦ୍ଧମାତ୍ରାରେ ପ୍ରବେଶ ମୋଟେ ହୋଇପାରେ ନାହିଁ, କାରଣ ଏକାଗ୍ରତା ଓ ନିରୋଧର ସନ୍ଧି ସ୍ଥାନରେ ଅର୍ଦ୍ଧମାତ୍ରା ଅବସ୍ଥିତ । ପ୍ରଜ୍ଞାର ଉତ୍କର୍ଷ ଯଦି ବିଭୂତି ଆଡ଼କୁ ହୁଏ ତା ହେଲେ ସର୍ବଜ୍ଞତ୍ୱର ଆବିର୍ଭାବ ହୁଏ । କିନ୍ତୁ ଯଦି ଏହା ଚିତ୍-ପ୍ରକାଶ ଆଡ଼କୁ ହୁଏ ତେବେ ସର୍ବଜ୍ଞତ୍ୱର ନିରୋଧ ଓ ବିବେକର ଉଦୟ, ଏହାହିଁ ଉକ୍ତ ଉତ୍କର୍ଷର ଲକ୍ଷଣ । ଅସ୍ମିତାହିଁ ଗ୍ରନ୍ଥି—ଏହା ମୁକ୍ତ ହେଲେ ପୂର୍ଣ୍ଣ ମୁକ୍ତ ନ ହେବା ପର୍ଯ୍ୟନ୍ତ ଯେଉଁ ବିବେକ-ପ୍ରବାହ ଚାଲୁଥାଏ ତାହାହିଁ ପୂର୍ଣ୍ଣ ନିରୋଧ ଆଡ଼କୁ ନେଇଯାଏ । ଏହାର ନାମ ଉନ୍ମନୀ । ମାତ୍ରା ହ୍ରାସାନୁସାରେ କାଳର ସମ୍ବନ୍ଧ ଯେତେ କମ୍ ହୁଏ ଜଡ଼ ସମ୍ବନ୍ଧ ମଧ୍ୟ ସେତିକ କମ୍ ହୋଇଥାଏ ଏବଂ ସେହି ଅନୁପାତରେ ଚିତ୍-ପ୍ରକାଶର ଉଜ୍ଜ୍ୱଳତା ମଧ୍ୟ ବଢ଼ିଥାଏ । ସେଥିପାଇଁ ନିରୋଧ ବା ଉନ୍ମନୀ ଅବସ୍ଥାରେ କାଳ ନ ଥାଏ ।

ଦେହତତ୍ତ୍ୱ ଅତ୍ୟନ୍ତ ଜଟିଳ । ଏହାକୁ ଭେଦ କରିବାକୁ ହେଲେ ଦେହର ସକଳ, ସକଳ-ନିଷ୍କଳ ଓ ନିଷ୍କଳ, ଏହି ତିନୋଟି ସ୍ତର ଭେଦ କରିବାକୁ ପଡ଼େ । ଅକୁଳ ସହସ୍ରାର ଠାରୁ ମୂଳାଧାର ଆଦି ଯାବତୀୟ କୁଳପଦ୍ମ ଭେଦ କରି କ୍ରମଶଃ ଉପର ଆଡ଼କୁ ଉଠିବାକୁ ହୁଏ । ଆମେ ସାଧାରଣତଃ ଯେଉଁ ସହସ୍ରଦଳ କମଳ କଥା ଶୁଣି-

ଥାଉ ତାହା ଦେହର ଊର୍ଦ୍ଧ୍ୱ ଦେଶରେ ଅବସ୍ଥିତ । ଅକୁଳଠାରୁ ଆଜ୍ଞାଚକ୍ର ପର୍ଯ୍ୟନ୍ତ ପ୍ରଦେଶର ଭାବନା ସକଳ, ବିନ୍ଦୁଠାରୁ ଉନ୍ମନୀ ପର୍ଯ୍ୟନ୍ତ ସକଳ-ନିଷ୍କଳ ଏବଂ ମହାବିନ୍ଦୁ ନିଷ୍କଳ ।

ଭ୍ରୂମଧ୍ୟରେ କିଛିଟା ଉପର ଆଡ଼କୁ ଲଲାଟରେ ବିନ୍ଦୁର ସ୍ଥାନ । ଏହା ବର୍ତ୍ତୁଳାକାର ଏବଂ ଦେଖିବାକୁ ଦୀପ ପରି । ବିନ୍ଦୁ-ଆବରଣରେ ମୂଳ ପାଞ୍ଚଟି କଳାର ସ୍ଥିତି ରହିଅଛି । ନିବୃତ୍ତି ଆଡ଼େ ନିବୃତ୍ତି ପ୍ରଭୃତି ଚାରୋଟି କଳା ଏବଂ ଶାନ୍ତ୍ୟତୀତା ନାମରେ ପଞ୍ଚମ କଳା ବିନ୍ଦୁ ମଧ୍ୟରେ ଅବସ୍ଥିତ । 'ମତଙ୍ଗ ପରମେଶ୍ୱର' ନାମକ ଆଗମ ମତରେ ଯେଉଁ ପରମ ତତ୍ତ୍ୱକୁ ଲୟ ଅବସ୍ଥାରେ ଶିବ କୁହାଯାଏ—ବ୍ୟକ୍ତ ଅବସ୍ଥାରେ ତାକୁଇ ବିନ୍ଦୁ ମଧ୍ୟ କୁହାଯାଏ । ସୃଷ୍ଟିର ଉନ୍ମୁଖ ଅବସ୍ଥା ହିଁ ବିନ୍ଦୁ । ପୁଣି ଅନ୍ୟ ଦିଗରୁ ଦେଖିଲେ ଅନନ୍ତରେ ପ୍ରବେଶ ପାଇଁ ପ୍ରଥମ ଦ୍ୱାର ହେଲା ବିନ୍ଦୁ । ସକଳ ଅବସ୍ଥାରେ ସାଧକ ସୀମା ଭିତରେ ବର୍ତ୍ତମାନ ଥାଏ, କିନ୍ତୁ ଏହି ଅବସ୍ଥାରେ କ୍ରମାଗତ ଭୂମି ଭେଦ କରିବା ଫଳରେ ଚିତ୍ତ କ୍ରମଶଃ ଅଧିକତର ଏକାଗ୍ରତା ଲାଭ କରେ । ଆଜ୍ଞାଚକ୍ରରେ ଏକାଗ୍ରତାର ପୂର୍ଣ୍ଣ ବିକାଶ ହୁଏ । ପାତଞ୍ଜଳ ମତରେ ସମ୍ପ୍ରଜ୍ଞାତ ସମାଧିର ପୂର୍ଣ୍ଣ ବିକାଶ ଅସ୍ମିତା ନାମରେ ଅଭିହିତ ହୁଏ । ତାହାଦ୍ୱାରା ପ୍ରଜ୍ଞାର ପୂର୍ଣ୍ଣ ବିକାଶ ହେଲେ ମଧ୍ୟ ତାହା ସେଇ ସ୍ଥୂଳ କାରବାର, କାରଣ ସବୁଙ୍କରୁ ମଧ୍ୟ ସ୍ଥୂଳର ଧର୍ମ ଛଡ଼ା ଆଉ କିଛି ନୁହେଁ । ବିଶୁଦ୍ଧ ଚିଦନୁଭୂତି ଏହି ଭୂମିରେ ହୁଏ ନାହିଁ । ଗ୍ରନ୍ଥିଭେଦ ପରେ ନିରୋଧର ଦ୍ୱାର ଖୋଲିଗଲେ ସୂକ୍ଷ୍ମ ଚିଦନୁଭୂତିର ସୂତ୍ରପାତ ହୁଏ । ନିରୋଧର କ୍ରମବିକାଶର ଇତିହାସ ଏବଂ ପୂର୍ବବର୍ଣ୍ଣିତ ନବନାଦର କ୍ରମିକ ଉତ୍କର୍ଷ ଏକା କଥା । ନିରୋଧର ଚରମ ଅବସ୍ଥାରେ ଚିତ୍ତବୃତ୍ତି-ଶୂନ୍ୟ

ହୁଏ । ଅତଏବ ଏହା ନବନାଦର ବ୍ୟାପାରଟି ନିରୁଦ୍ଧ ଚିତ୍ତର ଗୁପ୍ତ ରହସ୍ୟ ।

ବିନ୍ଦୁ କଥା ପୂର୍ବରୁ କୁହାଯାଇଛି । ଏହି ଭୂମିରେ ଜ୍ୟୋତିର୍ମୟ ଜ୍ଞାନ ରୂପେ ଈଶ୍ୱରବୋଧର ସୂଚନା ଘଟେ । ଏଠାରେ ପ୍ରବିଷ୍ଟ ହୋଇ ନ ପାରିଲେ ଜାଗତିକ ଜ୍ଞାନ ବିଲୁପ୍ତ ହୋଇପାରେ ନାହିଁ । ସମାଧିଜନିତ ପ୍ରଜ୍ଞାଠାରୁ ଏହା ଅନେକ ଉପରର ଅବସ୍ଥା, କାରଣ ସମାଧିଜନିତ ଜ୍ଞାନ ଉତ୍କୃଷ୍ଟ ହେଲେ ମଧ୍ୟ ଜାଗତିକ ଜ୍ଞାନ ମାତ୍ର । କିନ୍ତୁ ଅର୍ଦ୍ଧମାତ୍ରାର ଜ୍ଞାନ ଚିନ୍ମୟ ଅନୁଭବ, ସେଥିପାଇଁ ତାହା ଶ୍ରେଷ୍ଠ । ଲୌକିକ ଜ୍ଞାନରେ ତ୍ରିପୁଟୀର ଲୋପ ଘଟେ ନାହିଁ—ବରଂ ଅଭେଦଜ୍ଞାନର ଉଦୟ ହେଲେ ମଧ୍ୟ ଭେଦବୋଧର ନିବୃତ୍ତି କ୍ରମଶଃ ଘଟିଥାଏ । ଏହି ଭେଦବୋଧ କ୍ରମଶଃ ସ୍ତର ଭେଦ କରୁ କରୁ କଟିଯାଏ । ସେତେବେଳେ ପ୍ରଥମେ ଦେଶକାଳର ଜ୍ଞାନ ଥାଏ ସତ, ତେବେ ତାହା ଟିକଏ ଅନ୍ୟ ପ୍ରକାରର । ଯୋଗୀଗଣ ଯେଉଁ ପଞ୍ଚଶୂନ୍ୟର ପରିଚୟ ପ୍ରାପ୍ତ ହୁଅନ୍ତି ବିନ୍ଦୁହିଁ ତନ୍ମଧ୍ୟରେ ପ୍ରଥମ ଶୂନ୍ୟ । ବିନ୍ଦୁ ସ୍ତରରେ ବୀଜ ନ ଥାଏ ଅର୍ଥାତ୍ ପ୍ରକୃତିର ସ୍ଫୁରଣ ନ ଥାଏ, ସେଥିପାଇଁ ଏହାକୁ ପୁରୁଷର ଅଭିନ୍ନ ସ୍ୱରୂପ ବୋଲି ମଧ୍ୟ କୁହାଯାଇପାରେ ।

ବିନ୍ଦୁପରେ ଅର୍ଦ୍ଧଚନ୍ଦ୍ର । ଏଇଟି ଦ୍ୱିତୀୟ ଭୂମି । ଏହାର ମାତ୍ରା ୧/୪ । ବିନ୍ଦୁକୁ ପୂର୍ଣ୍ଣଚନ୍ଦ୍ର ବା ଚନ୍ଦ୍ରବିନ୍ଦୁ କଳ୍ପନା କରି ଅର୍ଦ୍ଧଚନ୍ଦ୍ରକୁ ତାହାର ଅର୍ଦ୍ଧାଂଶରୂପେ କଳ୍ପନା କରାଯାଇଅଛି । ଏହା ବିନ୍ଦୁ ଉପରେ ଅବସ୍ଥିତ । ଏହାର ଗୃହ ପାଖରେ ଚୃରେଟି ଓ ମଝିରେ ଗୋଟିଏ ମୋଟ ପାଞ୍ଚଟି କଳା ଅଛି । ଏହା କିନ୍ତୁ ଶୂନ୍ୟନୁହେଁ । ଲଲାଟସ୍ଥିତ ଅର୍ଦ୍ଧ ଚନ୍ଦ୍ରରେ ବିନ୍ଦୁର ଜ୍ଞେୟପ୍ରଧାନ ଭାବ କଟିଯାଏ ।

ଏହା ପରେ ତୃତୀୟ ଭୂମିର ନାମ ନିରୋଧିକା ବା ରୋଧିନୀ । ଏହାର ମାତ୍ରା ଆହୁରି ସୂକ୍ଷ୍ମ ଅର୍ଥାତ୍ ୧/୮ । ଏହି ନିରୋଧିକା ଭୂମି ଲଂଘନ କରିବା ଅତି କଠିନ । ସମଗ୍ର ବିଶ୍ୱର ଶାସନର ଭାର ବ୍ରହ୍ମା ଆଦି ଯେଉଁ ପଞ୍ଚ କାରଣଙ୍କ ଉପରେ ଅର୍ପିତ ହୋଇଅଛି ସେମାନଙ୍କର ମଧ୍ୟ ଊର୍ଦ୍ଧ୍ୱଗତି ଏହି ନିରୋଧିକା ଭୂମିରେ ରୁଦ୍ଧ ହୋଇଯାଏ, କାରଣ ଏହି ଭୂମି ଭେଦ କଲେ ବିଶ୍ୱ-ଶାସନ କାର୍ଯ୍ୟ କରିବା ସେମାନଙ୍କ ପକ୍ଷରେ ଆଉ ସମ୍ଭବପର ହେବ ନାହିଁ । ଏକମାତ୍ର ଯୋଗୀ ଏହାକୁ ଭେଦ କରି ନାଦ ପଥରେ ପ୍ରବେଶ କରିପାରନ୍ତି । ବସ୍ତୁତଃ ଏହା ବିନ୍ଦୁ ଆବରଣର ହିଁ ଶେଷ ପ୍ରାନ୍ତ ମାତ୍ର ।

ନିରୋଧିକା ପରେ ନାଦ ଓ ନାଦ ପରେ ନାଦାନ୍ତ, କ୍ରମଶଃ ଏହି ଦୁଇଟି ଭୂମି ଅଛି । ନାଦର ମାତ୍ରା ୧/୧୬ ଓ ନାଦାନ୍ତର ମାତ୍ରା ୧/୩୨ । ଏହି ନାଦକୁ ବେଷ୍ଟନ କରି ଅସଂଖ୍ୟ ମନ୍ତ୍ର-ମହେଶ୍ୱର ବିରାଜ କରୁଛନ୍ତି । ନାଦର ସ୍ଥାନ ବ୍ରହ୍ମରନ୍ଧ୍ରର ମୁହଁ ପାଖରେ ବିଶୁଦ୍ଧ ନିର୍ଗୁଣାତୀତ ଓ ଚିତ୍ତର ଆଭାସଯୁକ୍ତ ଶବ୍ଦ ଏହିଠାରେ ଅନୁଭୂତ ହୁଏ । ବିଶୁଦ୍ଧ ଚିତ୍ତର ଧାର ଏହି ଜାଗାରୁ ଆରମ୍ଭ ହୋଇଛି କହିଲେ ଚଳେ । ନାଦାନ୍ତଟି ଶୂନ୍ୟ—ଏହାହିଁ ତୃତୀୟ ଶୂନ୍ୟ । କୌଣସି କୌଣସି ଆଚାର୍ଯ୍ୟଙ୍କ ମତରେ ନାଦ ଓ ନାଦାନ୍ତ ଈଶ୍ୱରପଦ ରୂପେ ଗୃହୀତ ହୁଏ । ଏଥିରେ ଗୁଣୀଭୂତ ବେଦ୍ୟର ଭେଦ ହିଁ ପ୍ରଧାନ । ଏହି ଭୂମିରେ ସମସ୍ତ ବାଚକ ଶବ୍ଦ ଅଭିନ୍ନରୂପେ ବିମର୍ଶନର ବିଷୟୀଭୂତ ହୁଏ । ଏହା ପରେ ଅନାହତ ଧ୍ୱନି ବା ହଂସ ଲଲାଟ ମଧ୍ୟରେ ଧ୍ୱନିତ ହେବାକୁ ଲାଗେ । ନାଦାନ୍ତଟି ନାଡ଼ୀର ଆଧାର ଓ ବ୍ରହ୍ମବିଳରେ ଲୀନ—ଏହା ମୋକ୍ଷଦ୍ୱାର ରୁଦ୍ଧ କରି

ରହିଅଛି । ଏହା ଅଧଃ-ଶକ୍ତି ଦ୍ୱାରା ସକଳ ଜଗତ୍ ଭେଦ କରି ଊର୍ଦ୍ଧ୍ୱ ଶକ୍ତିରେ ସମାପ୍ତ ହୋଇଅଛି ।

ଏହା ପରେ ଶକ୍ତିସ୍ଥାନ—ଏହାହିଁ ଷଷ୍ଠ ତଦ୍‌ଭୂମି । ଏହି ସ୍ଥାନଟି ବ୍ରହ୍ମରନ୍ଧ୍ର ଉପରେ । ଊର୍ଦ୍ଧ୍ୱକୁଣ୍ଡଳୀ ଏହି ଶକ୍ତିର ନାମାନ୍ତର—ଏହା ବିଶ୍ୱାଧାର, କାରଣ ଏହାର ଗର୍ଭରେ ଅନୁନ୍ମିଷିତ ବିଶ୍ୱ ନିହିତ ରହିଅଛି । ଏହା ପୁରେଟି କଳାଦ୍ୱାରା ବେଷ୍ଟିତ— ଏହାର କେନ୍ଦ୍ରସ୍ଥ କଳାର ନାମ ବ୍ୟାପିନୀ । ଶକ୍ତିର ମାତ୍ରା ୧/୬୪ । ଶକ୍ତିରେ ହିଁ ଆନନ୍ଦସତ୍ତାର ଅନୁଭବ ହୁଏ । ଏହା ପରେ ବ୍ରହ୍ମର ସଗୁଣ ଶକ୍ତିର ଆନନ୍ଦର ଆଭାସ । ଶକ୍ତିଠାରୁ ଉନ୍ମନା ପର୍ଯ୍ୟନ୍ତ ପ୍ରତ୍ୟେକ ଭୂମି ମାତ୍ର ଦ୍ୱାଦଶ ଆଦିତ୍ୟ ପରି ଉଜ୍ଜ୍ୱଳ । ଶକ୍ତିଟି ଶୂନ୍ୟାତ୍ମକ ନୁହେଁ, କିନ୍ତୁ ବ୍ୟାପିନୀ ଶୂନ୍ୟ ସ୍ୱରୂପ । ପଞ୍ଚଶୂନ୍ୟ ମଧ୍ୟରେ ଏହାହିଁ ଚତୁର୍ଥ ଶୂନ୍ୟ । * ଶକ୍ତିଠାରୁ ବ୍ୟାପିନୀ ପୃଥକ୍ । ପୃଥିବୀ ପର୍ଯ୍ୟନ୍ତ ଯାବତୀୟ ତତ୍ତ୍ୱ ଓ ଭୁବନ ବସ୍ତୁତଃ ଶକ୍ତିର ପ୍ରପଞ୍ଚ । ଶକ୍ତିତତ୍ତ୍ୱଟି ହେଉଛି ଅନାଶ୍ରିତ ଭୁବନ ବା ଯୋଗୀମାନଙ୍କର ପ୍ରକୃତ ନିରାଲମ୍ବପୁରୀ । ଶିବତତ୍ତ୍ୱ ପ୍ରକୃତ ପ୍ରସ୍ତାବରେ ଶକ୍ତି ତତ୍ତ୍ୱରେ ହିଁ ବ୍ୟାପିନୀରେ ଅବସ୍ଥିତ । ଏହି ଅନାଶ୍ରିତ ଭୁବନର ଚାରି ଦିଗରେ ଚାରେଟି ଅନୁରୂପ ଶକ୍ତି ଅବସ୍ଥିତ—ମଧ୍ୟରେ ଅନାଶ୍ରିତା ଶକ୍ତି ଥାନ୍ତି । ଶିବରୂପୀ ଅନାଶ୍ରିତ ଦେବଙ୍କର ଉତ୍ସଙ୍ଗରେ ଅନାଶ୍ରିତା ଶକ୍ତି ବିରାଜମାନ ।

* ଅଧିକାଂଶ ଯୋଗୀ ଉପାସକମାନଙ୍କର ଏହାହିଁ ମତ । ସ୍ୱଚ୍ଛନ୍ଦାଗମ ମଧ୍ୟ ଏହି ମତର ସମର୍ଥକ । ଏହି ମତରେ (କ) ଊର୍ଦ୍ଧ୍ୱଶୂନ୍ୟ = ଶକ୍ତିପଦ, ଯେଉଁଠାରେ ନାଦାନ୍ତ ପର୍ଯ୍ୟନ୍ତ ନିଃଶେଷ ପାଶ ପ୍ରଶାନ୍ତ । (ଖ) ଅଧଃଶୂନ୍ୟ = ହୃଦୟକ୍ଷେତ୍ର, ଯେଉଁଥିରେ ଏବେ ମଧ୍ୟ ପ୍ରପଞ୍ଚର ଉଲ୍ଲାସ ହୋଇନାହିଁ । (ଗ) ମଧ୍ୟ-ଶୂନ୍ୟ = କଣ୍ଠ, ତାଳୁ, ଭ୍ରୂ-ମଧ୍ୟ, ଲଲାଟ ଓ ବ୍ରହ୍ମରନ୍ଧ୍ର । ବ୍ୟାପିନୀ ବ୍ରହ୍ମରନ୍ଧ୍ରର ପରେ ।

ବ୍ୟାପିନୀ ପରେ ସମନାର ସ୍ଥାନ । ଏହାହିଁ ପରାଶକ୍ତି । ଏହାହିଁ ବ୍ୟାପିନୀ ପଦାବସ୍ଥିତ ଅନାଶ୍ରିତ ଭୁବନଠାରୁ ମଧ୍ୟ ଉପରେ । ଏହାହିଁ ସମସ୍ତ କାରଣର କର୍ତ୍ତୃଭୂତା ଏବଂ ସମସ୍ତ ଅଣ୍ଡର ଆଧାରଭୂତା । ଏହି ଶକ୍ତିରେହିଁ ଆରୂଢ଼ ହୋଇ ଶିବ ସମଗ୍ର ବିଶ୍ୱର ସୃଷ୍ଟି, ରକ୍ଷା, ସଂହାର, ନିଗ୍ରହ ଓ ଅନୁଗ୍ରହ ରୂପକ ପାଞ୍ଚଟି କାର୍ଯ୍ୟ ସମ୍ପାଦନ କରନ୍ତି । ତନ୍ତ୍ର ମତରେ ମହେଶ୍ୱର ହେଉଛନ୍ତି କର୍ତ୍ତା ଓ ଶକ୍ତି ତାଙ୍କର କରଣ ।

ବ୍ୟାପିନୀର ମାତ୍ରା ୧/୧୨୮ ଓ ସମନାର ମାତ୍ରା ୧/୨୫୬ ।

ଏହା ପରେ ଉନ୍ମନା । କୌଣସି ମତରେ ଏହାର ମାତ୍ରା ୧/୫୧୨ । ଅନ୍ୟ ମତରେ ଏହାର ଉଚ୍ଚାରଣ କାଳ ନାହିଁ, କାରଣ ଏହା ମନର ଅଗୋଚର । ଏହିଠାରେ ହିଁ ନାଦରୂପୀ ଶବ୍ଦବ୍ରହ୍ମର ଶେଷ । ଏହାହିଁ ପଞ୍ଚମ ଶୂନ୍ୟ ଏବଂ ନବନାଦ ମଧ୍ୟରେ ଏଇଟି ନବମ ଭୂମି ।

---

ବ୍ରହ୍ମରନ୍ଧ୍ର ହିଁ ଶକ୍ତିସ୍ଥାନ । ସେଥିପାଇଁ ବ୍ୟାପିନୀ ଚତୁର୍ଥ ଶୂନ୍ୟ । ଉକ୍ତ ତିନୋଟି ଶୂନ୍ୟ ଚଳ ଓ ହେୟ, କାରଣ ଏମାନେ ଆପେକ୍ଷିକ । ବସ୍ତୁତଃ ଚତୁର୍ଥ ଶୂନ୍ୟ ମଧ୍ୟ ସେଇଆ । ଏହି ମତରେ ସମନାରେ ପଞ୍ଚମ ଶୂନ୍ୟ ଓ ଉନ୍ମନାରେ ଷଷ୍ଠ ଶୂନ୍ୟ । ଏଗୁଡ଼ିକ ମଧ୍ୟ ଚଳ ଓ ହେୟ । ପରତତ୍ତ୍ୱ ତୁଳନାରେ ଉନ୍ମନାରେ ମଧ୍ୟ କିଞ୍ଚିତ୍ ଚଳତ୍ୱ ଅଛି । ତେବେ ଏସବୁ ଶୂନ୍ୟତତ୍ତ୍ୱ ଓ ପରମ ଶିବ ଦ୍ୱାରା ଅଧିଷ୍ଠିତ—ସେଥିପାଇଁ ସିଦ୍ଧିପ୍ରଦ । ସେଇଥିପାଇଁ ସ୍ୱଚ୍ଛନ୍ଦ ଶାସ୍ତ୍ରର ପରିଭାଷାରେ ଛଅଟି ଶୂନ୍ୟ ତ୍ୟାଗ କରି ସପ୍ତମରେ ପ୍ରବେଶ ଆବଶ୍ୟକ । ବସ୍ତୁତଃ ଏହାହିଁ ପରମ ପଦ । ଛଅଟି ଶୂନ୍ୟହିଁ ଅବସ୍ଥା—ପଥର ଅନ୍ତର୍ଗତ । ସପ୍ତମଟି ହେଲା ଯୋଗୀଙ୍କର ମହାଲକ୍ଷ୍ୟ । ତାହା—

ଅଶୂନ୍ୟଂ ଶୂନ୍ୟମିତ୍ୟୁକ୍ତଂ ଶୂନ୍ୟଂ ଚାଭାବ ଉଚ୍ୟତେ,
ଅଭାବଃ ସ ସମୁଦ୍ଦିଷ୍ଟଃ ଯତ୍ର ଭାବାଃ ପରଂ ଗତାଃ ।

ଅତଏବ ଏହି ସପ୍ତମ ଶୂନ୍ୟହିଁ ଅଖଣ୍ଡ ମହାସତ୍ତା ।

ଶକ୍ତିରେ ଆନନ୍ଦମୟ ସ୍ପର୍ଶ ର ଅନୁଭବ ହୁଏ—ତାହା ପରେ ଊର୍ଦ୍ଧ୍ୱକୁ ପ୍ରବେଶ ହୁଏ । ବ୍ୟାପିନୀରେ-- ତ୍ୱକ୍ ଓ କେଶ ସ୍ଥାନରେ—ବ୍ୟାପ୍ତି ଲାଭ ହୁଏ । ତାହା ପରେ ଶିଖାକେଶ-ସ୍ଥାନରେ ବା ସମନା ପଦରେ କେବଳ ମନନ ମାତ୍ର ଥାଏ, କିନ୍ତୁ ମନନର କୌଣସି ବିଷୟ ନ ଥାଏ । ପରେ ଆଉ ମନନ ମଧ୍ୟ ରହେ ନାହିଁ—ସେତେବେଳେ ହଂସ ଶୁଦ୍ଧ ଆତ୍ମାର ରୂପ ଧାରଣ କରେ । ଏହି ସ୍ଥିତିରେ ଯୁଗପତ୍ ଅଶେଷ ବିଶ୍ୱର ଅଭେଦରେ ପ୍ରକାଶ ହୁଏ । ଏହା ଉନ୍ମନା ଶକ୍ତିର ଆଶ୍ରୟରେ ଘଟିଥାଏ । ସେତେବେଳେ ଶିବତ୍ୱ ଲାଭ ହୁଏ—ଚିଦାନନ୍ଦଘନ ପରମେଶ୍ୱର ସ୍ୱରୂପରେ ସମାବେଶ ହୁଏ ଏବଂ ହଂସ ସଙ୍କୋଚହୀନ ଭାବରେ ପ୍ରସୃତ ହୁଏ ଅର୍ଥାତ୍ ବ୍ୟାପକ ହୋଇ ୩୬ ତତ୍ତ୍ୱ ରୂପରେ ଏବଂ ତଦୁତ୍ତୀର୍ଣ୍ଣ ରୂପେ ସ୍ଫୁରିତ ହୁଏ ।

ସ୍ଥୂଳ ବର୍ଣ୍ଣର ଉଚ୍ଚାରଣ କାଳକୁ ମାତ୍ରା କୁହାଯାଏ । ବିନ୍ଦୁଠାରୁ ସମନା ପର୍ଯ୍ୟନ୍ତ ସୂକ୍ଷ୍ମ ବର୍ଣ୍ଣର ଉଚ୍ଚାରଣ କାଳ ଅର୍ଦ୍ଧମାତ୍ରା ଠାରୁ ପୂର୍ବୋକ୍ତ ବିବରଣ ଅନୁସାରେ ଏକ ମାତ୍ରାର $\frac{1}{256}$ ଭାଗ । କାଳାଂଶ କ୍ରମଶଃ ଅଧିକତର ସୂକ୍ଷ୍ମ । ପ୍ରାଚୀନ ଆଚାର୍ଯ୍ୟଗଣ ସୂକ୍ଷ୍ମତମ କାଳର ଅବୟବର ନାମ ଦେଇଛନ୍ତି 'ଲବ' । ପଦ୍ମର ଗୋଟିଏ ଦଳ ଭେଦ କରିବାକୁ ଯେତିକି ସମୟ ଲାଗେ ତାହାର ନାମ 'ଲବ' । ସେମାନଙ୍କ ମତରେ ଏହା ଅପେକ୍ଷା ସୂକ୍ଷ୍ମତମ କାଳ ଆଉ ନାହିଁ । ବସ୍ତୁତଃ ଏହା ଠିକ୍ ନୁହେଁ ।

ମନ୍ତ୍ର ବା ନାମ ଚୈତନ୍ୟସମ୍ପନ୍ନ ହେଲେ କ୍ରମଶଃ ସୂକ୍ଷ୍ମତା ଲାଭ କରେ । ସେତେବେଳେ କାଳର ମାତ୍ରା ଅର୍ଦ୍ଧ ମାତ୍ରାରୁ କ୍ରମଶଃ ଅଧିକ କମ୍ ହୋଇଆସେ । ଫଟୋଗ୍ରାଫ୍‌ର Instantaneous exposure ସହିତ ଏହି କାଳଗତ କ୍ରମିକ ସୂକ୍ଷ୍ମତା ତୁଳନୀୟ ।

ସୂକ୍ଷ୍ମତା କ୍ରମଶଃ ଅର୍ଦ୍ଧମାତ୍ରାର ଧାରା ଅନୁସାରେ ବଢ଼ୁଥାଏ । ମାତ୍ରା ଯେତେ କମ୍ ହେଲେ ମଧ୍ୟ ପୂରା ଶୂନ୍ୟ ହୁଏ ନାହିଁ, ହେବା ସମ୍ଭବ ନୁହେଁ ମଧ୍ୟ । ତେବେ ଶୂନ୍ୟ ନ ହେଲେ ମଧ୍ୟ ବ୍ୟବହାର କ୍ଷେତ୍ରରେ ଏହା ଶୂନ୍ୟପର । ମୁକ୍ତି ମାତ୍ରାକୁ ମନର ସୂକ୍ଷ୍ମତମ ମାତ୍ରାର ଉଚ୍ଚାରଣ ମନେ କରାଯାଏ । ମାତ୍ରା ଆହୁରି ସୂକ୍ଷ୍ମ ହେଲେ ମନର କ୍ରିୟା ରଖାଯାଇ ପାରେ ନାହିଁ ବୋଲି ତାହାକୁ ଉନ୍ମନା କୁହାଯାଏ । ସେତେବେଳେ ଆଉ ମନକୁ ଧରାଯାଇପାରେ ନାହିଁ । ମନହିଁ ଚନ୍ଦ୍ର—ବିନ୍ଦୁଟି ପୂର୍ଣ୍ଣଚନ୍ଦ୍ର, ଅବଶ୍ୟ ବିଶୁଦ୍ଧ ଓ ଚିନ୍ମୟ । ସେଥିପାଇଁ ବିନ୍ଦୁଠାରୁ ଚିଦନୁଭବ ଆରମ୍ଭ ହୁଏ । ସ୍ୱଚ୍ଛ ଦର୍ପଣରେ ଯେପରି ଜ୍ୟୋତି ପ୍ରତିଫଳିତ ହୁଏ, ସେହିପରି ବିନ୍ଦୁରେ ଚିଦାଲୋକ ପ୍ରତିଫଳିତ ହୁଏ । ମାତ୍ରା ବିଭାଗ ଫଳରେ ମନର ଉପାଦାନ କ୍ରମଶଃ କ୍ଷୀଣ ହେଉଥାଏ । ମନ ଥିଲେ କାଳର ଭୟ ଥାଏ । କାରଣ ମନ ଚନ୍ଦ୍ର ଓ କାଳ ରାହୁ । ଏ କାଳ ଅବଶ୍ୟ ସୂକ୍ଷ୍ମକାଳ ଯାହା ଜରା ଓ କ୍ଷୟର ହେତୁ । ମନ ଯେତେ କ୍ଷୀଣ ହୁଏ କାଳ ସ୍ପର୍ଶ ସେତେ କମ୍ ହୁଏ । କିନ୍ତୁ କମ୍ ହେଲେ ମଧ୍ୟ ଥାଏ । ପକ୍ଷାନ୍ତରରେ ପ୍ରତିଫଳିତ ଚିତ୍ତର ଉଜ୍ଜ୍ୱଳତା ସେତେ ଅଧିକ ହୁଏ । ଏହି କ୍ଷୀୟମାଣ ମନ ସମନା ପର୍ଯ୍ୟନ୍ତ ଥାଏ । ବିନ୍ଦୁ ପୂର୍ଣ୍ଣିମା—ତା ପରଠାରୁ କୃଷ୍ଣପକ୍ଷ ଚାଲେ । ସମନାକୁ କୃଷ୍ଣା ଚତୁର୍ଦ୍ଦଶୀ କୁହାଯାଏ । ତାହା ପରେ ଉନ୍ମନା—ଏହାହିଁ ଅମାବାସ୍ୟା ।

କିନ୍ତୁ ସମନାଠାରୁ ଉନ୍ମନା କିପରି ଭାବରେ ହୁଏ ତାହା ବୁଝାଇବା କଷ୍ଟକର । ଯୋଗୀ ତାହା ନିଜେ ଅନୁଭବ କରନ୍ତି, ତାହା ସ୍ୱ-ସମ୍ବେଦ୍ୟ । ଗୋଟିଏ ହିସାବରେ ଉନ୍ମନାରେ କଳା ନ ଥାଏ—କିନ୍ତୁ ନ ଥାଇ ମଧ୍ୟ ଥାଏ । ଯେପରି ଅସଂପ୍ରଜ୍ଞାତ ସମାଧିରେ ଚିତ୍ତ ବୃତ୍ତିରୂପେ ନ ଥାଏ, କିନ୍ତୁ ତଥାପି ଥାଏ, ଅର୍ଥାତ୍ ସଂସ୍କାର

( ୨। )

ରୂପେ ଥାଏ । ସମନାରେ ସୂକ୍ଷ୍ମ ମନ ଅଛି । ଉନ୍ମନାରେ ସୂକ୍ଷ୍ମ ମନ ନାହିଁ, ସଂସ୍କାର ଅଛି ।

ଆଉରି ଗୋଟିଏ ରହସ୍ୟ ଅଛି । ଚନ୍ଦ୍ରକୁ ପୂର୍ଣ୍ଣିମା ବୋଲି କହିଛି, କିନ୍ତୁ ତାହା ଠିକ୍ ପୂର୍ଣ୍ଣିମା ନୁହେଁ । ପ୍ରକୃତ ପୂର୍ଣ୍ଣିମା ଷୋଡ଼ଶୀ—ପଞ୍ଚଦଶୀ ନୁହେଁ । ଠିକ୍ ପୂର୍ଣ୍ଣିମା ହେଲେ ପୂର୍ଣ୍ଣତା ଅକ୍ଷୁଣ୍ଣ ରହନ୍ତା—କୃଷ୍ଣପକ୍ଷ ହୁଅନ୍ତା ନାହିଁ । କୃଷ୍ଣପକ୍ଷହିଁ କାଳଗ୍ରାସ । ଚନ୍ଦ୍ରରେ ୧୫ କଳା ଅଛି, ଗୋଟିଏ କଳା ନାହିଁ । ଅର୍ଥାତ୍ ଅମୃତ କଳା ବା ଷୋଡ଼ଶୀର ଅଭାବ ଅଛି । ସେହିପରି ଉନ୍ମନାରେ ୧୫ କଳାର ଅବସାନ, କିନ୍ତୁ ଗୁପ୍ତ କଳାଟି ଅଛି—ସେଥିରେ ଷୋଡ଼ଶୀ ଆଭାସ । ପଞ୍ଚଦଶ କଳା ସେଠାରେ ଅସ୍ତମିତ । ପ୍ରକୃତରେ ଯଦି ଷୋଡ଼ଶୀ ଥାନ୍ତା ତେବେ ଅମାବାସ୍ୟା ପରେ ଶୁକ୍ଳପକ୍ଷ ହୁଅନ୍ତା ନାହିଁ । କାଳଚକ୍ରର ଆବର୍ତ୍ତନ ହୁଏ ଷୋଡ଼ଶୀର ବ୍ୟକ୍ତତାର ଅଭାବରେ । ଷୋଡ଼ଶକଳ ପୁରୁଷରେ ଅମୃତକଳା ଗୋଟିଏ—ତାହାହିଁ ପ୍ରକୃତ ଅମାକଳା । ବାକି ୧୫ଟି କଳା କାଳସୃଷ୍ଟ ଓ କାଳରାଜ୍ୟକୁ ସଂକ୍ରମଣ କରେ ।

( ୫ )

ନାମସାଧନାର ଦୁଇଟି ଦିଗ ଅଛି—ଗୋଟିକରେ ନାମ-ସାଧନା ନାଦରେ ପର୍ଯ୍ୟବସିତ ହୁଏ, ଅନ୍ୟଟିରେ ଏହା ରୂପାଭିବ୍ୟକ୍ତି ମଧ୍ୟ ଦେଇ ଭାବସାଧନା ପଥରେ ରସରେ ପର୍ଯ୍ୟବସିତ ହୁଏ । ରସର ପଥ ନିତ୍ୟ ଲୀଳାର ପଥ । ପଥ ଦୁଇଟିର ପରସ୍ପର ସମ୍ବନ୍ଧ ବା ଯୋଗ ଅଛି, ପୁଣି ପୃଥକ୍ ଭାବରେ ପ୍ରସ୍ଥାନ ମଧ୍ୟ ସମ୍ଭବପର । ବର୍ତ୍ତମାନ ଆଲୋଚନାରେ ମୁଁ ନାଦ ଦିଗଟି ଧରି ସଂକ୍ଷେପରେ ଦୁଇ ଗୋଟି କଥା କହିଲି ।

ନାମରୁ ଭାବସାଧନା ପଥରେ ପ୍ରଥମେ ସଦ୍‌ଗୁରୁପ୍ରାପ୍ତି ଓ ମନ୍ତ୍ରସାଧନାର ଅଧିକାର ଜନ୍ମେ । ମନ୍ତ୍ରସାଧନା ଫଳରେ ଦୈହିକ ଉପାଦାନ ବିଶୁଦ୍ଧ ହୁଏ ଓ ମନ୍ତ୍ରସିଦ୍ଧି ସଙ୍ଗେ ସଙ୍ଗେ ଭାବ ଦେହର ବିକାଶ ହୁଏ । ସେତେବେଳେ ସ୍ୱଭାବର ପଥ ଉନ୍ମୁକ୍ତ ହୁଏ ଓ ବିଧି-ନିଷେଧର ଗଣ୍ଡି ପାର ହୋଇଯିବା ଦ୍ୱାରା ରାଗମାର୍ଗରେ ଭଜନର ଅଧିକାର ଜନ୍ମେ । ଏହାହିଁ ପ୍ରକୃତ ସାଧନା । ସାଧନାର ଆରମ୍ଭରେ ଆଶ୍ରୟ-ତତ୍ତ୍ୱ ବ୍ୟକ୍ତ ହୁଏ, ସେଥିପାଇଁ ରାଗ ସାଧନା ସମ୍ଭବପର ହୁଏ—ଏଇଟି ଭାବରାଜ୍ୟର କଥା । ଭାବ-କୁସୁମ ପ୍ରସ୍ଫୁଟିତ ହେଲେ ପ୍ରେମର ବିକାଶ ହୁଏ । ସେତେବେଳେ ବିଷୟ-ତତ୍ତ୍ୱର ଅଧିକାର ଆସେ । ଭାବସାଧନା ଏକପ୍ରକାର ବିରହର କ୍ରନ୍ଦନ । କିନ୍ତୁ ପ୍ରେମସାଧନା ମିଳନର ଉଲ୍ଲାସ । ପରେ ଆଶ୍ରୟ ଓ ବିଷୟ ପରସ୍ପର ମିଳିତ ହୋଇ ଏକ ହୋଇଯାଏ । ଏହି ଏକ-ସତ୍ତ୍ୱାହିଁ ରସ—ଏହି ସମରସତା ସିଦ୍ଧାବସ୍ଥା ବା ରସାଦ୍ୱୈତ । ଏହି ମହାସ୍ଥିତିରେ ଅନନ୍ତ ଲୀଳାର ସ୍ଫୁରଣ ସମ୍ଭବପର ହୁଏ । ସେତେ-ବେଳେ ଏକ ସତ୍ତା ଅନନ୍ତରୂପରେ ଫୁଟି ଉଠେ ଓ ନିଜର ଆନନ୍ଦ ଅନନ୍ତକାଳ ଅନନ୍ତଭାବରେ ନିଜ ଭିତରେ ଆସ୍ୱାଦିତ ହେଉଥାଏ, କିନ୍ତୁ ସ୍ଥିତି ସେଇ ଗୋଟିକରେ ଥାଏ ।

କେବଳ ନାମର ମାହାତ୍ମ୍ୟରେ ଏତେ ଦୂର ପର୍ଯ୍ୟନ୍ତ ହୋଇପାରେ । ମୋଟ କଥା, ନାମର ଶକ୍ତି ଅନନ୍ତ ଓ ଅଚିନ୍ତ୍ୟ ।

ଗ୍ରନ୍ଥକାର ନାଦସାଧନାର ସିଦ୍ଧ ମହାଜନ । ସେ ବହୁ ଶାସ୍ତ୍ରର ପ୍ରମାଣ ପ୍ରଦର୍ଶନ ପୂର୍ବକ ନାଦସାଧନାର ମହତ୍ତ୍ୱ ପ୍ରକାଶ କରିଅଛନ୍ତି । ବିଭିନ୍ନ ସନ୍ତଗଣଙ୍କ ବାଣୀରେ ଏହି ମହତ୍ତ୍ୱ ସମର୍ଥିତ ହୋଇଅଛି । ତାଙ୍କର ବ୍ୟକ୍ତିଗତ ଅନୁଭବ ଏହା ପଛରେ ଥିବାରୁ ତାଙ୍କର ପ୍ରତ୍ୟେକ କଥାକୁ ସଜୀବ ଓ ପ୍ରାଣବାନ୍ କରିଅଛି । ସେ

କରୁଣାପୂର୍ଣ୍ଣ ହୃଦୟରେ ଉପାୟହୀନ ଦୁଃଖୀ ଜୀବଙ୍କୁ ଆହ୍ୱାନ କରୁଅଛନ୍ତି ଓ ପୂର୍ଣ୍ଣ ଆଶ୍ୱାସ ଦାନ କରି ନାମର ଆଶ୍ରୟ ଗ୍ରହଣ କରିବାକୁ କହୁଅଛନ୍ତି । ନାମ ଚିନ୍ମୟ, ରସ ବିଗ୍ରହ ଓ ଚିନ୍ତାମଣି-ସ୍ୱରୂପ—ଏହା ଜୀବର ସମସ୍ତ ଦୁଃଖ ଦୂର କରିବାକୁ ସମର୍ଥ । ଉଦ୍ଧାରର ଏପରି ସହଜ ଉପାୟ କଳିଯୁଗ ବୋଲି ନିଃଶ୍ରେୟ ଜୀବଙ୍କର ମହା କଲ୍ୟାଣ ସାଧନ ପାଇଁ ଉଦ୍‌ଭାବିତ ହୋଇଅଛି । ଆଶା କରେ ଶ୍ରଦ୍ଧାଳୁ ଓ ଭକ୍ତିସମ୍ପନ୍ନ ବ୍ୟକ୍ତିଗଣ ଅଗଣିତ ସଂଖ୍ୟାରେ ଏହି ଉପାୟ ଗ୍ରହଣ କରିବେ ଓ ଏହି ପଥରେ ନିଜ ଜୀବନର ସାର୍ଥକତା ସମ୍ପାଦନ କରି ତାପକ୍ଳିଷ୍ଟ ଅନ୍ୟାନ୍ୟ ଶତ ଶତ ଜୀବଙ୍କର ପରମାନନ୍ଦ ଲାଭରେ ପଥପ୍ରଦର୍ଶକ ହେବେ । ଶ୍ରୀ ଭଗବାନ୍ ଜଗତର କଲ୍ୟାଣ ସାଧନ କରନ୍ତୁ । ଇତି ଶମ୍—

୨ (ଏ) ସିଗରା,
ବାରାଣସୀ

ଶ୍ରୀ ଗୋପୀନାଥ କବିରାଜ

୰ ଶ୍ରୀ ଶ୍ରୀ ଗୁରବେ ନମଃ

# ଶ୍ରୀଶ୍ରୀନାଦଲୀଳାମୃତ

# ଓଁ

## ଶ୍ରୀ ଶ୍ରୀନାଦ ସଚ୍ଚିଦାନନ୍ଦଘନ ନାଦଲୀଳାମୃତ

## ପ୍ରଥମ ହିଲ୍ଲୋଳ

ଓଁ ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ
ତଂ ଦେବତାନାଂ ପରମଞ୍ଚ ଦୈବତମ୍ ।
ପତିଂ ପତୀନାଂ ପରମଂ ପରସ୍ତାଦ୍
ବିଦାମ ଦେବଂ ଭୁବନେଶମୀଡ୍ୟମ୍ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ୱେନ ସଦୋଦିତାୟ
ପୂର୍ଣ୍ଣାୟ ଚିଦ୍‌ବିଳାସ-ବିଳାସାୟ ଓଙ୍କାରାୟ ନମଃ ॥
ଅର୍ଦ୍ଧମାତ୍ରାମମାତ୍ରାଞ୍ଚ ଦେବତାଂ ବିଜନୋଜ୍ଜ୍ୱଳାମ୍ ।
ଓଙ୍କାରରୂପିଣୀଂ ଦେବୀଂ ନିତ୍ୟଂ ବନ୍ଦେ ସୁନିର୍ମଳାମ୍ ॥
ପ୍ରଣବଃ ପରମଂ ବ୍ରହ୍ମ ପ୍ରଣବଃ ପରମଃ ଶିବଃ ।
ପ୍ରଣବଃ ପରମୋ ବିଷ୍ଣୁଃ ପ୍ରଣବଃ ସର୍ବଦେବତା ॥
ତସ୍ମୈ ନମୋ ଭଗବତେ ନିର୍ଗୁଣାୟ ଗୁଣାତ୍ମନେ ।
କୈବଲ୍ୟାର୍ଦ୍ଧିଙ୍ଖପ୍ୟାୟ ଗୁରବେ ବ୍ରହ୍ମମୂର୍ତ୍ତୟେ ॥
ଶତସିତବିକଶିତସରସିଜସଦନେ,
ମୁରହର-ହରସୁର-ନରନୁତ-ଚରଣେ ।
ସକଳ-କଳୁଷ-କୁଳ-ବିକଳନ-କରଣେ,
ବିହର ବିହର ହୃଦି ବିହସିତବଦନେ ॥ ଓଁ

ଗୁରୁ—ବତ୍ସ, ଆଜ ତୁମକୁ ସଚ୍ଚିଦାନନ୍ଦଘନଜ୍ୟୋତିନାଦ ବିଷୟରେ କହିବି । ଏହି ନାଦତତ୍ତ୍ୱ-ସାକ୍ଷାତ୍କାର ହେଲେ ମନୁଷ୍ୟ ଅମୃତତ୍ତ୍ୱ ଲାଭ କରେ । ଏକମାତ୍ର ନାଦତତ୍ତ୍ୱ ଜାଣିଗଲେ ସବୁ କିଛି ଜାଣି ହୁଏ ।

ଶିଷ୍ୟ—ଦେବ ! ନାଦ କିଏ ଏବଂ କିପରି ଭାବରେ ମୁଁ ତାଙ୍କୁ ଜାଣିପାରିବି କୁହନ୍ତୁ ।

ଗୁରୁ—ସଚ୍ଚିଦାନନ୍ଦଘନଜ୍ୟୋତି ଓଁକାରର ତୃତୀୟ ମାତ୍ରା ମକାର, ମକାର ପାଦଟି ନାଦମୟ । ସମାହିତ ଭଗବାନ ପ୍ରଜାପତିଙ୍କର ହୃଦୟ-ଆକାଶରେ ଏହି ନାଦ ଆବିର୍ଭୂତ ହୋଇଥିଲା ଏବଂ ତାଙ୍କ-ଠାରୁ ହିଁ ନାଦ ଓଁକାର ପରମାତ୍ମାଙ୍କର ଆବିର୍ଭାବ ହୋଇଥିଲା ।

ଶିଷ୍ୟ—ସେହାହିଁ କଣ ତାଙ୍କର ପ୍ରଥମ ଆବିର୍ଭାବ ?

ଗୁରୁ—ନା ବତ୍ସ !

ସୋଽକାମୟତ ବହୁ ସ୍ୟାଂ ପ୍ରଜାୟେୟେତି ।

(ତୈତ୍ତିରୀୟ ଶ୍ରୁତି)

ତାହାପରେ ପ୍ରଣବ ପରମାତ୍ମା କାମନା କଲେ, ମୁଁ ବହୁ ହେବି ଉତ୍ପନ୍ନ ହେବି ।

ସେହି ଶାନ୍ତ ସ୍ତବ୍ଧ ମହାସମୁଦ୍ରରେ ସେହି ମହାକାଶରେ ପ୍ରଥମ ସ୍ପନ୍ଦନ ଏହି ଶବ୍ଦବ୍ରହ୍ମ ଓଁକାର । ମହାକାଶରେ ପ୍ରଣବ-ସ୍ପନ୍ଦନ ଆକାଶ ଓ ବାୟୁ, ତା ପରେ ଯେତେବେଳେ ବାୟୁର ପ୍ରଧାନ କାରଣ ଅଂଶ ଅର୍ଥାତ୍ ସୂକ୍ଷ୍ମ ଅଂଶ ଘନୀଭୂତ ହେବାକୁ ଇଚ୍ଛା କଲା, ସେତେବେଳେ ତାହାର କାର୍ଯ୍ୟଅଂଶ ମଧ୍ୟ ଘନୀଭୂତ ହେଲା । ପ୍ରଥମ ସ୍ଥୂଳ ଅଭିବ୍ୟକ୍ତ ତେଜ, ତାହା ଆଲୋକ ଆଦି ଆକାରରେ ବିକୀର୍ଣ୍ଣ ହେବାରୁ ତାହାର କାର୍ଯ୍ୟାଂଶ ଘନୀଭୂତ ହୋଇ ଜଳରୂପରେ ପରିଣତ ହେଲା । ଜଳର ସୂକ୍ଷ୍ମାଂଶ ଘନୀଭୂତ ହେବାକୁ ଇଚ୍ଛା

କରିବାରୁ ତାହାର କାର୍ଯ୍ୟାଂଶ ମଧ୍ୟ ଘନୀଭୂତ ହୋଇ ପୃଥିବୀ-ରୂପରେ ପରିଣତ ହେଲା ।

ଶିଷ୍ୟ—ଠିକ୍ ବୁଝି ପାରିଲି ନାହିଁ ।

ଗୁରୁ—ବ୍ରହ୍ମର ଦୁଇଟି ରୂପ, ଗୋଟିଏ ମୂର୍ତ୍ତି ଓ ଗୋଟିଏ ଅମୂର୍ତ୍ତି । ମୂର୍ତ୍ତି ରୂପଟି ଅନିତ୍ୟ । ଅମୂର୍ତ୍ତି ରୂପଟି ନିତ୍ୟ । ଅମୂର୍ତ୍ତି ରୂପଟି ମୂର୍ତ୍ତି ରୂପର କାରଣ । ଏହି ଜଗତ ଅଗ୍ନିଷୋମାତ୍ମକ । ଏହାର ନାମାନ୍ତର ରୟି, ପ୍ରାଣ, ଭୋକ୍ତା, ଭୋଗ୍ୟ, ଅନ୍ନ, ଅନ୍ନାଦ, ସୂକ୍ଷ୍ମ, ସ୍ଥୂଳ, ପ୍ରକୃତି, ପୁରୁଷ ଇତ୍ୟାଦି । ମହାକାଶରେ ସଙ୍କଳ୍ପ ହେଲା ବହୁ ହେବ । ସେତେବେଳେ ତାଙ୍କର ଅଭିନ୍ନା ଚେତ୍ୟଶକ୍ତି ମଣିର ଝଲକ ପରି ସ୍ପନ୍ଦିତା ହେଲେ । ଶବ୍ଦ ନ ହେଲେ ସ୍ପନ୍ଦନ ହୋଇପାରେ ନାହିଁ । ସେହି ଆଦିଶବ୍ଦହିଁ ଓଙ୍କାର, ଅପରଟି ପ୍ରଣବ । ଯେଉଁ ସ୍ଥାନରେ ଶବ୍ଦ ସେହି ସ୍ଥାନରେ ସ୍ପନ୍ଦନ ଅବଶ୍ୟ ହେବ । ସୃଷ୍ଟିର ପ୍ରାରମ୍ଭରେ ଏହି ପ୍ରଥମ ସ୍ପନ୍ଦନ ଅପର ପ୍ରଣବ ହିଁ ପ୍ରାଣ ନାମରେ ଉପନିଷଦ ପ୍ରଭୃତିରେ କଥିତ ହୋଇଛନ୍ତି । ସେହି ଆଦି ମହାପ୍ରାଣ ଶକ୍ତି ଅମୂର୍ତ୍ତି ଅବ୍ୟକ୍ତ ଅବସ୍ଥାରୁ ବ୍ୟକ୍ତ ମୂର୍ତ୍ତି ଅବସ୍ଥାକୁ ଆସିବାକୁ ଲାଗିଲେ ଏବଂ ତା ପରେ ତେଜ, ଜଳ, ପୃଥିବୀ ରୂପରେ ପରିଣତ ହେଲେ । ଯେଉଁ ମହାପ୍ରାଣ-ସ୍ପନ୍ଦନ ସୂକ୍ଷ୍ମ ଅବସ୍ଥାରେ ବ୍ୟାପକ ଭାବରେ ଆକାଶରେ ଥିଲେ ତାହା ଯେତେ ସ୍ଥୂଳ ଅବସ୍ଥାକୁ ଆସିଲେ ସେତେ ତେଜ ଆଦି ଆକାରରେ ବିକାଶ ହେବାକୁ ଲାଗିଲେ । ଏହାର ଜଡ଼ାଂଶ ଅର୍ଥାତ୍ କାର୍ଯ୍ୟାଂଶ ଘନୀଭୂତ ହୋଇ ଜଳ ରୂପେ ପରିଣତ ହେଲା । ଜଳର ସୂକ୍ଷ୍ମାଂଶ ଘନୀଭୂତ ହେବାରୁ ତାହାର କାର୍ଯ୍ୟାଂଶ ମଧ୍ୟ ଘନୀଭୂତ ହୋଇ ପୃଥିବୀ ରୂପେ ପରିଣତ ହେଲା । ପ୍ରଥମ ମହାକାଶରେ ପ୍ରଣବ ସ୍ପନ୍ଦନ ହିଁ କାର୍ଯ୍ୟ ଓ କାରଣ ରୂପରେ ପଞ୍ଚଭୂତ ଆକାରରେ ପରିଣତ ହୋଇଅଛି । ସମସ୍ତ ସ୍ଥୂଳ ପଦାର୍ଥ

ପଞ୍ଚଭୂତର ବିକାର ଅଟେ । ପଞ୍ଚଭୂତର ସମିଶ୍ରଣ ତାରତମ୍ୟ ଅନୁସାରେ ପ୍ରତ୍ୟେକ ପଦାର୍ଥ ଉତ୍ପନ୍ନ ହୋଇଅଛି । ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, ବିଦ୍ୟୁତ୍ ଆଦି ପଦାର୍ଥକୁ ଶ୍ରୁତି ଆଧିଦୈବିକ ଓ ମନୁଷ୍ୟ, ମେଷ, ମହିଷ, କୀଟ, ପତଙ୍ଗ, ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍ଭିଜ୍ଜ, ସ୍ୱର୍ଣ୍ଣ, ରୌପ୍ୟ, ସୀସକ, ପିତ୍ତଳ, କାଂସ୍ୟ, ମଣି, ମୁକ୍ତା, ହୀରକ, ନଦ, ନଦୀ, ସାଗର, ଭୂଧର, ଏକ କଥାରେ କହିବାକୁ ଗଲେ ଯେତେ କିଛି ଭୌତିକ ପଦାର୍ଥକୁ ଆଧିଭୌତିକ ଏବଂ ଜୀବଦେହସ୍ଥିତ ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା, ଘ୍ରାଣ, ବାକ୍, ପାଣି, ପାଦ, ପାୟୁ, ଉପସ୍ଥ, ମନ, ବୁଦ୍ଧି, ଚିତ୍ତ, ଅହଙ୍କାର ଆଦି ବାହ୍ୟ ଓ ଅନ୍ତର ଇନ୍ଦ୍ରିୟଗଣଙ୍କୁ ଆଧ୍ୟାତ୍ମିକ ଶବ୍ଦରେ ନିର୍ଦ୍ଦେଶ କରିଛନ୍ତି । ପ୍ରତ୍ୟେକ ଭୌତିକ ପଦାର୍ଥର ଅଭ୍ୟନ୍ତରରେ ଆକାଶ, ନାଦ-ସ୍ପନ୍ଦନ, ବାୟୁ ଓ ଜ୍ୟୋତି ଅଛି । ଭୌତିକ ଯାହା କିଛି ଦେଖୁଛ ନାଦ ରୂପରେ ପ୍ରଣବ-ସ୍ପନ୍ଦନ ହିଁ ସମସ୍ତଙ୍କୁ ଧରି ରଖିଛନ୍ତି । ଏକ ପ୍ରଣବନାଦ ହିଁ ସ୍ଥୂଳ ପଞ୍ଚଭୂତ । ଓଙ୍କାରନାଦର ସ୍ଥୂଳ ଅଂଶ ହିଁ ସ୍ଥୂଳ ଭୂତରେ ପରିଣତ ହୋଇଅଛି ।

ଶିଷ୍ୟ—ସବୁ କଥା ଧାରଣା କରିବା ବଡ଼ କଷ୍ଟକର ।

ଗୁରୁ—ବତ୍ସ, ସମାଧି ବିନା ତତ୍ତ୍ୱ ନିଶ୍ଚୟ ହୁଏ ନାହିଁ । ପ୍ରଥମେ ଗୁରୁଙ୍କ ମୁଖରୁ ତତ୍ତ୍ୱ କଥା ଶୁଣି ତା ପରେ ସାଧନା, ବ୍ରହ୍ମଚର୍ଯ୍ୟ, ତପସ୍ୟା ଅବଲମ୍ବନ ପୂର୍ବକ ମନନ ଓ ନିଦିଧ୍ୟାସନ କରୁ କରୁ ତେବେ ଯାଇ ତତ୍ତ୍ୱ ସାକ୍ଷାତ୍କାର ହୁଏ । ଅପରୋକ୍ଷ ଜ୍ଞାନ ଉଦୟ ହୋଇଥାଏ । ଥରକରେ ସବୁ ବୁଝି ହୁଏ ନାହିଁ, ବାରମ୍ବାର ଶୁଣିବା ଦରକାର । ପୁଣି ଶୁଣ, ପ୍ରତ୍ୟେକ ଜୀବର ସୁଷୁମ୍ନା ମଧ୍ୟରେ ଆକାଶ, ନାଦ ଓ ତେଜୋମୟୀ ପ୍ରଣବରୂପିଣୀ କୁଣ୍ଡଳିନୀ ଶକ୍ତି ସୂକ୍ଷ୍ମ ଭାବରେ ଅବସ୍ଥାନ କରୁଛନ୍ତି, ଏବଂ ସେହି ପ୍ରଣବ ସ୍ପନ୍ଦନରୁ

ପ୍ରାଣବାୟୁ ସ୍ଥୂଳ ହୋଇ ସ୍ଥୂଳ ଦେହରେ ଅବସ୍ଥାନ ପୂର୍ବକ ସ୍ଥୂଳ ଦେହକୁ ଧରି ରଖିଛନ୍ତି । ହୃଦୟରେ ପ୍ରାଣ, ଗୁହ୍ୟରେ ଅପାନ, ନାଭିରେ ସମାନ, କଣ୍ଠରେ ଉଦାନ, ସର୍ବାଙ୍ଗରେ ବ୍ୟାନ । ଏହି ପ୍ରାଣ ହିଁ ୭୨୭୨୧୦୨୦୧ ଶିରାପ୍ରଶିରାରେ ରକ୍ତ ସଞ୍ଚାଳନ କରି ଦେହକୁ ଜୀବିତ ରଖିଛନ୍ତି । ଇନ୍ଦ୍ରିୟ ଗୋଲକରେ ଅବସ୍ଥାନ କରି ଦର୍ଶନ ଶ୍ରବଣ ଆଦି କରୁଛନ୍ତି । ଏହି ସ୍ପନ୍ଦନ ରୂପିଣୀ ମହାଶକ୍ତି ଅପର ପ୍ରଣବ ହିଁ ଆଧିଭୌତିକ ବିଷୟରୂପରେ ପରିଣତ ହୋଇ ସେହି ପ୍ରଣବ ନାଦ ସ୍ପନ୍ଦନ ଜାତ ଆଧ୍ୟାତ୍ମିକ ଇନ୍ଦ୍ରିୟଗଣଙ୍କର ଭୋଗ୍ୟ ହୋଇଛନ୍ତି । ସେହି ପ୍ରଣବନାଦସ୍ପନ୍ଦନ ହିଁ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବିଦ୍ୟୁତ୍ ପ୍ରଭୃତି ରୂପରେ ଜଗତର ପୋଷଣ ପାଳନ ଆଦି କରୁଛନ୍ତି । ଏକ କଥାରେ କହିଲେ, ଏହି ପ୍ରଣବନାଦ ହିଁ ଜଗଦ୍‌ରୂପେ ଖେଳୁଛନ୍ତି । ଏହି ଅପର ପ୍ରଣବନାଦ ସ୍ପନ୍ଦନ ପର ପ୍ରଣବର ମାତ୍ର ଗୋଟିଏ ପାଦରେ ହୋଇଅଛି । ପର ପ୍ରଣବ ଚତୁଷ୍ପାଦ—ଅବିଦ୍ୟା-ପାଦ, ବିଦ୍ୟାପାଦ, ଆନନ୍ଦ ପାଦ ଓ ତୁରୀୟ ପାଦ । ପର ପ୍ରଣବର ଏହି ପାଦଚତୁଷ୍ଟୟର ମଧ୍ୟରୁ କେବଳ ମାତ୍ର ଅବିଦ୍ୟା ପାଦରେ ଅନନ୍ତ କୋଟି ବ୍ରହ୍ମାଣ୍ଡ ଭାସୁଛି । ବୋଧହୁଏ ବୁଝିପାରିଲ ଯେ ଏକମାତ୍ର ନାଦବ୍ରହ୍ମହିଁ କାରଣ କାର୍ଯ୍ୟାତ୍ମକ ଏହି ଜଗଦାକାରରେ ପରିଣତ ହୋଇ ଲୀଳା କରୁଛନ୍ତି । ପାଣି ଯେପରି ଜମାଟ୍ ହୋଇଗଲେ ବରଫ, କୁଆପଥର ପ୍ରଭୃତି ହୁଏ, ସେହିପରି ମନୁଷ୍ୟ, ପଶୁ ପକ୍ଷୀ, ବୃକ୍ଷଲତା, ସାଗର ଭୂଧର, ସବୁ କିଛି ଓଙ୍କାର ନାଦ ଜମାଟ୍ ହୋଇ ମୂର୍ତ୍ତି ପରିଗ୍ରହ କରି ଓଙ୍କାରନାଦରେ ଓଙ୍କାର-ସ୍ପନ୍ଦନରେ ଖେଳି ବୁଲୁଛନ୍ତି । ଅନ୍ତର ଭିତରେ ସ୍ପନ୍ଦନ, ବାହାରେ ସେହି ସ୍ପନ୍ଦନ, ଅନନ୍ତ କୋଟି ବ୍ରହ୍ମାଣ୍ଡ ବ୍ୟାପି ଓଙ୍କାରନାଦର ସ୍ପନ୍ଦନ ଚାଲିଛି। ଯେତେବେଳଯାଏ ନାଦ ଅଛନ୍ତି ସେତେବେଳଯାଏ ସଂସାର

ଅଛି । ପ୍ରଣବ ସ୍ପନ୍ଦନ ସ୍ଥିର ହୋଇଗଲେ ଆଉ ସଂସାରର ଚନ୍ଦ୍ର-ବର୍ତ୍ତି ରହିବ ନାହିଁ । ପୁଣି କହୁଛି ଶୁଣ—ସେହି ଏକମାତ୍ର ନାଦ-ବ୍ରହ୍ମହିଁ ଜଗନ୍ମୂର୍ତ୍ତି ଧରି ଲୀଳା କରୁଛନ୍ତି । ନାଦରେ ସୃଷ୍ଟି, ନାଦରେ ସ୍ଥିତି, ନାଦରେ ଲୟ । ନାଦ ଛଡ଼ା ଆଉ କିଛି ନାହିଁ ।

ନାଦ ଏବ ମହଦ୍ ବ୍ରହ୍ମ ପରମାତ୍ମା ପରଃ ପୁମାନ୍ ।

ଶିଷ୍ୟ-ଶ୍ରୁତି କହୁଛନ୍ତି—

ତଦୈକ୍ଷତ ବହୁ ସ୍ୟାମ୍ ପ୍ରଜାୟେୟେତି—ଛାନ୍ଦୋଗ୍ୟୋପନିଷଦ୍
ସ ଈକ୍ଷତ ଲୋକାନ୍ ନୁ ସୃଜା ଇତି—ଐତରେୟ ଶ୍ରୁତି
ସୋଽକାମୟତ ବହୁସ୍ୟାଂ ପ୍ରଜାୟେୟେତି—ତୈତ୍ତିରୀୟୋପନିଷଦ୍
ସ ଦ୍ୱିତୀୟମ୍ ଐଚ୍ଛତ—ବୃହଦାରଣ୍ୟକ

ଗୁରୁ—ନିଶ୍ଚୟ—

ବାଗେବ ବିଶ୍ୱା ଭୁବନାନି ଜଜ୍ଞେ
ବାଚଇତ୍ ସର୍ବମମୃତଂ ଯଚ୍ଚ ମର୍ତ୍ତ୍ୟମିତି (ଋଗ୍‌ବର୍ଗେ)

ବାକ୍ ବା ଶବ୍ଦରୁ ସମସ୍ତ ଭୁବନ ଉତ୍ପନ୍ନ ହୋଇଅଛି । କି ଅମୃତ କି ମର୍ତ୍ତ୍ୟ ସବୁ କିଛି ବାକ୍ ବା ଶବ୍ଦସମ୍ଭୂତ ।

ଭଗବାନ ଶଙ୍କରାଚାର୍ଯ୍ୟ କହିଛନ୍ତି—

ନାପ୍ୟୟମପ୍ୟସ୍ତି ବିରୋଧଃ । କସ୍ମାତ୍ ? "ଅତଃ ପ୍ରଭବାତ୍ ।" ଅତଏବ ହି ବୈଦିକାଚ୍ଛବ୍ଦାଦ୍‌ଦେବାଦିକଂ ଜଗତ୍ ପ୍ରଭବତି ।

ବେଦାନ୍ତ ଦର୍ଶନ ଭାଷ୍ୟ ୧ । ୧୩ । ୨୮

ଦେବତାମାନଙ୍କର ଦେହ ଶବ୍ଦ ବିରୁଦ୍ଧ ନୁହେଁ ଅର୍ଥାତ୍ ସେଥିରେ ଶବ୍ଦପ୍ରାମାଣ୍ୟର ବ୍ୟାଘାତ ହୁଏ ନାହିଁ । କାରଣ ଦେବତା ପ୍ରଭୃତି ଯାହା କିଛି ସେ ସବୁ ବୈଦିକ ଶବ୍ଦପ୍ରଭବ ଅର୍ଥାତ୍ ବୈଦିକ ଶବ୍ଦରୁ ଉତ୍ପନ୍ନ ।

"ସ୍ଥିତେ ବାଚକାତ୍ମନା ନିତ୍ୟେ ଶବ୍ଦେ ନିତ୍ୟାର୍ଥ-ସମ୍ବନ୍ଧିନି ଶବ୍ଦ-
ବ୍ୟବହାରଯୋଗ୍ୟାର୍ଥବ୍ୟକ୍ତିନିଷ୍ପତ୍ତିରତସ୍ତତ୍ପ୍ରଭବ ଇତ୍ୟୁଚ୍ୟତେ ।"
ବେଦାନ୍ତ ଦର୍ଶନ ଭାଷ୍ୟ ।

ଶବ୍ଦଦ୍ୱାରା ହିଁ ଶବ୍ଦ ବ୍ୟବହାରର ଯୋଗ୍ୟ ପଦାର୍ଥର ବ୍ୟକ୍ତି-
ଭାବ ଜନ୍ମେ, ଅର୍ଥାତ୍ ଅଭିବ୍ୟକ୍ତ ହୁଏ । ଯାହା କହୁଁ ସୃଷ୍ଟବସ୍ତୁ
ସମସ୍ତ ହିଁ ଶବ୍ଦପୂର୍ବକ ।
ତସ୍ମାନ୍ନିତ୍ୟାଚ୍ଛବ୍ଦାତ୍ ସ୍ଫୋଟ ରୂପାତ୍ ଅଭିଧାୟକାତ୍ କ୍ରିୟାକାରକ-
ଫଳଲକ୍ଷଣଜଗଦଭିଧେୟଭୂତଂ ପ୍ରଭବତୀତି ।
ବେଦାନ୍ତ ଦର୍ଶନ ଭାଷ୍ୟ ।

ଏହିପରି ଯେଉଁ ସ୍ଫୋଟ ଶବ୍ଦ ତାହା ନିତ୍ୟ, ଅନାଦି,
ଅବିନାଶୀ । ଏହା ଆଜି ଅଛି, କାଲି ମଧ୍ୟ ରହିବ । ଏହି ଅନାଦି
ବାଚକ ଶବ୍ଦ ହିଁ (ସ୍ଫୋଟ ହିଁ) ବାଚ୍ୟ (ବାଙ୍ମୟ) ଜଗତର ପ୍ରଭବ ବା
ଉତ୍ପତ୍ତିର ସ୍ଥାନ । ଏହାଠାରୁ ବାଙ୍ମୟ ଜଗତ ବ୍ୟବହାର ଯୋଗ୍ୟ
ହୋଇଅଛି ।
ସ୍ମୃତିରପି—

ଅନାଦିନିଧନା ନିତ୍ୟା ବାଗୁତ୍ସୃଷ୍ଟା ସ୍ୱୟମ୍ଭୁବା ।
ଆଦୌ ବେଦମୟୀ ଦିବ୍ୟା ଯତଃ ସର୍ବାଃ ପ୍ରବୃତ୍ତୟଃ ।
ଇତି ବେଦାନ୍ତଦର୍ଶନଭାଷ୍ୟ ।

ସ୍ୱୟମ୍ଭୂ ପ୍ରଥମେ ଉତ୍ପତ୍ତି ବିନାଶ-ବର୍ଜିତ ବେଦମୟୀ ବାଣୀ
ଉଚ୍ଚାରଣ କରିଥିଲେ, ଯେଉଁ ସବୁ ବାଣୀରୁ ଏ ସମସ୍ତ ପ୍ରବୃତ୍ତି ସୃଷ୍ଟ
ହୋଇଅଛି ।

ଅତଏବ ଚ ନିତ୍ୟତ୍ୱମ୍ । ବେଦାନ୍ତଦର୍ଶନ ୧ । ୩ । ୨୯

ଅତଏବ ନିୟତାକୃତେର୍ଦ୍ଦେବାଦିଜଗତୋ ବେଦଶବ୍ଦ-
ପ୍ରଭବତ୍ୱାଦେବନିତ୍ୟତ୍ୱଂ ବେଦଶବ୍ଦସ୍ୟେତି ଶେଷଃ । ସୂତ୍ରାର୍ଥ—

ଯେହେତୁ ନିତ୍ୟାକୃତି ଦେବାଦି ଜଗତ୍ ବେଦଶବ୍ଦରୁ ହିଁ ଉତ୍ପନ୍ନ ହୋଇଅଛି, ବ୍ୟବହାର ରୂପ ଜନ୍ମ ପାଇଅଛି, ସେଇଥିପାଇଁ ବୈଦିକ ଶବ୍ଦ ସବୁ ନିତ୍ୟ ଅର୍ଥାତ୍ ଅନାଦି ଅନନ୍ତ । ସୂତ୍ରବାଖ୍ୟା

ଭାଷ୍ୟ ବ୍ୟାଖ୍ୟା—ଯେ ହେତୁ ନିର୍ଦ୍ଦିଷ୍ଟ ଆକୃତି ବିଶିଷ୍ଟ ଦେବତା ପ୍ରଭୃତି ଜଗତ୍ ନିତ୍ୟ, ସେଇଥିପାଇଁ ବେଦ ଶବ୍ଦ ମଧ୍ୟ ନିତ୍ୟ ।

ବୃହଦାରଣ୍ୟକ ଶ୍ରୁତିରେ ପ୍ରଥମ ଅଧ୍ୟାୟର ପ୍ରଥମରେ ଏହି ତତ୍ତ୍ୱ କୁହାଯାଇଛି—

ତନ୍ମନୋହ କୁରୁତ । ·········ମନସା ବାଚଂ ସମ୍ଭବନଂ କୃତବାନ୍ । ···ମନସା ବାଚ୍ୟ ଆଲୋଚନମ୍ପଗମ୍ୟ ଇଦଂ ସର୍ବ-ମସୃଜତ ।

ସେହି ବ୍ରହ୍ମ ମନ ସୃଷ୍ଟି କଲେ । ମନଦ୍ୱାରା ବାକ୍ୟକୁ ଉତ୍ପନ୍ନ କଲେ । ମନ ଏବଂ ବାକ୍ୟଦ୍ୱାରା ଆନ୍ଦୋଳନ (ନିରୂପଣ) କରି ଏହି ସମସ୍ତ ସୃଷ୍ଟି କଲେ ।

ବାଗନୁରକ୍ତ ବୁଦ୍ଧିବୋଧିତ୍ୱାତ୍ ବାଙ୍ମାତ୍ରଂ ସର୍ବଂ—ମାଣ୍ଡୂକ୍ୟ ଭାଷ୍ୟ ମାଛନ୍ଦଃ । ପ୍ରମାଛନ୍ଦଃ । ପ୍ରତିମାଛନ୍ଦଃ । ଯଜୁର୍ବେଦ ।

ମାଛନ୍ଦ, ପ୍ରମାଛନ୍ଦ ଏବଂ ପ୍ରତିମାଛନ୍ଦ, ଏହିଥିରୁ କ୍ରମଶଃ ଭୂର୍ଲୋକ, ଭୁବର୍ଲୋକ ଓ ସ୍ୱର୍ଲୋକ ହେଲା ।

ପୃଥିବୀଛନ୍ଦଃ ଅନ୍ତରୀକ୍ଷଂ ଛନ୍ଦଃ ଦ୍ୟୌଶ୍ଛନ୍ଦଃ ନକ୍ଷତ୍ରାଣିଛନ୍ଦଃ ବାକ୍ଛନ୍ଦଃ କୃଷିଛନ୍ଦଃ ଗୌଶ୍ଛନ୍ଦଃ ଅଜାଛନ୍ଦଃ । ଶୁକ୍ଲ ଯଜୁର୍ବେଦ ।

ଏହି ପୃଥିବୀ, ଆକାଶ, ସ୍ୱର୍ଗ, ନକ୍ଷତ୍ର, ବାକ୍ୟ, କୃଷି, ଗୋ, ଅଜ, ଅଶ୍ୱ ଏ ସମସ୍ତହିଁ ଛନ୍ଦ ବା ସ୍ପନ୍ଦନରୁ ଉତ୍ପନ୍ନ ।

ଛନ୍ଦାଂସି ଡତ୍-ବିଶ୍ୱରୂପାଣି (ଶତପଥ ବ୍ରାହ୍ମଣ)

ଛନ୍ଦହିଁ ବିଶ୍ୱର ରୂପ । —

ଉପର କଥିତ ଶ୍ରୁତିଗୁଡ଼ିକରେ ସେ ଇକ୍ଷଣ-କାମନା-ଇଚ୍ଛା କଲେ । ଏହାଦ୍ୱାରା ତ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ସୃଷ୍ଟିର ମୂଳ

ହେଲା ଶବ୍ଦ । ତାଙ୍କର ସଙ୍କଳ୍ପ ବା ଇଚ୍ଛାରୁ ହିଁ ବିଶ୍ୱ ଉତ୍ପନ୍ନ ହୋଇଅଛି । ଜଗତର କ୍ରିୟା ହେଲା ସଂକଳ୍ପ । ଯେଉଁଠାରେ କ୍ରିୟା ଅଛି ସେହିଠାରେ ହିଁ ଚଳନ ଅଛି । ଶବ୍ଦ ବ୍ୟତୀତ ଚଳନ ବା ସ୍ପନ୍ଦନ ହୋଇପାରେ ନାହିଁ । ଏହାଦ୍ୱାରା ଜଣାଗଲା ଯେ ଶବ୍ଦରୁ ଜଗତ୍ ସୃଷ୍ଟି ହୋଇଅଛି । ଦେବତାଗଣ ପରୋକ୍ଷପ୍ରିୟ । ସେଥିପାଇଁ ଶାସ୍ତ୍ରରେ ସବୁ ତତ୍ତ୍ୱ ପରୋକ୍ଷ ଭାବରେ ଆଲୋଚିତ ହୋଇଅଛି । ଏହାକୁ ପ୍ରାଣସ୍ପନ୍ଦନ କହିଛନ୍ତି । "ଅତଏବ ଶ୍ରୁତି ମତରେ ସ୍ପନ୍ଦନହିଁ ବିଶ୍ୱର ମୂଳ । ଏହି ସ୍ପନ୍ଦନହିଁ ବ୍ରହ୍ମର ଜ୍ଞାନକ୍ରିୟା ବା ସଂକଳ୍ପ । ସୁତରାଂ ଏହା ବ୍ରହ୍ମଠାରୁ ସ୍ୱତନ୍ତ୍ର ନୁହେଁ । ଏହା ବ୍ରହ୍ମସତ୍ତାରହିଁ ରୂପାନ୍ତର, ଅବସ୍ଥାନ୍ତର ବା ଆକାର ବିଶେଷ ମାତ୍ର ।" (ଉପନିଷଦର ଉପଦେଶ)

ଶଙ୍କରାଚାର୍ଯ୍ୟ ବେଦାନ୍ତଭାଷ୍ୟ ଓ ମୁଣ୍ଡକ ଭାଷ୍ୟରେ ଏହାକୁ "ଜାୟମାନାବସ୍ଥା" ଓ "ବ୍ୟାଚିକୀର୍ଷିତାବସ୍ଥା" ବୋଲି ନିର୍ଦ୍ଦେଶ କରିଛନ୍ତି । ଆଗନ୍ତୁକ ଓ କାଦାଚିତ୍କତ୍ୱ ଅନେକ ସ୍ଥଳରେ କହିଛନ୍ତି । (ପାଦଟୀକା)

ଶ୍ରୁତି ମତରେ ଈଶ୍ୱରଙ୍କର ବହୁ ହେବାର ଇଚ୍ଛା ବା ସଂକଳ୍ପରୁ ଏହି ବିଶ୍ୱ ଉତ୍ପନ୍ନ ହୋଇଅଛି । ସଂକଳ୍ପ ଜ୍ଞାନରହିଁ କ୍ରିୟା । କିନ୍ତୁ ଜ୍ଞାନର କ୍ରିୟା ହେବାକୁ ହେଲେ ଅସ୍ପଷ୍ଟ ଶବ୍ଦ ରୂପେ ଏହା ଅଭିବ୍ୟକ୍ତ ହୁଏ । ଜଗନକ୍ରିୟା ଓ ଶବ୍ଦ ପରସ୍ପର ସଂପୃକ୍ତ·····, ଏଇଥିପାଇଁ ଜଗତ୍ ଶବ୍ଦାତ୍ମକ, ଅତଏବ ଜଗନର ପ୍ରଥମ ଅଭିବ୍ୟକ୍ତି ଶବ୍ଦାତ୍ମକ ।

ପୁଣି ଶୁଣ । ନଚିକେତାର ପ୍ରଶ୍ନର ଉତ୍ତରରେ ଯମ କହିଲେ—

ସର୍ବେ ବେଦା ଯତ୍ ପଦମାମନନ୍ତି
ତପାଂସି ସର୍ବାଣି ଚ ଯଦ୍ ବଦନ୍ତି ।
ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି
ତତ୍ତେ ପଦଂ ସଂଗ୍ରହେଣ ବ୍ରବୀମ୍ୟୋମିତ୍ୟେତତ୍ ।
କଠୋପନିଷତ୍ ୧।୨। ୧୫

ସମସ୍ତ ବେଦ ଯାହାଙ୍କୁ ପ୍ରାପ୍ତବ୍ୟ ବୋଲି ନିର୍ଦ୍ଦେଶ କରନ୍ତି, ନିଖିଳ ତପସ୍ୟା ଯାହାଙ୍କୁ ପ୍ରତିପାଦନ କରିଥାଏ, ଯାହାଙ୍କୁ ଲାଭ କରିବା ଇଚ୍ଛାରେ ମାନବଗଣ ବ୍ରହ୍ମଚର୍ଯ୍ୟ ଆଚରଣ କରିଥାନ୍ତି, ମୁଁ ସଂକ୍ଷେପରେ ସେହି ପାଦ କହୁଅଛି—ଓଁ ହିଁ ସେହି ପ୍ରାପ୍ତବ୍ୟ। (ପାଇବାକୁ ଇଚ୍ଛା କରୁଥିବା ବସ୍ତୁ)

ଏତଦ୍ଧ୍ୟେବାକ୍ଷରଂ ବ୍ରହ୍ମ ଏତଦ୍ଧ୍ୟେବାକ୍ଷରଂ ପରମ୍ ।
ଏତଦ୍ଧ୍ୟେବାକ୍ଷରଂ ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ॥ ୪୫ । ୧୬

ଏହି ଓଙ୍କାର ହିଁ ପ୍ରସିଦ୍ଧ ଅପର ବ୍ରହ୍ମ, ଏହି ଓଙ୍କାର ହିଁ ପ୍ରସିଦ୍ଧ ପରବ୍ରହ୍ମ । ଏହି ଅକ୍ଷରକୁ ଜାଣିଲେ ଯେ ଯାହା ଇଚ୍ଛା କରେ, ତାହାର ତାହାହିଁ ସିଦ୍ଧ ହୁଏ ।

ଏତଦାଲମ୍ବନଂ ଶ୍ରେଷ୍ଠଂ ଏତଦାଲମ୍ବନଂ ପରଂ
ଏତଦାଲମ୍ବନଂ ଜ୍ଞାତ୍ୱା ବ୍ରହ୍ମଲୋକେ ମହୀୟତେ ॥ ୪୬ । ୧୭

ଏହି ଓଙ୍କାର ହିଁ ଶ୍ରେଷ୍ଠ ଅବଲମ୍ବନ, ଏହି ଓଙ୍କାର-ଅବଲମ୍ବନ ହିଁ କୈବଲ୍ୟ । ଏହି ଆଶ୍ରୟକୁ ଜାଣି ଅର୍ଥାତ୍ ପ୍ରତ୍ୟକ୍ଷ କରି ବ୍ରହ୍ମଲୋକରେ ପୂଜ୍ୟ ହୁଅନ୍ତି ।

ଓମିତ୍ୟେତଦକ୍ଷରମିଦଂ ସର୍ବଂ ତସ୍ୟୋପବ୍ୟାଖ୍ୟାନଂ ଭୂତଂ ଭବଦ୍
ଭବିଷ୍ୟଦିତି ସର୍ବମୋଙ୍କାର ଏବ ଯଚାନ୍ୟତ୍ ତ୍ରିକାଳାତୀତଂ
ତଦପ୍ୟୋଙ୍କାର ଏବ । ୧ ॥
ସର୍ବଂ ହ୍ୟେତଦ୍‌ବ୍ରହ୍ମ ଅୟମାତ୍ମା ବ୍ରହ୍ମ ସୋଽୟମାତ୍ମା ଚତୁଷ୍ପାତ୍ ॥ ୨ ।
ମାଣ୍ଡୂକ୍ୟୋପନିଷତ୍ ॥

ଓଁ ଏହି ଅକ୍ଷର କ୍ଷରଣରହିତ ପରମପଦ । ଏହା ସମସ୍ତ ସ୍ଥୂଳ, ସୂକ୍ଷ୍ମ, ସ୍ଥାବର ଜଙ୍ଗମାତ୍ମକ ଜଗତ୍ । ଓଙ୍କାରର ସୁସ୍ପଷ୍ଟ ବିବରଣ ଏହି ଯେ, ଭୂତ, ଭବିଷ୍ୟତ, ବର୍ତ୍ତମାନ ସମସ୍ତ ହିଁ ଓଙ୍କାର । ଏ ସମସ୍ତ ବ୍ରହ୍ମ । ଏହି ଆତ୍ମା ବ୍ରହ୍ମଚତୁଷ୍ପାଦ ଅର୍ଥାତ୍ ଚାରୋଟି ଅବସ୍ଥାବିଶିଷ୍ଟ ।

ପର ପ୍ରଣବ ପରବ୍ରହ୍ମ । ଆଉ ଅପର ପ୍ରଣବ ପ୍ରାଣ, ହିରଣ୍ୟ-ଗର୍ଭ, ସୂତ୍ରାତ୍ମା ଇତ୍ୟାଦି ନାମରେ ଶ୍ରୁତିରେ କଥିତ ହୋଇଅଛି, ଏହି ଅପର ପ୍ରଣବ ହିଁ ନାଦ, ଶବ୍ଦ ବ୍ରହ୍ମ ।

ଶିଷ୍ୟ—ଅପର ପ୍ରଣବ ଯେ ଶବ୍ଦବ୍ରହ୍ମ ଏହା ଭଲ କରି ବୁଝିପାରିଲି ନାହିଁ ।

ଗୁରୁ—ଦ୍ୱେ ବ୍ରହ୍ମଣୀ ବେଦିତବ୍ୟେ ଶବ୍ଦବ୍ରହ୍ମ ପରଞ୍ଚ ଯତ୍ ।
ଶବ୍ଦବ୍ରହ୍ମାଣି ନିଷ୍ଣାତଃ ପରଂ ବ୍ରହ୍ମାଧିଗଚ୍ଛତି ॥
ବିଷ୍ଣୁପୁରାଣ

ଶବ୍ଦବ୍ରହ୍ମ ଏବଂ ପରବ୍ରହ୍ମ ଏହି ଦୁଇ ବ୍ରହ୍ମ ଜ୍ଞାତବ୍ୟ । ଶବ୍ଦ-ବ୍ରହ୍ମରେ କୁଶଳ ହୋଇ ପରବ୍ରହ୍ମରେ ଅଧିକତର ଭାବରେ ପ୍ରବିଷ୍ଟ ହୁଏ ଅର୍ଥାତ୍ ଏକୀଭୂତ ହୁଏ ।

ଶିଷ୍ୟ—ଓଙ୍କାର ପ୍ରଥମେ ଉତ୍ପନ୍ନ, ତାହା ପ୍ରଥମ ଶବ୍ଦ ଏ କଥା ଠିକ୍ ଭାବରେ ବୁଝିପାରିଲି ନାହିଁ ।

ଗୁରୁ—ଆଚ୍ଛା ଶୁଣ—

କାର୍ଯ୍ୟଂ ଯତ୍ର ବିଦ୍ୟତେ କିମପି ତତ୍ ସ୍ପନ୍ଦେନ ସବ୍ୟାପକଂ
ସ୍ପନ୍ଦଶ୍ଚାପି ତଥା ଜଗତ୍ସୁ ବିଦିତଃ ଶବ୍ଦାନ୍ୱୟୀ ସର୍ବ୍ବଦା ।
ସୃଷ୍ଟିଶ୍ଚୈବମତଥାଦିମା କୃତିବିଶେଷ ତ୍ୱାଦଭୂତ୍ ସ୍ପନ୍ଦନୀ
ଶବ୍ଦସ୍ତସ୍ମାଦଭବତ୍ତଥା ପ୍ରଣବ ଇତ୍ୟୋଙ୍କାରରୂପଃ ଶିବଃ ॥
ଶିବସଂହିତା

ଅର୍ଥାତ୍ ଯେଉଁଠାରେ କୌଣସି ପ୍ରକାର କର୍ମ ହୁଏ ସେଠାରେ ଅବଶ୍ୟ ସ୍ପନ୍ଦନ ବା କମ୍ପନ ହେବା ସମ୍ଭବପର; ଯେଉଁଠାରେ ସ୍ପନ୍ଦନ ଅଛି ସେଠାରେ ଶବ୍ଦ ହେବା ଅବଶ୍ୟମ୍ଭାବୀ । ଫଳରେ ସୃଷ୍ଟିରୂପୀ କାର୍ଯ୍ୟ ସମୟରେ ଗୁଣତ୍ରୟର ସାମ୍ୟାବସ୍ଥାମୟୀ ପ୍ରକୃତିର ଯେ ପ୍ରଥମ ସ୍ପନ୍ଦନ ବା ହିଲ୍ଲୋଳ ଧ୍ୱନି ସମୁତ୍ଥିତ ହୋଇଅଛି ତାହାହିଁ

କାର୍ଯ୍ୟ ସାଧନ ବିଜ୍ଞାନରେ ଅପୂର୍ବ ଶିବରୂପୀ ନାଦାଙ୍ଗୀଭୂତ ବିନ୍ଦୁର ବିଶ୍ଳେଷଣ ରୂପ ଅ-ଉ-ମ ଓଁକାର ।

ଜ୍ଞାନପ୍ରଦୀପ ୨ୟ ଖଣ୍ଡ

କ୍ରିୟାଶକ୍ତି ପ୍ରଧାନାୟାଃ ଶବ୍ଦଶବ୍ଦାର୍ଥକାରଣମ୍ ।
ପ୍ରକୃତେର୍ବିନ୍ଦୁରୂପିଣ୍ୟାଃ ଶବ୍ଦବ୍ରହ୍ମାଭବତ୍ ପରମ୍ ॥

ରାଘବଭଟ୍ଟଧୃତବଚନ

ଆହୁରି ଶୁଣ—କ୍ରିୟାଶକ୍ତି ପ୍ରଧାନ ବିନ୍ଦୁ ରୂପିଣୀ ପ୍ରକୃତିଠାରୁ ଶବ୍ଦଶବ୍ଦାର୍ଥ କାରଣ ଶ୍ରେଷ୍ଠ ଶବ୍ଦବ୍ରହ୍ମ ହୋଇଛନ୍ତି ।

ଭିଦ୍ୟମାନାତ୍ ପରାଦ୍ ବିନ୍ଦୋରବ୍ୟକ୍ତାତ୍ମାପରୋଭବତ୍ ।
ଶବ୍ଦବ୍ରହ୍ମେତି ତଂ ପ୍ରାହୁଃ ସର୍ବାଗମବିଶାରଦାଃ ॥

ସାରଦାତିଲକ ପ୍ରଥମ ପଟଳ

ଶକ୍ତ୍ୟବସ୍ଥାରୂପ ଯେ ପ୍ରଥମ ବିନ୍ଦୁ, ତାହା ଭିଦ୍ୟମାନ ହେଲେ ଅବ୍ୟକ୍ତାତ୍ମା ବର୍ଣ୍ଣାଦି ବିଶେଷରହିତ ଅଖଣ୍ଡ ନାଦ ମାତ୍ର ଉତ୍ପନ୍ନ ହୋଇଥିଲା ।

ସୃଷ୍ଟ୍ୟୁନ୍ମୁଖପରମଶିବପ୍ରଥମୋଲ୍ଲାସମାତ୍ରମଖଣ୍ଡୋଽବ୍ୟକ୍ତଃ ।
ନାଦବିନ୍ଦୁମୟ ଏବ ବ୍ରହ୍ମାତ୍ମକଶବ୍ଦଃ ଶବ୍ଦବ୍ରହ୍ମ ॥

ସୃଷ୍ଟି କରିବାକୁ ଉନ୍ମୁଖ ପରମ ଶିବଙ୍କର ପ୍ରଥମ ଉଲ୍ଲାସ ମାତ୍ର ଅଖଣ୍ଡ ଅବ୍ୟକ୍ତ ନାଦବିନ୍ଦୁମୟ ବ୍ୟାପକ ବ୍ରହ୍ମାତ୍ମକ ଶବ୍ଦ ଶବ୍ଦବ୍ରହ୍ମ ଓଙ୍କାର ।

ଦୟାଲ ମହାରାଜ କହିଛନ୍ତି—ଶବ୍ଦହିଁ ସବୁ କିଛିର ମୂଳ । ଆଦି ଶବ୍ଦହିଁ ପ୍ରଣବ । ପ୍ରଣବହିଁ ବେଦ । ସେଇଥିପାଇଁ ବେଦକୁ ଶବ୍ଦବ୍ରହ୍ମ ବୋଲି କୁହାଯାଏ । ଏହି ଶବ୍ଦ ଯେଉଁଠାରୁ ପ୍ରଥମ ପ୍ରସ୍ଫୁଟିତ ହୁଏ ତାହାହିଁ ପରବ୍ରହ୍ମ । ଭାବ ଯେତେବେଳେ ଶାନ୍ତ ଥାନ୍ତି ସେତେ-ବେଳେ ସୃଷ୍ଟି ନାହିଁ । ପରମ ଶାନ୍ତ ବ୍ରହ୍ମରେ ସ୍ୱଭାବତଃ ଯେଉଁ ଚଳନ

ହୁଏ ତାହାହିଁ ତାଙ୍କର ସ୍ପନ୍ଦନ । ତାହାହିଁ ଭାବନା, ଆଦ୍ୟ ସ୍ପନ୍ଦନ । ଚିଦାକାଶରେ ପ୍ରଥମ ଶବ୍ଦ ପ୍ରଣବ । ଏହି ଶବ୍ଦ ଛନ୍ଦ ପରି ତାଳେ ତାଳେ ଚିଦାକାଶରେ ପ୍ରସାରିତ ହୁଏ । ପ୍ରଥମେ ପ୍ରଣବ ସପ୍ତଛନ୍ଦରେ ପ୍ରସାରିତ ହୁଏ । ସେଥିରୁ ବହୁ ବିକୃତି ଛନ୍ଦ ମଧ୍ୟ ଉଠେ । ପ୍ରକୃତି ଛନ୍ଦ ଓ ବିକୃତି ଛନ୍ଦକୁ ନେଇ ଜଗତ୍ ।

"ପ୍ରଣବେନ ବ୍ୟାହୃତିଭିଃ ପ୍ରବର୍ତ୍ତିତେ ତମସସ୍ତୁ ପରଂ ଜ୍ୟୋତିଃ ।

ପରମ ଜ୍ୟୋତି ସ୍ୱରୂପ ଚିଦାକାଶ ଘୋର ତମସାଚ୍ଛନ୍ନ ଥିଲା । କ୍ରମେ ସପ୍ତ ବ୍ୟାହୃତିର ସହିତ ଏହି ପ୍ରଣବ ପ୍ରକାଶିତ ହେଲେ । ପ୍ରଣବର ମୂର୍ତ୍ତିହିଁ ଏହି ଜଗତ୍ । ତା ହେଲେ ଦେଖୁଛ ତ ଶବ୍ଦରୁ ହିଁ ଜଗତ୍ । ଆଉ ମହାପ୍ରଳୟରେ ଜଗତ୍ ଶବ୍ଦରେ ଲୟ ହେବ । ପୁଣି ଶବ୍ଦ ସ୍ପନ୍ଦିତ ହୋଇ ହୋଇ ଧୀରେ ଧୀରେ ସେହି ଚିଦାକାଶରେ ଲୟ ହେବ, ସମସ୍ତ ଶବ୍ଦ ସମସ୍ତ ଭାଷା ଯେତେବେଳେ ଏକ ଅଖଣ୍ଡ ଭାବରେ ମିଳିତ ହୁଏ, ତାହାହିଁ ବିଷ୍ଣୁଙ୍କର ପରମ ପଦ । କୁହ ଏଥର କଣ ଆଉ ସନ୍ଦେହ ଅଛି ?

ଶିଷ୍ୟ—ଆଜ୍ଞା ନା ।

ଗୁରୁ—ଗାୟତ୍ରୀ ବା ଇଦଂ ସର୍ବଂ ଭୂତଂ ଯଦିଦଂ କିଞ୍ଚ ବାଗ୍ ବୈ ଗାୟତ୍ରୀ ବାଗ୍ୱା ଇଦଂ ସର୍ବଂ ଭୂତଂ ଗାୟତି ଚ ତ୍ରାୟତେ ଚ ।

ଛାନ୍ଦୋଗ୍ୟ ୧ । ୨ ୩ୟ ଖଣ୍ଡ ।

ଏହି ଦୃଶ୍ୟମାନ ଯାହା କିଛି ପଦାର୍ଥ ତାହା ସମସ୍ତହିଁ ଗାୟତ୍ରୀ ସ୍ୱରୂପ । ବାକ୍ ଶବ୍ଦହିଁ ଗାୟତ୍ରୀ । କାହିଁକି ନା ବାକ୍ (ଶବ୍ଦ) ଏହି ସମସ୍ତ ଭୂତଙ୍କର ନାମ କୀର୍ତ୍ତନ କରେ ଏବଂ ମାଭୈଃ ମାଭୈଃ ଶବ୍ଦରେ ରକ୍ଷା କରେ । ଏହାଦ୍ୱାରା ମଧ୍ୟ କୁହାଗଲା ଯେ ଶବ୍ଦନାଦହିଁ —ଦୃଶ୍ୟମାନ ସବୁ ପଦାର୍ଥ ।

ଶିଷ୍ୟ—ଋକ୍‌ବେଦ ସୃଷ୍ଟି ସମ୍ବନ୍ଧରେ କଣ କହୁଛନ୍ତି ?

ଗୁରୁ—ସାମା ସନ୍ତୋୟତୁଃ ପରପାତ୍ରୁ ବଶ୍ୱତୋ
ଦ୍ୟାବା ଚ ଯତ୍ର ତତନନ୍ନହାନ ଚ ।
ବିଶ୍ୱମନ୍ୟଂ ନିବଶତେ ଯଦେଜତି
ବିଶ୍ୱାହାପୋ ବିଶ୍ୱାହୋଦେତି ସୂର୍ଯ୍ୟଃ ॥
ଋକ୍‌ବେଦ ସଂହିତା ୧୦ । ୩୭ । ୨

"ଯେଉଁ ସନ୍ତୋୟତ୍ର ଦ୍ୱାରା ପୃଥିବୀ, ଅନ୍ତରୀକ୍ଷ ଏବଂ ଦିନ ଓ ରାତ୍ରିର ପ୍ରସାର ହୋଇଥାଏ, ଯେଉଁ ସନ୍ତୋୟତ୍ରରେ ନିଖିଳ ପ୍ରାଣୀ-ଜାତ ବିଶ୍ରାମ କରନ୍ତି, ଶ୍ରାନ୍ତ ହେଲେ ଯାହାର ଶ୍ରାନ୍ତିହର ଆଗମ-ଦାୟକ କୋଡ଼ରେ ଶୟନ କରିଥାନ୍ତି, ପ୍ରଳୟ କାଳରେ ଲୀନ ହୋଇଥାନ୍ତି, ଯେଉଁ ସନ୍ତୋୟତ୍ରଠାରୁ ପ୍ରାଣୀମାନେ ସମସ୍ତଙ୍କର କମ୍ପନ ବିଚଳନ ହୋଇଥାଏ, ଜଳର ନିଯୁତ କମ୍ପନ ହୁଏ, ସୂର୍ଯ୍ୟଙ୍କର ସର୍ବଦା ଉଦୟ ହୁଏ, ସେହି ସନ୍ତୋୟତ୍ର ମତେ ସର୍ବଦା ରକ୍ଷା କରନ୍ତୁ ।...ବିଶୁଦ୍ଧ ଜ୍ଞାନାଲୋକରେ ମୋର ହୃଦୟକୁ ପ୍ରୋଦ୍ଭାସିତ କରନ୍ତୁ ।"

ଯୋଗସ୍ୱାନନ୍ଦର ଶିବରାତ୍ରି ଓ ଶିବପୂଜା (ଉପକ୍ରମଣିକା)

" 'ଉକ୍ତି' 'ବଚନ' ବାକ୍ ଶବ୍ଦ ଏହି ଅର୍ଥର ବାଚକ । ପରମାଣୁର ସ୍ପନ୍ଦନଠାରୁ ମହତ୍ତର ସ୍ପନ୍ଦନ ପର୍ଯ୍ୟନ୍ତ ସମସ୍ତ ସ୍ପନ୍ଦନ ହିଁ ସନ୍ତୋୟତ୍ରର ସ୍ପନ୍ଦନ, ସନ୍ତୋୟତ୍ରର ସମ୍ପନ୍ନ ଅବସ୍ଥା ହିଁ ସଗୁଣ ବେଦ ବା ବିଶ୍ୱ-ଜଗତ୍—ହିରଣ୍ୟ ଗର୍ଭପଦବୋଧ ।"

ଶକ୍ତିମୟ ପରବ୍ରହ୍ମ ପର ପ୍ରଣବ ଜଗଦାକାର ଧାରଣ କରିବା ସମୟରେ ବିନ୍ଦୁ, ନାଦ ଓ ବୀଜ ଏହି ତ୍ରିଧା ଭିନ୍ନ ହୁଅନ୍ତି—ପୁରୁଷ, ପ୍ରକୃତି, କାଳ ଏହି ତ୍ରିବିଧ ଭାବରେ ବିବର୍ତ୍ତିତ ହୁଅନ୍ତି । ବିନ୍ଦୁ ଶିବାତ୍ମକ, ବୀଜ ଶକ୍ତ୍ୟାତ୍ମକ ଓ ନାଦ ଚିଦଚିଦାତ୍ମକ ।

ଶବ୍ଦସ୍ୟ ପରିଣାମୋଽୟମିତ୍ୟାମ୍ନାୟବିଦୋ ବିଦୁଃ ॥ ବାକ୍ୟପଦୀୟ

ବେଦଜ୍ଞ ପୁରୁଷଗଣ ବିଶ୍ୱ ଜଗତ୍‌କୁ ଶବ୍ଦର ପରିଣାମ ବୋଲି କହନ୍ତି । ଶବ୍ଦରୁ ଯେ ଜଗତ୍ ସୃଷ୍ଟି ହୋଇଅଛି, ଆଶାକରେ ଏଥିରେ ତୁମର ଆଉ କିଛି ସଂଶୟ ନାହିଁ ।

ଶିଷ୍ୟ—ସୃଷ୍ଟି ତତ୍ତ୍ୱ ଅତ୍ୟନ୍ତ ଜଟିଳ । କେହି କହନ୍ତି ପ୍ରକୃତିରୁ ଜଗତ୍, କେହି ବା ପରମାଣୁ । କେହି ବିଜ୍ଞାନ, କେହି ତପଃ, କେହି ବା କାଳଠାରୁ ଜଗତ୍ ସୃଷ୍ଟି ବୋଲି ଏହିପରି ଭିନ୍ନ ଭିନ୍ନ କାରଣ ନିର୍ଦ୍ଦେଶ କରନ୍ତି । କଣ ଏଦ୍ୱାରା କିଛି ସାମଞ୍ଜସ୍ୟ ହୋଇ ପାରିବ ?

ଗୁରୁ—ଅବଶ୍ୟ ହୋଇ ପାରିବ । ତୁମକୁ ପୂର୍ବରୁ କହିଛି ଓଁକାର ପ୍ରଥମ ଶବ୍ଦ । ଓଁକାର ଅ-ଉ-ମ; ଅକାରଟି ସ୍ପନ୍ଦନ, ଉକାରଟି ପ୍ରାଣ, ମକାରଟି ଶବ୍ଦ । ତିନୋଟିକୁ ପୃଥକ୍ କରିବାର କୌଣସି ଉପାୟ ନାହିଁ ।

ଅକାରଃ ସାତ୍ତ୍ୱିକୋଜ୍ଞେୟ ଉକାରୋ ରାଜସଃ ସ୍ମୃତଃ ।
ମକାରସ୍ତାମସଃ ପ୍ରୋକ୍ତସ୍ତ୍ରିଭିଃ ପ୍ରକୃତିରୁଚ୍ୟତେ ॥ ୯୮
ଅକ୍ଷରା ପ୍ରକୃତିଃ ପ୍ରୋକ୍ତା ଅକ୍ଷରଃ ସ୍ୱୟମୀଶ୍ୱରଃ ।
ଈଶ୍ୱରାନ୍ନିର୍ଗତା ସା ହି ପ୍ରକୃତିର୍ଗୁଣବନ୍ଧନା ॥ ୯୯
ସା ମାୟା ପାଳନୀ ଶକ୍ତିଃ ସୃଷ୍ଟିସଂହାରକାରିଣୀ ।
ଅବିଦ୍ୟା ମୋହିନୀ ଯା ସା ଶବ୍ଦରୂପା ଯଶସ୍ୱିନୀ ॥ ୧୦୦
ଜ୍ଞାନସଙ୍କଳନୀତନ୍ତ୍ର ।

ଅକାର ସାତ୍ତ୍ୱିକ, ଉକାର ରାଜସ, ମକାର ତାମସ । ଏହି ତ୍ରିଗୁଣାତ୍ମିକା ପ୍ରକୃତି, ଅକ୍ଷରା ପ୍ରକୃତି ଓ ସ୍ୱୟଂ ଈଶ୍ୱର ଅକ୍ଷର ଈଶ୍ୱରଙ୍କଠାରୁ ନିର୍ଗତା । ସେହି ପ୍ରକୃତି ଗୁଣଦ୍ୱାରା ବନ୍ଧନକାରିଣୀ, ସେଇ ମଧ୍ୟ ସୃଷ୍ଟିସଂହାରକାରିଣୀ, ପାଳନୀ, ଶକ୍ତିମାୟା, ପୁଣି ଯେ ମୋହିନୀ ଅବିଦ୍ୟା, ସେ ସେହି ବିଖ୍ୟାତା ଶବ୍ଦରୂପିଣୀ ପ୍ରକୃତି ।

ତାହା ହେଲେ ବୁଝିଲ ତ ଶବ୍ଦମୟ ମକାର ପାଦଟି ହିଁ ପ୍ରକୃତି । ଯେ ପୁରୁଷାଭିମୁଖିନୀ ସେ ମାୟା, ଏବଂ ଯେ ସୃଷ୍ଟି-ଅଭି-ମୁଖିନୀ ସେ ଅବିଦ୍ୟା ।

ପରମାଣୁ, ଶକ୍ତି, ବିଜ୍ଞାନ, ତମଃ, ତପଃ, କାଳ ସବୁ 'ଶବ୍ଦର' ନାମାନ୍ତର ।

ନାମରୂପ ବିନିର୍ମୁକ୍ତଂ ଯସ୍ମିନ୍ ସନ୍ତିଷ୍ଠତେ ଜଗତ୍ ।
ତାମାହୁଃ ପ୍ରକୃତିଂ କେଚିନ୍ମାୟାମେକେ ପରେତ୍ୱଣୂନ୍ ।

ଯୋଗବାଶିଷ୍ଠ

ନାମରୂପରୁ ବିଶେଷ ଭାବରେ ନିଃଶେଷରେ ମୁକ୍ତ ଏହି ଜଗତ୍ ଯେଉଁଥିରେ ଅବସ୍ଥାନ କରେ, ତାହାକୁ କେହି ପ୍ରକୃତି, କେହି ବା ମାୟା, ଅନ୍ୟ କେହି ଅଣୁ ବୋଲି କହିଥାନ୍ତି ।

କେଚିତ୍ତଂ ତପ ଇତ୍ୟାହୁସ୍ତମଃ କେଚିଜ୍ଜଡଂ ପରେ ।
ଜ୍ଞାନଂ ମାୟାଂ ପ୍ରଧାନଞ୍ଚ ପ୍ରକୃତିଂ ଶକ୍ତିମପ୍ୟଜାମ୍ ॥

ଦେବୀଭାଗବତ ୭ । ୩୨

କେହି ତପ, କେହି ତମ, କେହି ବା ଜଡ଼, କେହି ବା ଜ୍ଞାନ, ମାୟା, ପ୍ରଧାନ, ପ୍ରକୃତି, ଶକ୍ତି, ଅଜା ଇତ୍ୟାଦି କହିଥାନ୍ତି ।

ତତ୍ର ଯା ପ୍ରକୃତିଃ ପ୍ରୋକ୍ତା ସା ରାଜନ୍ ଦ୍ୱିବିଧା ସ୍ମୃତା ।
ସତ୍ତ୍ୱାତ୍ମିକା ତୁ ମାୟା ସ୍ୟାଦବିଦ୍ୟା ଗୁଣମିଶ୍ରିତା ॥

ଦେବୀଭାଗବତ ୭ । ୩୨

ହେ ରାଜନ୍, ପ୍ରକୃତି ଦ୍ୱିବିଧା ସତ୍ତ୍ୱାତ୍ମିକା ମାୟା, ଆଉ ଗୁଣ-ମିଶ୍ରିତା ଅବିଦ୍ୟା ।

ଅନ୍ତର୍ମୁଖା ତୁ ଯାବସ୍ଥା ସା ମାୟେତ୍ୟଭିଧୀୟତେ ।
ବହିର୍ମୁଖୀ ତୁ ଯା ମାୟା ତମଃ ଶବ୍ଦେନ ଗୃହ୍ୟତେ ॥

ଦେବୀଭାଗବତ । ୧୨ । ୮

ଅନ୍ତର୍ମୁଖୀ ଅବସ୍ଥା ମାୟା ଏବଂ ବହିର୍ମୁଖୀ ଅବସ୍ଥା ଅବିଦ୍ୟା ।

ସ କାଳଃ ପରମାଣୁର୍ବୈ ଯୋ ଭୁଂକ୍ତେ ପରମାଣୁତାମ୍ ।
ସତୋଽବିଶେଷଭୁଗ୍ ଯସ୍ତୁ ସ କାଳଃ ପରମୋ ମହାନ୍ ॥

ଭାଗବତ ୩ । ୧୧ । ୪

କାଳାଖ୍ୟ ଭଗବଚ୍ଛକ୍ତି ଯେତେବେଳେ ପରମାଣୁ ଅବସ୍ଥା ଭୋଗ କରନ୍ତି, ସେତେବେଳେ ସେ ପରମାଣୁ ଶବ୍ଦରେ ଏବଂ ଯେତେବେଳେ ଅବିଶେଷ ବା ସାକଲ୍ୟ ଅବସ୍ଥା ଭୋଗ କରନ୍ତି, ସେତେବେଳେ ସେ ପରମ ମହାନ୍ ଶବ୍ଦରେ ଉକ୍ତ ହୋଇଥାନ୍ତି । ଏଥର ବୁଝିଲ ତ ଏକମାତ୍ର ଶବ୍ଦ ହିଁ ନାନା ନାମରେ ଅଭିହିତ ହୋଇଛନ୍ତି, ବସ୍ତୁଭେଦ ନାହିଁ, କେବଳ ନାମଭେଦ ମାତ୍ର ।

ତୃତୀୟା ମହତୀ ଶକ୍ତିର୍ନିହନ୍ତି ସକଳଂ ଜଗତ୍ ।
ତାମସୀ ମେ ସମାଖ୍ୟାତା କାଳାଖ୍ୟା ରୁଦ୍ରରୂପିଣୀ ।

ଅଦ୍ଭୁତ ରାମାୟଣ । ୭ମ

ରୁଦ୍ରରୂପିଣୀ ତାମସୀ ଶକ୍ତିର ନାମ କାଳ ।

ଶିଷ୍ୟ—ଏକ "ଶବ୍ଦର" ପ୍ରକୃତି, ପରମାଣୁ, କାଳ ପ୍ରଭୃତି ନାନା ଆଖ୍ୟା—ଏ ତତ୍ତ୍ୱ ଜାଣିବା ଅତି ସୁକଠିନ ! ଆପଣଙ୍କ କୃପାରୁ ମୋର ଶବ୍ଦରୁ ଜଗତର ସୃଷ୍ଟି ବିଷୟରେ ଆଉ କିଛି ସଂଶୟ ନାହିଁ ।

ଗୁରୁ—ଆହୁରି ଶୁଣ—

ଏକ ଏବ ଶିବଃ ସାକ୍ଷାଦ୍ ଦ୍ୱିଧାସୌ ସମବସ୍ଥିତଃ ।
ସ୍ତ୍ରୀ ପୁଂସଭାବେନ ତୟୋର୍ଭେଦ ଇତ୍ୟପି କେଚନ ।

ଶିବପୁରାଣ ବାୟୁବୀୟ ସଂହିତା ॥

ଏକମାତ୍ର ଶିବ ହିଁ ସ୍ତ୍ରୀ ପୁରୁଷ ଦୁଇ ପ୍ରକାରରେ ଅବସ୍ଥାନ କରୁଛନ୍ତି ।

ପରମାର୍ଥତସ୍ତୁ ସା ଶକ୍ତିଃ ଶକ୍ତିମତଃ ଶିବାଦଭିନ୍ନା ।

ପରମାର୍ଥତ ସେହି ଶକ୍ତି ଶକ୍ତିମାନ୍ ଶିବଙ୍କଠାରୁ ଅଭିନ୍ନା ।

"ଏକ ଅଦ୍ୱିତୀୟ ବ୍ରହ୍ମଙ୍କୁ ହିଁ ଈଶ୍ୱର ଓ ମହାମାୟା ନାମରେ ଦ୍ୱୈତ ଦୁଇ ବିଭିନ୍ନ ଭାବରେ ଉପଲବ୍ଧି ହୋଇଥାଏ ।"

ଏକ ଏବ ତୁ ଭୂତାତ୍ମା ଗୁଣମାଦାୟ ଶମ୍ଭୁୟଃ ।
ଅର୍ଦ୍ଧେନ ନାରୀ ସଂକଲ୍ପ୍ୟ ହ୍ୟର୍ଦ୍ଧେନ ପୁରୁଷୋଽଭବତ୍ ॥

କାଶୀଖଣ୍ଡ

ଏକ ଚୈତନ୍ୟମୟ ପରମାତ୍ମା ସଗୁଣ ହୋଇ ଅର୍ଦ୍ଧ ଅଙ୍ଗ ନାରୀ ଏବଂ ଅର୍ଦ୍ଧ ଅଙ୍ଗଦ୍ୱାରା ପୁରୁଷ ହୋଇଛନ୍ତି । ପରବ୍ରହ୍ମ ଓ ଆଦ୍ୟାଶକ୍ତି ସର୍ବଦା ଜଡ଼ିତ । ବ୍ରହ୍ମ ଶକ୍ତିମୟ । ପ୍ରଚୁର ଶକ୍ତି ଥିଲେ ମଧ୍ୟ ସେହି ସେ ଶକ୍ତି ଏ କଥା କୁହାଯାଏ ନାହିଁ । ସେ ଶକ୍ତିର ଦ୍ରଷ୍ଟା । ଶକ୍ତି ତାଙ୍କର—

ସାମୁଦ୍ରୋ ହି ତରଙ୍ଗୋ ନ ପୁନସ୍ତାରଙ୍ଗଃ ସମୁଦ୍ରଃ ।
ହଙ୍କାରେ ବିନ୍ଦୁରିତ୍ୟୁକ୍ତୋ ବିସର୍ଗଃ ସ ଇତି ସ୍ମୃତଃ ।
ବିନ୍ଦୁଃ ପୁରୁଷ ଇତ୍ୟୁକ୍ତୋ ବିସର୍ଗଃ ପ୍ରକୃତିଃ ସ୍ମୃତଃ ।
ପୁଂ ପ୍ରକୃତ୍ୟାତ୍ମକୋ ହଂସସ୍ତଦାତ୍ମକମିଦଂ ଜଗତ୍ ॥

ହଙ୍କାର ବିନ୍ଦୁ ପୁରୁଷ, ସକାର ବିସର୍ଗ ପ୍ରକୃତି, ହଂସ ପୁଂ ପ୍ରକୃତ୍ୟାତ୍ମକ । ଜଗତ୍ ତଦାତ୍ମକ । ମନେ ଅଛି ତ ଯେ ନାଦ ଉଭୟାତ୍ମକ ? ଶବ୍ଦରୁ କିପରି ଜଗତ୍ ସୃଷ୍ଟି ହୋଇଅଛି ତାହା ବୁଝାଇବା ପାଇଁ ପୂଜ୍ୟପାଦ ନାଗେଶ ଭଟ୍ଟ ସ୍ୱପ୍ରଣୀତ ମଞ୍ଜୁଷା ଗ୍ରନ୍ଥରେ ଲେଖିଛନ୍ତି—

ପ୍ରଳୟେ ନଯୃତକାଳପରିପାକାଣାଂ ସର୍ବପ୍ରାଣିକର୍ମଣାମୁପ-ଭୋଗେନ ପ୍ରକ୍ଷୟାଲ୍ଲୀନସର୍ବଜଗତ୍କା ମାୟା ଚେତନ ଈଶ୍ୱରେ ଲୀୟତେ ଲୟଶ୍ଚାୟଂ ପୁନଃପ୍ରାଦୁର୍ଭାବଫଳକୋ ନାତ୍ୟନ୍ତିକୋ ନାଶଃ ।

ଅପରିପକ୍ୱପ୍ରାଣିକର୍ମଭିଃ କାଲବଶାତ୍ ପ୍ରାପ୍ତପରିପାକୈଃ ସ୍ୱଫଳ-ପ୍ରଦାନାୟ ଭଗବତୋଽବୁଦ୍ଧି ପୂର୍ବିକା ସୃଷ୍ଟିର୍ମାୟାପୁରୁଷୌ ପ୍ରାଦୁର୍ଭବତଃ । ତତଃ ପରମେଶ୍ୱରସ୍ୟ ସିସୃକ୍ଷାତ୍ମିକା ମାୟା ବୃତ୍ତି-ର୍ଜାୟତେ । ତତୋ ବିନ୍ଦୁରୂପମବ୍ୟକ୍ତଂ ତ୍ରିଗୁଣଂ ଜାୟତେ । ଇଦମେବ ଶକ୍ତିତତ୍ତ୍ୱମ୍ । ତସ୍ୟ ବିନ୍ଦୋରଚିଦଂଶୋ ବୀଜଂ ଚିଦଚିନ୍ମି-ଶ୍ରୋଽଂଶୋ ନାଦଃ ଚିଦଂଶୋ ବିନ୍ଦୁଃ । ଅଚିଚ୍ଛବ୍ଦେନ ଶବ୍ଦାର୍ଥୋଭୟ-ସଂସ୍କାରରୂପାବିଦ୍ୟୋଚ୍ୟତେ । ଅସ୍ମାଦ୍ ବିନ୍ଦୋଃ ଶବ୍ଦବ୍ରହ୍ମାପରନାମ-ଧେୟଂ······ନାଦମାତ୍ର ମୁତ୍ପଦ୍ୟତେ ॥ (ଯୋଗତ୍ରୟାନନ୍ଦକୃତ ଆର୍ଯ୍ୟଶାସ୍ତ୍ରପ୍ରଦୀପ)

ନିୟତକାଳପରିପକ୍ୱ ପ୍ରାଣିକର୍ମ ଉପଭୋଗ ଦ୍ୱାରା ପ୍ରକ୍ଷୀଣ ହେଲେ ଜଗତ୍ ସ୍ଥୂଳରୂପ ତ୍ୟାଗ କରି ସ୍ୱକାରଣ ଈଶ୍ୱରଙ୍କ-ଠାରେ ପ୍ରଲୀନ ବା ଲୟ ପ୍ରାପ୍ତ ହୁଏ । ଲୟ ହୁଏ କହିଲେ ଏକା-ବେଳକେ ପ୍ରଧ୍ୱସ୍ତ ବୋଲି ବୁଝିଉ ନାହିଁ । ଲୟ ପ୍ରାଦୁର୍ଭାବ ଫଳକ, ଏହା ଆତ୍ୟନ୍ତିକ ନାଶାର୍ଥକ ନୁହେଁ । ପ୍ରଳୟ ଅବସ୍ଥାରେ କିଛି କାଳ ଅବସ୍ଥାନ କରିବା ପରେ କ୍ରିୟା-ପ୍ରତିକ୍ରିୟା ନ୍ୟାୟରେ ପ୍ରାଣୀଗଣଙ୍କର ସକାମ ଭାବରେ କୃତକର୍ମ ସବୁ ଯେତେବେଳେ ଫଳଦାନ ପାଇଁ ଉନ୍ମୁଖ ହୁଏ, ସେତେବେଳେ ସର୍ବସାକ୍ଷୀ ସର୍ବକର୍ମଫଳପ୍ରଦ ପରମେଶ୍ୱରଙ୍କଠାରେ ସିସୃକ୍ଷାତ୍ମିକା ମାୟାବୃତ୍ତିର ବିକାଶ ହୁଏ । ତା ପରେ ବିନ୍ଦୁରୂପୀ ତ୍ରିଗୁଣାତ୍ମକ ଅବ୍ୟକ୍ତଙ୍କର ଆବିର୍ଭାବ ହୁଏ । ଏହାରି ନାମ ଶକ୍ତିତତ୍ତ୍ୱ । ବିନ୍ଦୁର ଅଚିଦଂଶ ବୀଜ, ଚିଦଚିଦ୍ ମିଶ୍ର ଅଂଶ ନାଦ ଏବଂ ଚିଦଂଶ ବିନ୍ଦୁ । ଅଚିତ୍ ଏହି ଶବ୍ଦ ଦ୍ୱାରା ଶବ୍ଦାର୍ଥୋ-ଭୟସଂସ୍କାରରୂପା ଅବିଦ୍ୟା ଲକ୍ଷିତ ହୋଇଅଛି । ଚୈତନ୍ୟାଧିଷ୍ଠିତ ପ୍ରକୃତି ବା ଶକ୍ତିର ପୁଂକାଳାଦିବ୍ୟପଦେଶ ନାହିଁ, କ୍ରିୟାପ୍ରଧାନ ଅବସ୍ଥା ନାହିଁ, ନାଦ ଦେହରେ ଅଭିଧେୟ । ଏହି ବିନ୍ଦୁନାଦଲକ୍ଷିତ

ପଦାର୍ଥର ଅପର ନାମ ଶବ୍ଦବ୍ରହ୍ମ । ତେବେ ଶବ୍ଦ କଣ ? ଆର୍ଯ୍ୟ-ଶାସ୍ତ୍ର ପ୍ରଦୀପକାର କୁହନ୍ତି—"ଅଖଣ୍ଡ ସଚ୍ଚିଦାନନ୍ଦ ପରମାତ୍ମାଙ୍କର ନାଦାଭିବ୍ୟକ୍ତ ନାଦଦ୍ୱାରା ବହିଃପ୍ରକାଶିତ ଅବସ୍ଥାକୁ ଆମେ ସାଧାରଣତଃ ଶବ୍ଦ ବୋଲି ବୁଝିଥାଉ ।" ସାରଦାତିଳକ କହୁଛନ୍ତି—"ବିନ୍ଦୁ ଯାହା ତାହା ଶିବାତ୍ମକ । ବୀଜ ଯାହା ତାହା ଶକ୍ତ୍ୟାତ୍ମକ ଏବଂ ନାଦ ଯାହା ତାହା ଶିବ ଶକ୍ତ୍ୟାତ୍ମକ ବା ତଦଢଦାତ୍ମକ । 'ଶିବାତ୍ମତତ୍ତ୍ୱା ବିନ୍ଦୁସଙ୍ଗଃ ଶକ୍ତ୍ୟାତ୍ମତତ୍ତ୍ୱା ନାଦସଙ୍ଗଃ ସମ୍ବନ୍ଧରୂପେଣ ନାଦସଙ୍ଗଃ ।' ପ୍ରଣବ ମଧ୍ୟରେ ଆମେ ଅ ଉ ମ ଅର୍ଦ୍ଧମାତ୍ରା ନାଦ ଓ ବିନ୍ଦୁ ଏହି ଛ ଅଂଶ ପାଇଥାଉ ।" ଦୟାଳ ମହାରାଜ ।

ଶବ୍ଦରୁ ଜଗତ୍ ସୃଷ୍ଟି ହୋଇଅଛି ଅର୍ଥାତ୍ ଶବ୍ଦ ହିଁ ଘନୀଭୂତ ହୋଇ ଜଗଦାକାରରେ ପରିଣତ ହୋଇଅଛି । ଶବ୍ଦ ହିଁ ଆଧି-ଭୌତିକ ପଦାର୍ଥ ସମୂହ । ନାଦ ହିଁ ଆଧିଦୈବିକ ସୂର୍ଯ୍ୟଚନ୍ଦ୍ର ଗ୍ରହ ଆଦି ଏବଂ ନାଦ ହିଁ ଶ୍ରୋତ୍ରାଦି ଇନ୍ଦ୍ରିୟ ଓ ନାଦ ହିଁ ପରା ପ୍ରକୃତି-ରୂପ ସୃଷ୍ଟ ଜଗତର ଅଭ୍ୟନ୍ତରରେ ପ୍ରବିଷ୍ଟ ହୋଇ ଜଗତ୍‌କୁ ଧରି ରଖିଛନ୍ତି—ଏହା ଭଲରୂପେ ହୃଦୟଙ୍ଗମ କଲ ତ ?

ଶିଷ୍ୟ—ହିଁ ଦେବ ।

ଗୁରୁ—ଅତଃପର ନାଦବ୍ରହ୍ମର ବାଙ୍ମୟୀ ଲୀଳା କଥା କହିବି ।

---

୯ ଶ୍ରୀ ଶ୍ରୀ ଗୁରବେ ନମଃ

ଶ୍ରୀମତେ ସ୍ୱମାନନ୍ଦାୟ ନମଃ ଶ୍ରୀମତେ ସ୍ୱମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ

# ଶ୍ରୀଶ୍ରୀନାଦଲୀଳାମୃତ

## ଦ୍ୱିତୀୟ ହିଲ୍ଲୋଳ

ବିଶାଳ ବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ
ବସୁନ୍ଧରା-ବାର-ବିମାନ-ବହ୍ନି—
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ।

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ତ୍ୱେନ ସଦୋଦିତାୟ ପୂର୍ଣ୍ଣାୟ ।

ଚିଦ୍ ବିଳାସବିଳାସାୟ ଓଁକାରାୟ ନମଃ
ଅର୍ଦ୍ଧମାତ୍ରାମମାତ୍ରାଞ୍ଚ ଦେବତାଂ ବିଜନୋଜ୍ଜ୍ୱଳାମ୍
ଓଁକାରରୂପିଣୀଂ ଦେବୀଂ ନିତ୍ୟଂ ବନ୍ଦେ ସୁନିର୍ମଳାମ୍ ॥

ଶିଷ୍ୟ—ଦେବ ! ନାଦବ୍ରହ୍ମର ଅପୂର୍ବ ଲୀଳା କଥା କୁହନ୍ତୁ ।

ଗୁରୁ—ବେଦରେ କଥିତ ଅଛି—

ଗୌରୀର୍ମିମାୟ ସଲିଳାନି ତକ୍ଷ—
ତ୍ୟେକପଦୀ ଦ୍ୱିପଦୀ ସା ଚତୁଷ୍ପଦୀ ।
ଅଷ୍ଟାପଦୀ ନବପଦୀ ବଭୂବୁଷୀ
ସହସ୍ରାକ୍ଷରା ପରମେ ବ୍ୟୋମନ୍ ॥
ଋଗ୍‌ବେଦସଂହିତା ।

"ସୃଷ୍ଟି ଆରମ୍ଭ ହେଲାବେଳେ ପରମପଦ ପରମ ଆକାଶରେ ପ୍ରତିଷ୍ଠିତା ଗୌରବର୍ଣ୍ଣା ବାଗ୍‌ଦେବୀ ଜଳତରଙ୍ଗ ପରି ବର୍ଣ୍ଣ ପଦ ବାକ୍ୟ ଇତ୍ୟାଦି ରଚନା କରୁ କରୁ ଶବ୍ଦ ସୃଷ୍ଟି କରିଥିଲେ । ପ୍ରଥମେ ସେ ପ୍ରଣବ ରୂପେ ଏକପଦୀ ହୋଇ ବ୍ୟୋମମୟ ପୁରୁଷଙ୍କର ହୃଦୟ-ରେ ଆବିର୍ଭୂତା ହେଲେ; ତା'ପରେ ବ୍ୟାହୃତି ଏବଂ ସାବିତ୍ରୀରୂପେ ଦ୍ୱିପଦୀ ହେଲେ; ପରେ ବେଦଚତୁଷ୍ଟୟ ରୂପେ ଚତୁଷ୍ପଦୀ; ତା ପରେ ଛଅ ବେଦାଙ୍ଗ (ଶିକ୍ଷା, କଳ୍ପ, ବ୍ୟାକରଣ, ଛନ୍ଦ, ନିରୁକ୍ତ, ଜ୍ୟୋତିଷ) ଓ ପୁରାଣ ଏବଂ ଧର୍ମଶାସ୍ତ୍ରରୂପେ ଅଷ୍ଟାପଦୀ ହେଲେ; ତା ପରେ ନ୍ୟାୟ ମୀମାଂସା ସାଂଖ୍ୟଯୋଗ ପଞ୍ଚରାତ୍ର ପାଶୁପତ ଆୟୁର୍ବେଦ ଧନୁର୍ବେଦ ଓ ଗନ୍ଧର୍ବବେଦରୂପେ ନବପଦୀ ହୋଇ ଆବିର୍ଭୂତା ହେଲେ; ତାହା ପରେ ଅନନ୍ତବାକ୍‌ସନ୍ଦର୍ଭରୂପେ ଏବି ସର୍ବବର୍ଣ୍ଣମୟୀ ସର୍ବଧ୍ୱନିମୟୀ ଏବି ସହସ୍ରାକ୍ଷରୀ ବାଗ୍‌ଦେବୀ ପରମ ବ୍ୟୋମରୁ ଆବିର୍ଭୂତା ହେଲେ ।"

ସାରଦାତିଳକ ପ୍ରଥମ ପଟଳ:—

ସଚ୍ଚିଦାନନ୍ଦବିଭବାତ୍ ସକଳାତ୍ ପରମେଶ୍ୱରାତ୍ ।
ଆସୀଚ୍ଛକ୍ତିସ୍ତତୋ ନାଦ ସ୍ତସ୍ମାଦ୍-ବିନ୍ଦୁ-ସମ୍ଭବଃ ॥

ପ୍ରଥମେ ସଚ୍ଚିଦାନନ୍ଦ ସ୍ୱରୂପ ସପ୍ରକୃତିକ ପରମେଶ୍ୱରଙ୍କଠାରୁ ତାଙ୍କ ସହିତ ଏକୀଭୂତା ହୋଇ ରହିଥିବା ଶକ୍ତି ଆବିର୍ଭୂତା ହେଲେ । ସେଥିରୁ ନାଦ ଘୋଷ, ତାହାହିଁ ବୀଜ, ନାଦରୁ ବିନ୍ଦୁ ପ୍ରଣବ ଉତ୍ପନ୍ନ ହୁଏ ।

ପରାଶକ୍ତିମୟଃ ସାକ୍ଷାତ୍ ତ୍ରିଧାସୌ ଭିଦ୍ୟତେ ପୁନଃ ।
ବିନ୍ଦୁର୍ନାଦୋ ବୀଜମିତି ତସ୍ୟ ଭେଦାଃ ସମୀରିତାଃ ॥
ବିନ୍ଦୁଃ ଶିବାତ୍ମକୋ ବୀଜଂ ଶକ୍ତିର୍ନାଦସ୍ତୟୋର୍ମିଥଃ ।
ସମବାୟଃ ସମାଖ୍ୟାତାଃ ସର୍ବାଗମବିଶାରଦୈଃ ।

ପରାଶକ୍ତିମୟ ବିନ୍ଦୁ ପ୍ରଣବ ତିନି ପ୍ରକାରରେ ଭିନ୍ନ ହୁଅନ୍ତି। ବିନ୍ଦୁ, ନାଦ ଓ ବୀଜ ତାହାର ତିନି ପ୍ରକାରର ଭେଦ ବୋଲି କୁହାଯାଏ। ବିନ୍ଦୁ ଶିବାତ୍ମକ ବୀଜ, ଶକ୍ତ୍ୟାତ୍ମକ ଏବଂ ନାଦ ଉଭୟାତ୍ମକ ଅର୍ଥାତ୍ ଶିବ ଶକ୍ତିର ସମବାୟ ସ୍ୱରୂପ। ଏହା ପୂର୍ବେ ଆଲୋଚନା କରାଯାଇଅଛି।

ଭିଦ୍ୟମାନାତ୍ ପରାଦ୍ ବିନ୍ଦୋରବ୍ୟକ୍ତାତ୍ମାପରୋଽଭବତ୍।
ଶବ୍ଦ-ବ୍ରହ୍ମେତି ତଂ ପ୍ରାହୁଃ ସର୍ବାଗମବିଶାରଦାଃ॥
ପ୍ରାଣତୋଷିଣୀଧୃତ ସାରଦା।

ପରମ ବିନ୍ଦୁ ଭିଦ୍ୟମାନ ହୋଇ ଅପର ପ୍ରଣବ ଆବିର୍ଭୂତ ହେଲେ, ଆଗମ-ପାରଦର୍ଶୀ ମହାତ୍ମାମାନେ ଏହାକୁ ଶବ୍ଦବ୍ରହ୍ମ ବୋଲି କହିଛନ୍ତି।

କୁବ୍ଜିକାତନ୍ତ୍ର ପ୍ରଥମ ପଟଳ—
ଆସୀଦ୍ବିନ୍ଦୁ ସ୍ତତୋ ନାଦୋ ନାଦାଚ୍ଛକ୍ତିସମୁଦ୍ଭବଃ
ନାଦରୂପା ମହେଶାନି ଚିଦ୍ରୂପା ପରମା କଳା॥
ନାଦାଚ୍ଚୈବ ସମୁତ୍ପନ୍ନା ଅର୍ଦ୍ଧବିନ୍ଦୁର୍ମହେଶ୍ୱରି,
ସାର୍ଦ୍ଧତ୍ରିତୟବିନ୍ଦୁଭ୍ୟୋ ଭୁଜଙ୍ଗୀ କୁଳକୁଣ୍ଡଳୀ॥
ନିର୍ଗୁଣା ସଗୁଣା ଦେବୀ ବ୍ରହ୍ମରୂପା ସନାତନୀ
ଚୈତନ୍ୟରୂପିଣୀ ଦେବୀ ସର୍ବଭୂତ ପ୍ରକାଶିନୀ
ଆନନ୍ଦରୂପିଣୀ ଦେବୀ ବ୍ରହ୍ମାନନ୍ଦପ୍ରକାଶିନୀ॥

ନିର୍ଗୁଣା ଶକ୍ତି ବିନ୍ଦୁରୂପେ ପରଂବ୍ରହ୍ମରେ ଏକୀଭୂତା ହୋଇଥିଲେ। ସିସୃକ୍ଷା ହେବାରୁ ପ୍ରଥମେ ନାଦ, ପରେ ନାଦ ସଗୁଣ ବ୍ରହ୍ମରୁ ଶକ୍ତି ଉତ୍ପନ୍ନ ହେଲେ। ହେ ମହେଶାନି! ନାଦ ଚିତ୍-ସ୍ୱରୂପିଣୀ ପରମା କଳା। ନାଦରୁ ଅର୍ଦ୍ଧବିନ୍ଦୁ ସଞ୍ଜାତ ହେଲେ। ସାର୍ଦ୍ଧ-ତ୍ରିତୟ (ସାଢ଼େ ତିନି) ବିନ୍ଦୁରୁ ସଂସାର ପବନଗ୍ରାସିଣୀ

ଭୁଜଙ୍ଗିମା କୁଳକୁଣ୍ଡଳିନୀ ନିର୍ଗୁଣା ସଗୁଣା ସନାତନୀ ବ୍ରହ୍ମରୂପା ଚୈତନ୍ୟରୂପା ସର୍ବଭୂତପ୍ରକାଶକାରିଣୀ ଆନନ୍ଦରୂପିଣୀ ଜ୍ୟୋତିର୍ମୟୀ ବ୍ରହ୍ମାନନ୍ଦ ପ୍ରକଟନ-କାରିଣୀ ଦେବୀ ଆବିର୍ଭୂତା ହେଲେ ।

ଶିଷ୍ୟ—ତା ହେଲେ କୁଣ୍ଡଳିନୀ ଶକ୍ତି ସଗୁଣା ନିର୍ଗୁଣା ଚୈତନ୍ୟରୂପିଣୀ ।

ଗୁରୁ—ହଁ ବତ୍ସ ! ସାରଦାତିଲକରେ କୁହାଯାଇଛି—

ଚୈତନ୍ୟଂ ସର୍ବ୍ବଭୂତାନାଂ ଶବ୍ଦବ୍ରହ୍ମେତି ମେ ମତମ୍
ତତ୍ ପ୍ରାପ୍ୟ କୁଣ୍ଡଳୀ ରୂପଂ ପ୍ରାଣିନାଂ ଦେହମଧ୍ୟଗଂ
ବର୍ଣ୍ଣାତ୍ମନାବିର୍ଭବତି ଗଦ୍ୟପଦ୍ୟାଦିଭେଦତଃ ।

ସେହି ଉଦ୍ୟମାନ ବିନ୍ଦୁ ରୂପ ଚୈତନ୍ୟକୁ ଣ୍ଡଳୀ ସ୍ୱରୂପ ଅର୍ଥାତ୍ ପ୍ରଣବାକାର, ପ୍ରାଣୀମାନଙ୍କର ଦେହ ମଧ୍ୟରେ ରହି ବର୍ଣ୍ଣରୂପରେ ପ୍ରକାଶିତ ହୁଅନ୍ତି । ମୋ ମତରେ ସର୍ବଭୂତରେ ଚୈତନ୍ୟ ହିଁ ଶବ୍ଦ-ବ୍ରହ୍ମ ।

ଶିଷ୍ୟ—ତା ହେଲେ ଚୈତନ୍ୟ ଶବ୍ଦବ୍ରହ୍ମ କୁଣ୍ଡଳିନୀ ପ୍ରଣବ, ଏ ସବୁଗୁଡ଼ିକ ଏକ ।

ଗୁରୁ—ହଁ ବତ୍ସ ! ପ୍ରପଞ୍ଚସାର ଚତୁର୍ଥ ପଟଳରେ କୁହାଯାଇଛି—

ଗତୋ ବୋ ବୀଜତାମେଷ ପ୍ରାଣୀଷ୍ୱେବ ବ୍ୟବସ୍ଥିତଃ
ବ୍ରହ୍ମାଣ୍ଡଂ ଗ୍ରସ୍ତମେତେନ ବ୍ୟାପ୍ତଂ ସ୍ଥାବରଜଙ୍ଗମଂ
ନାଦଃ ପ୍ରାଣଶ୍ଚ ଜୀବଶ୍ଚ ଘୋଷଶ୍ଚେତ୍ୟାଦି କଥ୍ୟତେ ॥

କାରଣ ରୂପ ଏହି ଓଙ୍କାର ସମସ୍ତ ପ୍ରାଣୀଙ୍କଠାରେ ସମ୍ୟକ୍ ଭାବରେ ଅବସ୍ଥିତ ଅଛନ୍ତି । ସ୍ଥାବର ଜଙ୍ଗମାତ୍ମକ ବ୍ରହ୍ମାଣ୍ଡ ଏହାଦ୍ୱାରା ବ୍ୟାପ୍ତ ଆଚ୍ଛନ୍ନ ପରିପୂର୍ଣ୍ଣ ହୋଇଅଛି । ନାଦ, ପ୍ରାଣ, ଜୀବ, ଘୋଷ ଇତ୍ୟାଦି ମଧ୍ୟ ଏହାଙ୍କର ନାମ ।

ଶିଷ୍ୟ – ନାଦବ୍ରହ୍ମ ଯେ ଜୀବାତ୍ମା ଏହା ଏଥିରୁ ସ୍ପଷ୍ଟ ଜଣା-ପଡ଼ୁଅଛି । ନାଦ, ପ୍ରାଣ, ଜୀବ, ଘୋଷ, ସବୁ ଏକା ଜିନିଷ । ତା ପରେ କୁହନ୍ତୁ ।

ଗୁରୁ—ଶୁଣ—

ଏଷ ପୁଂ-ସ୍ତ୍ରୀ-ନପୁଂସକୈର୍ଲିଙ୍ଗୈଶ୍ଚ ସନପୁଂସକୈଃ ।
ରେଫୋ ମାୟା ବୀଜମିତି ତ୍ରିଧା ସମଭିଧୀୟତେ ॥
ଶକ୍ତିଃ ଶ୍ରୀଃ ସନ୍ନତିଃ କାନ୍ତି-ର୍ଲକ୍ଷ୍ମୀ-ର୍ମେଧା ସରସ୍ୱତୀ ।
କ୍ଷାନ୍ତିଃ ପୁଷ୍ଟିଃ ସ୍ମୃତିଃ ଶାନ୍ତି-ରିତ୍ୟାଦ୍ୟୈଃ ସ୍ୱାର୍ଥବାଚକୈଃ ॥
ନାନା-ପ୍ରକାରତାଂ ପ୍ରାପ୍ତୈଃ ସ୍ୱୈଃ ସ୍ୱୈର୍ଭାବୈର୍ବିକଳ୍ପିତୈଃ ।
ତାମେତାଂ କୁଣ୍ଡଳୀତ୍ୟେକେ ସନ୍ତୋ ହୃଦୟଗାଂ ବିଦୁଃ ।

ସେ ପୁରୁଷ ସ୍ତ୍ରୀ ନପୁଂସକ ଲିଙ୍ଗଦ୍ୱାରା ନିବଦ୍ଧ ହୁଅନ୍ତି । ସେ ଅଗ୍ନି ମାୟା ବୀଜ ତ୍ରିଧା ହୋଇ ତ୍ରିଭୁବନ ବୋଲି କଥିତ ହୁଅନ୍ତି । ସେ ଶକ୍ତି ଶ୍ରୀ ସନ୍ନତି କାନ୍ତି ଲକ୍ଷ୍ମୀ ମେଧା ସରସ୍ୱତୀ କ୍ଷାନ୍ତି ପୁଷ୍ଟି ସ୍ମୃତି ଶାନ୍ତି ଇତ୍ୟାଦି ସ୍ୱାର୍ଥବାଚକ ଶବ୍ଦଦ୍ୱାରା ନାନାପ୍ରକାର ପ୍ରକାରଭାବ ପ୍ରାପ୍ତ ହୋଇ ନିଜ ନିଜ ଭାବରେ ବିଶେଷ ରୂପରେ କଳ୍ପିତା ହୁଅନ୍ତି । କେତେ କେତେ ଯୋଗୀ ପୁରୁଷ ଏହାଙ୍କୁ ହୃଦୟକମଳବିହାରିଣୀ କୁଣ୍ଡଳିନୀ ବୋଲି ଜାଣନ୍ତି ।

ଶିଷ୍ୟ—ତାହାହେଲେ ସେହି ଏକା ନାଦବ୍ରହ୍ମ ନାନା ପ୍ରକାର ବେଶରେ ନିଜକୁ ସଜାଇ ଲୀଳା କରୁଛନ୍ତି । ସତ୍ତ୍ୱଗୁଣର ଆଧିକ୍ୟରେ ବିଦ୍ୟାରୂପିଣୀ ସଂସାରକ୍ଷୟକାରିଣୀ ଏବଂ ତମୋଗୁଣର ଆଧିକ୍ୟରେ ସଂସାରଦାୟିନୀ । ଏଇଆ ତ ?

ଗୁରୁ—ହଁ ବତ୍ସ । ପୁଣି ଶୁଣ—

ସା ରୌତି ସତତଂ ଦେବୀ ଭୃଙ୍ଗୀ-ସଙ୍ଗୀତକ-ଧ୍ୱନିଃ ।
ଆକୃତିଂ ସ୍ୱେନ ଭାବେନ ପଣ୍ଡିତାଂ ବହୁଧା ବିଦୁଃ ॥

ସେହି ଦେଖ ସର୍ବଦା ଭ୍ରମରର ସଙ୍ଗୀତ ଧ୍ୱନିପରି ଧ୍ୱନି କରୁଛନ୍ତି, ସ୍ୱୀୟ ସ୍ୱରରେ ଆକୃତିକୁ ସଂହତ କରିଅଛନ୍ତି । ସେମାନେ ଜାଣନ୍ତୁ:—

କୁଣ୍ଡଳୀ ସର୍ବଥା ଜ୍ଞେୟା ସୁଷୁମ୍ନାନୁଗତୈବସା
ଚରାଚରସ୍ୟ ଜଗତୋ ବୀଜତ୍ୱାଦ୍ ମୂଳମେବ ତତ୍ ।
ମୂଳସ୍ୟ ବିନ୍ଦୁଯୋଗେନ ଶତାନନ୍ଦ ଭ୍ରମୁଦ୍ଭବଃ
ରେଫାନ୍ୱିତେକାରାକାରଯୋଗାଦୁତ୍ପତ୍ତିରେତୟୋଃ ॥

କୁଣ୍ଡଳୀ ସର୍ବ ପ୍ରକାରରେ ଶୁଷୁମ୍ନାର ଅନୁଗତା । ଚରାଚର ଜଗତର ବୀଜତ୍ୱ ହେତୁ ତାହା ମୂଳ ଓ ହେ ଶତାନନ୍ଦ ! ମୂଳର ବିନ୍ଦୁ ଯୋଗେ ଭ୍ରମର ଉଦ୍ଭବ । ତାହାଠାରୁ ରେଫ୍‌ଯୁକ୍ତ ଇକାର ଏବଂ ଆକାର ଯୋଗ ହେତୁ ଏହି ଉଭୟଙ୍କର ଉତ୍ପତ୍ତି ।

ଇକାରାଖ୍ୟୋଦ୍ଭବାଂସ୍ତେନ ହରିରିତ୍ୟେଷ ଶବ୍ଦ୍ୟତେ ।
ହରତ୍ୱମସ୍ୟ ତେନୈବ ସର୍ବାତ୍ମତ୍ୱଂ ମମାପିତ ॥
ଅସ୍ୟ ବିନ୍ଦୋଃ ସମୁତ୍ପତ୍ତ୍ୟା ତଦନ୍ତେ ସୋଽହମୁଚ୍ୟତେ ।
ସ ହଂକାରଃ ପୁମାନ୍ ପ୍ରୋକ୍ତଃ ସ ଇତି ପ୍ରକୃତିଃ ସ୍ମୃତା ॥
ଅଜପେୟଂ ମହାଶକ୍ତିସ୍ତଥା ଦକ୍ଷିଣବାମତଃ ।
ବିନ୍ଦୁ-ର୍ଦକ୍ଷିଣଭାଗସ୍ତୁ ବାମଭାଗୋ ବିସର୍ଗକଃ ॥
ତେନ ଦକ୍ଷିଣବାମାଖ୍ୟୌ ଭାଗୌ ପୁଂ-ସ୍ତ୍ରୀ ବିଶେଷିତୌ ।
ବିନ୍ଦୁଃ ପୁରୁଷ ଇତ୍ୟୁକ୍ତୋବିସର୍ଗଃ ପ୍ରକୃତିର୍ମତା ।
ପୁଂ ପ୍ରକୃତ୍ୟାତ୍ମକୋ ହଂସସ୍ତଦାତ୍ମକମିଦଂ ଜଗତ୍ ॥

ପ୍ରପଞ୍ଚସାର ଚତୁର୍ଥ ପଟଳ

ଇକାରର ଉତ୍ପତ୍ତି ହେତୁରୁ ହରି ବୋଲି କଥିତ ହୁଅନ୍ତି ଅର୍ଥାତ୍ ଇକାର ଏହି ନାଦରୁହିଁ ଉତ୍ପନ୍ନ ହୋଇଅଛି, ସେଥିପାଇଁ ଇକାରର ଉଦ୍ଭବ ସ୍ଥାନ ହେତୁରୁ ଏହାର ହରତ୍ୱ ସର୍ବାତ୍ମତ୍ୱ, ମୋର

ମଧ୍ୟ ହରତ୍ୱ ସର୍ବାତ୍ମତ୍ୱ । ଏହି ବିନ୍ଦୁର ସମ୍ୟକ୍ ଉତ୍ପତ୍ତି ହେତୁ ଶେଷରେ ସୋଽହମ୍ ବୋଲି କଥିତ ହୁଏ, ଅର୍ଥାତ୍ ହଂସ ଶେଷରେ ସୋଽହମ୍‌ରେ ପରିଣତ ହୁଏ । ସେହି 'ହଂ' କାରଟି ପୁରୁଷ ଏବଂ 'ସ' କାରଟି ପ୍ରକୃତି । ଏହି ଅଜପାଶକ୍ତି ଦକ୍ଷିଣ ଓ ବାମରେ ଅବସ୍ଥିତ । ବିନ୍ଦୁ ଦକ୍ଷିଣ ଭାଗ (ଂ) ବାମଭାଗ ବିସର୍ଗ (ଃ) । ସେହି କାରଣରୁ ସେହି ଦକ୍ଷିଣ ଓ ବାମଭାଗ ପୁରୁଷ ସ୍ତ୍ରୀଦ୍ୱାରା ପ୍ରଭେଦିତ ହୋଇଅଛି । ବିନ୍ଦୁ ପୁରୁଷ, ବିସର୍ଗ ପ୍ରକୃତି, ପୁରୁଷ ପ୍ରକୃତ୍ୟାତ୍ମକ "ହଂସଃ"—ଏହି ଜଗତ୍ ତଦାତ୍ମକ ଅର୍ଥାତ୍ ତତ୍ ସ୍ୱରୂପ, ପୁରୁଷର ସ୍ୱରୂପ ଜାଣିପାରି ସୋହଂ ଭାବ ପ୍ରାପ୍ତ ହୁଏ; ଏହି ନାଦ ବ୍ରହ୍ମର ସୋହଂ ପରମ ମନ୍ତ୍ର । ସକାର ଏବଂ ଇକାର କରି ପୂର୍ବପର ସନ୍ଧି କଲେ ପ୍ରଣବ ହୁଏ ।

ପୁଂରୂପଂ ସା ଖାଦିତ୍ୱା ସ୍ୱଂ ସୋଽହଂଭାବମୁପାଗତା ।
ସ ଏବ ପରମାଖ୍ୟୋଽୟଂ ମନୁରସ୍ୟ ମହାତ୍ମନଃ ॥
ସକାରଞ୍ଚ ହକାରଞ୍ଚ ଲୋପୟିତ୍ୱା ପ୍ରୟୋଜୟେତ୍ ।
ସନ୍ଧିର୍ବୈ ପୂର୍ବରୂପାଖ୍ୟଂ ତତୋଽସୌ ପ୍ରଣବୋ ଭବେତ୍ ॥
ତାରାଦ୍ ବିଭକ୍ତାଚ୍ଚରମାଂଶତଃ ସ୍ୟୁ—
ର୍ଭୂତାନି ଖାଦୀନ୍ୟଥ ମଧ୍ୟମାଂଶାତ୍ ॥
ଇନାଦି-ତେଜାଂସି ଚ ପୂର୍ବଭାଗାତ୍ ।
ଶବ୍ଦାଃ ସମସ୍ତାଃ ପ୍ରଭବନ୍ତି ଲୋକେ ॥

ଓଁକାରର ବିଭକ୍ତ ଚରମାଂଶରୁ ଆକାଶ ଆଦି ଭୂତଗଣ, ମଧ୍ୟମାଂଶରୁ ସୂର୍ଯ୍ୟ ଆଦି ତେଜସମୂହ ଏବଂ ପୂର୍ବଭାଗରୁ ଜଗତର ସମସ୍ତ ଶବ୍ଦସମୂହ ଉତ୍ପନ୍ନ ହୋଇଅଛି ।

ଶିଷ୍ୟ—ଅବତରଣକ୍ରମ ଓଁ ସୋହଂ ହଂସଃ—

ଗୁରୁ—ହଁ, ହଂସ ହ୍ରୀଁ ମୂଳ ମନ୍ତ୍ର ବୋଲି ପ୍ରପଞ୍ଚସାରରେ କୁହାଯାଇଛି ।

ମୂଳାର୍ଣ୍ଣମର୍ଣ୍ଣବିକୃତୈର୍ବିକୃତୈର୍ବିକୃତୈରପି
ତତ୍ପ୍ରଭିନ୍ନାନ ମନ୍ତ୍ରାଣି ପ୍ରୟୋଗାଂଶ୍ଚ ପୃଥଗ୍‌ବିଧାନ୍ ।
ବୈଦିକାନ୍ ତାନ୍ତ୍ରିକାଂଶ୍ଚୈବ ସର୍ବାନ୍ନିଥମୁବାଚ ହ ॥

ମୂଳବର୍ଣ୍ଣ ହେଲା ହଂସ, ତାହାର ବିକୃତ ଅକାର ଆଦି କ୍ଷକାରାନ୍ତ ବର୍ଣ୍ଣସମୂହ । ବିକୃତର ବିକୃତ ବର୍ଣ୍ଣସଂଯୋଗ ଆଦି । ତାହାଦ୍ୱାରା ପୃଥଗ୍ ବିଧ ପ୍ରଯୋଗସବୁ, ବୈଦିକ ତାନ୍ତ୍ରିକ ସମସ୍ତ ମନ୍ତ୍ରସମୂହ ଭେଦପ୍ରାପ୍ତ ହୁଏ ।

ପ୍ରଣବାଜ୍ଜାୟତେ ହଂସୋ ହଂସଃ ସୋଽହଂପରେ ଭବେତ୍ ।
ସୋଽହଂ ଜ୍ଞାନଂ ମହାଜ୍ଞାନଂ ଯୋଗିନାମପି ଦୁର୍ଲଭମ୍ ॥
ନିରନ୍ତରଂ ଭାବୟେଦ୍ ଯଃ ସ ଏବ ପରମଂ ଭବେତ୍ ।
ହଂ ପୁମାନ୍ ସ ସ୍ୱରୂପେଣ ଚନ୍ଦ୍ରେଣ ପ୍ରକୃତିସ୍ତୁ ସଃ ॥
ଏତଦ୍ଧଂସଂ ବିଜାନୀୟାତ୍ ସୂର୍ଯ୍ୟମଣ୍ଡଳଭେଦକମ୍ ॥
ବିପରୀତକ୍ରମେଣୈବ ସୋହଂ ଜ୍ଞାନଂ ଯଦା ଭବେତ୍ ।
ତଦୈବ ସୂର୍ଯ୍ୟଗଃ ସିଦ୍ଧୋ ବାସୁଦେବପ୍ରପୂଜିତଃ ॥

ରୁଦ୍ରଯାମଳ ।

ପ୍ରଣବରୁ ହଂସ ଉତ୍ପନ୍ନ ହୁଏ । ହଂସ ବିପରୀତ କ୍ରମରେ ସୋହଂ ହୋଇଥାଏ । ସୋହଂଜ୍ଞାନ ରୂପ ମହାଜ୍ଞାନ ଯୋଗୀଗଣଙ୍କର ମଧ୍ୟ ଦୁର୍ଲଭ; ଯେ ନିରନ୍ତର ଭାବନା କରନ୍ତି ସେଇ ପରଂବ୍ରହ୍ମ ହୁଅନ୍ତି । ସ୍ୱରୂପରେ "ହ" ପୁରୁଷ, ଆଉ ଚନ୍ଦ୍ର ସ୍ୱରୂପରେ ସଃ ପ୍ରକୃତି (ଭୋଗ୍ୟ ରୂପରେ)—ସୂର୍ଯ୍ୟମଣ୍ଡଳ-ଭେଦକ ଏହି ହଂସକୁ ବିଶେଷ ଭାବରେ ଜାଣିବେ । ବିପରୀତକ୍ରମରେ ଯେତେବେଳେ ସୋହଂଜ୍ଞାନ

ହୁଏ ସେହିକାଳରେ ସୂର୍ଯ୍ୟଗ ସିଦ୍ଧ ବାସୁଦେବଙ୍କ ପରି ଉତ୍ତମ ରୂପେ ପୂଜା ପାନ୍ତି ।

ବିଶ୍ୱବ୍ରହ୍ମାଣ୍ଡ ବ୍ୟାପି ହଂସ ହଂସ ସ୍ପନ୍ଦନ ଚାଲିଛି । ଏହି ହଂସ-ସ୍ପନ୍ଦନହିଁ ସ୍ଥୂଳ ବସ୍ତୁ ସବୁକୁ ସଞ୍ଜୀବିତ ରଖିଛନ୍ତି । ଏହି ହଂସ ହିଁ ଅର୍ଥାତ୍ ପ୍ରକୃତି-ପୁରୁଷ ହିଁ ଜଗଦାକାରରେ ପରିଣତ ହୋଇ-ଅଛନ୍ତି । ଅଣୁ ପରମାଣୁରେ ଏହି ସ୍ତ୍ରୀ ପୁରୁଷ ବର୍ତ୍ତମାନ, ପଶୁପକ୍ଷୀ ବୃକ୍ଷଲତାରେ ମଧ୍ୟ ଏହି ଆଦି ଦମ୍ପତି ବିହାର କରୁଅଛନ୍ତି ।

"ପୁରୁଷମାନଙ୍କର ବାମଭାଗ ସ୍ତ୍ରୀ ଏବଂ ସ୍ତ୍ରୀମାନଙ୍କର ଦକ୍ଷିଣ ଭାଗ ପୁରୁଷ । ପୁରୁଷଙ୍କର ବାମ କର୍ଣ୍ଣ ବାମ ଚକ୍ଷୁ ବାମ ନାସା ବାମ ବାହୁ ବାମ ପଦ ସ୍ତ୍ରୀ ଏବଂ ସ୍ତ୍ରୀଗଣଙ୍କର ମଧ୍ୟ ଦକ୍ଷିଣ ଭାଗସ୍ଥ ଚକ୍ଷୁ କର୍ଣ୍ଣ ପ୍ରଭୃତି ପୁରୁଷ । ନିଶ୍ୱାସ ପ୍ରତି ନାସାପୁଡ଼ାରେ ମେରୁଦଣ୍ଡ କରି ପ୍ରବାହିତ ହୁଏ । ପ୍ରଶ୍ୱାସ ବାମ ନାସାରେ ଇଡ଼ାରେ ପ୍ରବାହିତ ହେବା ସମୟରେ ମାତୃଶକ୍ତି ପ୍ରବୁଦ୍ଧ ହୁଏ ଏବଂ ପିଙ୍ଗଳା ଅର୍ଥାତ୍ ଦକ୍ଷିଣ ନାସାରେ ବହିବା ସମୟରେ ପିତୃଶକ୍ତି ଜାଗରିତ ହୋଇଥାଏ ।"

ବତ୍ସ, ଅଧିକ କଣ କହିବି । ଅଣୁ ପରମାଣୁ ସୁଦ୍ଧା ପୁରୁଷ-ପ୍ରକୃତିରେ ଗଠିତ, ସ୍ଥିତ ଏବଂ ଶେଷରେ ସେହିଥିରେ ହିଁ ଲୀନ ହେବେ । ଏକମାତ୍ର ନାଦବ୍ରହ୍ମ ଲୀଳା କରିବା ପାଇଁ ସ୍ଥୂଳ ସୂକ୍ଷ୍ମ ପ୍ରଭୃତି ନାନା ପ୍ରକାର ରୂପ ଧାରଣ କରିଛନ୍ତି, ବୁଝିପାରୁଛ ତ ?

ଶିଷ୍ୟ—ଶୁଣିଲି । ଭଲ ଭାବରେ ବୁଝିବା ବା ନାଦବ୍ରହ୍ମର ସ୍ୱରୂପ ଦର୍ଶନ କରିବା ତ ମୋର ସାଧ୍ୟର ଅତୀତ । କେବଳ ଆପଣଙ୍କର କୃପା, ଆପଣଙ୍କର ଅପାର କରୁଣା ବ୍ୟତୀତ ମୁଁ ସତ୍ୟ-ଦର୍ଶନରେ ସମର୍ଥ ନୁହେଁ । ହେ ପ୍ରଭୁ ! କୃପା କରନ୍ତୁ, ମୁଁ ଅତି ପତିତ, ଅଧମର ଅଧମ, ମୋତେ କୃପା କରି କୃପା କରନ୍ତୁ ।

ଗୁରୁ—ବତ୍ସ, ତୁମେ ଚିନ୍ତା କର ନାହିଁ । ତୁମକୁ ଯେତେବେଳେ ମୁଁ ଗ୍ରହଣ କରିଛି, ତୁମେ ନିଶ୍ଚିନ୍ତ ରୁହ । ତା ପରେ ଶୁଣ—

ଅଥର୍ବବେଦସଂହିତାରେ କୁହାଯାଇଛି—

ଧୀଷ୍ଣ ବା ଯେ ଅନୟନ୍ ବାଗ୍ରେ ଅଗ୍ରଂ ମନସା ବା ଯେଽବଦନ୍ନୃତାନି ତୃତୀୟେନ ବ୍ରହ୍ମଣା ବାବୃଧାନାସ୍ତୁରୀୟେଣାମନ୍ୱତ ନାମ ଧେନୋଃ ॥

ଭାଷ୍ୟାନୁବାଦ—

ମନୋଗତ ଭାବର ବିବକ୍ଷୁ ପୁରୁଷର କିପରି କେଉଁ କ୍ରମରେ ଶବ୍ଦର ଅଭିବ୍ୟକ୍ତି ହୁଏ ? ଅଭିଳଷିତ ଅର୍ଥରେ ବିବକ୍ଷୁ ପୁରୁଷର ତଦ୍‌ବାଚକ ଶବ୍ଦ ପ୍ରୟୋଗ ପାଇଁ ଯେଉଁ ଇଚ୍ଛା ହୁଏ ସେହି ଇଚ୍ଛାରୁ ପ୍ରଯତ୍ନର ଉତ୍ପତ୍ତି ହୋଇଥାଏ । ସେହି ପ୍ରଯତ୍ନଠାରୁ ମୂଳାଧାରରେ ପ୍ରାଣବାୟୁର ପରିସ୍ପନ୍ଦ ଜନ୍ମେ । ପ୍ରାଣବାୟୁର ସେହି ପରିସ୍ପନ୍ଦରୁ ସମସ୍ତ ଶବ୍ଦର ମୂଳ କାରଣଭୂତ ନିସ୍ପନ୍ଦ ସୂକ୍ଷ୍ମ ପରାବାକ୍ ଆବିର୍ଭୂତା ହୁଅନ୍ତି । ମୂଳାଧାରରୁ ସେ ଯେତେବେଳେ ନାଭିଦେଶ ପ୍ରାପ୍ତ ହୁଅନ୍ତି ସେତେବେଳେ ତାଙ୍କର ସାମାନ୍ୟ ଜ୍ଞାନରୂପା 'ପଶ୍ୟନ୍ତୀ' ଏହି ନାମରେ ନାମିତ ହୁଅନ୍ତି । ପଶ୍ୟନ୍ତୀ ବାକ୍ ଯେତେବେଳେ ହୃଦୟ ଦେଶ ପ୍ରାପ୍ତ ହୁଅନ୍ତି ସେତେବେଳେ ତାଙ୍କର ମଧ୍ୟମା ନାମ ହୋଇଥାଏ । ଅର୍ଥ-ବିଶେଷରେ ନିଶ୍ଚୟ ବୁଦ୍ଧିଯୁକ୍ତ ମଧ୍ୟ ଦେଶରେ ଅବସ୍ଥାନ କରୁଥିବାରୁ ସେ ମଧ୍ୟମା ନାମରେ ଅଭିହିତା ହୁଅନ୍ତି । ଏହି ମଧ୍ୟମା ବାକ୍ ଯେତେବେଳେ କଣ୍ଠ ତାଳୁ ଆଦି ସ୍ଥାନରେ ବର୍ଣ୍ଣ ରୂପରେ ଅଭିବ୍ୟକ୍ତ ହୁଅନ୍ତି ସେତେବେଳେ ତାଙ୍କୁ ବୈଖରୀ ବୋଲି କୁହାଯାଏ । ବୈଖରୀ ଶବ୍ଦହିଁ ଅର୍ଥପ୍ରତ୍ୟାୟନକ୍ଷମ; ଏହାଦ୍ୱାରା ନିଜ ଜ୍ଞାନ ନିଜ ମନୋଗତ ଭାବ ଅନ୍ୟକୁ ଜଣାଇ ହୁଏ । ବୈଖରୀ, ମଧ୍ୟମା, ପଶ୍ୟନ୍ତୀ, ପରା—

ଏମାନେ ଯଥାକ୍ରମେ ଶବ୍ଦବ୍ରହ୍ମର ସ୍ଥୂଳ ସୂକ୍ଷ୍ମ ସୂକ୍ଷ୍ମତର ସୂକ୍ଷ୍ମତମ ଅବସ୍ଥା ବା ପଦ । ସ୍ଥୂଳରୁ ସୂକ୍ଷ୍ମକୁ ଯିବାହିଁ ଯୋଗ ବା ସମାଧି ।

"ଜଗଦାକାରରେ ବିବର୍ତ୍ତିତ ପରମାତ୍ମାଙ୍କର ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ତୁରୀୟ—ଏହି ଚତୁର୍ବିଧ ଅବସ୍ଥା ହିଁ ଯଥାକ୍ରମେ ଶବ୍ଦ-ବ୍ରହ୍ମର ବୈଖରୀ ଆଦି ଚତୁର୍ବିଧ ଅବସ୍ଥା ।"

"ମନସ୍ତତ୍ ପୂର୍ବଂ ବାଚୋ ଯୁଜ୍ୟତେ ମନୋ ହି ପୂର୍ବଂ ବାଚୋ ଯଦ୍ଧି ମନସାଭିଗଚ୍ଛତି ତଦ୍‌ବାଚା ବଦତି ।" ତାଣ୍ଡ୍ୟମହାବ୍ରାହ୍ମଣ ।"

ଅର୍ଥାତ୍ ମନ ଯାହା ଉପଲବ୍‌ଧି କରେ ବୈଖରୀ ଶବ୍ଦ ଦ୍ୱାରା ତାହା ହିଁ ଅଭିବ୍ୟକ୍ତ ହୁଏ । କେହି ହେଲେ ମନର ଅବିଷୟୀକୃତ ବିଷୟ କହି ପାରିବେ ନାହିଁ, ବୈଖରୀ ବାକ୍ (ମନୁଷ୍ୟ ଯାହା ଦ୍ୱାରା ମନୋଭାବ ବ୍ୟକ୍ତ କରେ) ମନର ବ୍ୟକ୍ତ ଅବସ୍ଥା ।

ଶିଷ୍ୟ—ଏହି ବାକ୍ୟ ସମ୍ବନ୍ଧରେ ଅନ୍ୟ ଶ୍ରୁତି ଅଛି କି ?

ଗୁରୁ— ହଁ ଅଛି ।

ଚତ୍ୱାରି ବାକ୍ ପରିମିତା ପଦାନି ତାନି ବିଦୁର୍ବ୍ରାହ୍ମଣା ଯେ ମନୀଷିଣଃ
ଗୁହା ତ୍ରୀଣି ନିହିତା ନେଙ୍ଗୟନ୍ତି ତୁରୀୟଂ ବାଚୋ ମନୁଷ୍ୟା ବଦନ୍ତି ॥

ଋଗ୍‌ବେଦ ୧ । ୧୬୪ । ୪୫

ଶ୍ରୀମଦ୍‌ଭାଗବତରେ (୧୧ । ୧୨) ଶ୍ରୀଧରଟୀକାଧୃତ

ପରା ପଶ୍ୟନ୍ତୀ ମଧ୍ୟମା ବୈଖରୀ—ଏହି ଚତୁରବସ୍ଥାବିଶିଷ୍ଟା ବାକ୍‌କୁ ଜ୍ଞାନୀ ପ୍ରଶସ୍ତମନା ଯୋଗିଗଣ ବିଦିତ ଅଛନ୍ତି । ତିନୋଟି ଗୁହାରେ ଶରୀରରେ ମୂଳାଧାର ନାଭି ହୃଦୟରେ ନିହିତ ଅଛି ତାହା ଜାଣନ୍ତି । ଚତୁର୍ଥୀ ଅର୍ଥାତ୍ ବୈଖରୀ ବାକ୍ ମାତ୍ର ସାଧାରଣ ମନୁଷ୍ୟମାନେ କହିଥାନ୍ତି । ଅର୍ଥାତ୍ ମନୁଷ୍ୟ ମୁଖରେ ବର୍ତ୍ତମାନ ଅର୍ଥବୋଧକ ଶବ୍ଦ ହୁଏ ।

ଅଭିଯୁକ୍ତ ଶ୍ଳୋକ—

ଯା ସା ମିତ୍ରାବରୁଣସଦନାଦୁଚ୍ଚରନ୍ତୀ ତ୍ରିଷଷ୍ଟିଂ,
ବର୍ଣ୍ଣାନନ୍ତଃପ୍ରକଟକରଣୈଃ ପ୍ରାଣସଙ୍ଗାତ୍ ପ୍ରସୂତେ ।
ତାଂ ପଶ୍ୟନ୍ତୀଂ ପ୍ରଥମମୁଦିତାଂ ମଧ୍ୟମାଂ ବୁଦ୍ଧିସଂସ୍ଥାଂ,
ବାଚଂ ବକ୍ତ୍ରେ କରଣବିଶଦାଂ ବୈଖରୀଞ୍ଚ ପ୍ରପଦ୍ୟେ ॥

ଯେଉଁ ଭାରତୀ ଅଗ୍ନିସୋମ ସ୍ଥାନରୁ ଉଦ୍ଭୂତା ହୁଅନ୍ତି ଏବଂ ତ୍ରିଷଷ୍ଟି ବର୍ଣ୍ଣକୁ ଉତ୍ପନ୍ନ କରନ୍ତି ସେହି ଭାରତୀଙ୍କୁ ଭଜନା କରୁଅଛି । ଅ ଇ ଉ ବର୍ଣ୍ଣ—ହ୍ରସ୍ୱ ଦୀର୍ଘ ପ୍ଳୁତଭେଦରେ ତ୍ରିବିଧା—ନବ । ଋକାର ପ୍ଳୁତହୀନ ଦୁଇପ୍ରକାର, ଳ କାର ଦୀର୍ଘହୀନ ଦୁଇପ୍ରକାର । ଏ ଐ ଓ ଔ ଏମାନେ ହ୍ରସ୍ୱହୀନ ପ୍ଳୁତ ଓ ଦୀର୍ଘଅଷ୍ଟ, ଏକବିଂଶତି ପ୍ରକାର ସ୍ୱର । କ ଆଦି ମ ପର୍ଯ୍ୟନ୍ତ ପଞ୍ଚବିଂଶତି ସ୍ପର୍ଶ ବର୍ଣ୍ଣ, ଯ ର ଲ ବ ଶ ଷ ସ ହ ଆଠଟି ଅନ୍ତଃସ୍ଥ ଓ ଊଷ୍ମବର୍ଣ୍ଣ, ପାଞ୍ଚଟି ଅନୁନାସିକ, ଅନୁସ୍ୱାର ବିସର୍ଗ ଜିହ୍ୱାମୂଳୀୟ ଉପଧ୍ମାନୀୟ—ଏହି ତ୍ରି-ଷଷ୍ଟି । ବାୟୁ-ସଙ୍ଗଜ ଏହି ବର୍ଣ୍ଣଗୁଡ଼ିକ ପ୍ରତ୍ୟକ୍ଷରୂପରେ ଇନ୍ଦ୍ରିୟଦ୍ୱାରା ଅନ୍ତର ମଧ୍ୟରେ ଦୃଷ୍ଟ ହୁଏ, କିନ୍ତୁ ଉଚ୍ଚାରିତ ହୁଏ ନାହିଁ, ସେଇଥି ପାଇଁ ପଶ୍ୟନ୍ତୀ ପ୍ରଥମ ଉତ୍ପନ୍ନା, ବୁଦ୍ଧି ସଂସ୍ଥା ଅର୍ଥାତ୍ ଉଚ୍ଚାରଣ କରିବି ଏହି ବିଚାରଯୁକ୍ତା ମଧ୍ୟମା ଏବଂ ବୈଖରୀ ମୁହଁରେ ଅବସ୍ଥିତା ।

ଶିଷ୍ୟ—ବାକ୍ୟର ଚାରୋଟି ଅବସ୍ଥା—ପରା ପଶ୍ୟନ୍ତୀ ମଧ୍ୟମା ବୈଖରୀ । ପରା ମୂଳାଧାରରେ ନିସ୍ପନ୍ଦା ବାକ୍, ନାଭି ଦେଶରେ ପଶ୍ୟନ୍ତୀ, ହୃଦୟରେ ମଧ୍ୟମା ଏବଂ କଣ୍ଠ ତାଳୁ ଆଦି ଦ୍ୱାରା ଉଚ୍ଚାରିତ ବାକ୍ ବୈଖରୀ, ଏଇଆ ତ ?

ଯୋଗଶିଖୋପନିଷଦ୍‌ରେ କୁହାଯାଇଅଛି—

ମୂଳାଧାରଗତା ଶକ୍ତି ସ୍ୱାଧାର ବିନ୍ଦୁରୂପିଣୀ ।
ତସ୍ୟାମୁତ୍ପଦ୍ୟତେ ନାଦଃ ସୂକ୍ଷ୍ମବୀଜାଦିବାଙ୍କୁରଃ ॥
ତାଂ ପଶ୍ୟନ୍ତୀଂ ବିଦୁର୍ବିଶ୍ୱଂ ଯସ୍ୟା ପଶ୍ୟନ୍ତି ଯୋଗିନଃ ॥
ହୃଦୟେ ବ୍ୟଜ୍ୟତେ ଘୋଷୋ ଗର୍ଜତ୍ପର୍ଜନ୍ୟସନ୍ନିଭଃ ।
ତତ୍ରସ୍ଥିତା ସୁରେଶାନ ମଧ୍ୟମେତ୍ୟଭିଧୀୟତେ ॥
ପ୍ରାଣେନ ଚ ସ୍ୱରାଖ୍ୟେନ ପ୍ରଥିତା ବୈଖରୀ ପୁନଃ ।
ଶାଖାପଲ୍ଲବରୂପେଣ ତାଲ୍ୱାଦିସ୍ଥାନଘଟ୍ଟନାତ୍ ॥
ଅକାରାଦି-କ୍ଷକାରାନ୍ତାନ୍ୟକ୍ଷରାଣି ସମୀରୟେତ୍ ।
ଅକ୍ଷରେଭ୍ୟଃ ପଦାନି ସ୍ୟୁଃ ପଦେଭ୍ୟୋ ବାକ୍ୟସମ୍ଭବଃ ॥
ସର୍ବେ ବାକ୍ୟାତ୍ମକା ମନ୍ତ୍ରା ବେଦଶାସ୍ତ୍ରାଣି କୃତ୍ସ୍ନଶଃ ।
ପୁରାଣାନି ଚ କାବ୍ୟାନି ଭାଷାଶ୍ଚ ବିବିଧା ଅପି ॥
ସପ୍ତ ସ୍ୱରାଶ୍ଚ ଗାଥାଶ୍ଚ ସର୍ବେ ନାଦସମୁଦ୍ଭବାଃ ।
ଏଷା ସରସ୍ୱତୀ ଦେବୀ ସର୍ବଭୂତଗୁହାଶ୍ରୟା ॥

ଅର୍ଥ—ମୂଳାଧାରଗତା କୁଣ୍ଡଳିନୀ ଶକ୍ତି ବିନ୍ଦୁ ରୂପିଣୀ । ଏହି କୁଣ୍ଡଳିନୀ ଶକ୍ତି ସ୍ୱ ଅର୍ଥାତ୍ ଆତ୍ମାର ଆଧାରଭୂତା (ଜୀବାତ୍ମା ଏହାଙ୍କୁ ଆଶ୍ରୟ କରି ଅବସ୍ଥିତ କରୁଅଛନ୍ତି) । ସୂକ୍ଷ୍ମବୀଜରୁ ଅଙ୍କୁରପରି ଏହି କୁଣ୍ଡଳିନୀ ରୂପା ସୂକ୍ଷ୍ମ ପ୍ରାଣଶକ୍ତିରୁ ହିଁ ନାଦର ଉତ୍ପତ୍ତି ହୋଇଥାଏ । ଯୋଗୀଗଣ ଏହାଦ୍ୱାରା (ନାଦର ଏହି ଅଙ୍କୁର ଅବସ୍ଥା ଦ୍ୱାରା) ନାଦର ବିଶ୍ୱ ଅବସ୍ଥା ଦର୍ଶନ କରିଥା'ନ୍ତି । ଏଇଥିପାଇଁ ନାଦର ଏହି ଅବସ୍ଥାକୁ ପଶ୍ୟନ୍ତୀ କୁହାଯାଏ । ତା ପରେ ନାଦ ହୃଦୟରେ ଉପସ୍ଥିତ ହେଲେ ମେଘ ଗର୍ଜନ ପରି ଗୁରୁ ଗୁରୁ ଧ୍ୱନି ପ୍ରକାଶ ହୁଏ । ତାହାପରେ ଏହି ନାଦ ଯେତେବେଳେ ପ୍ରାଣବାୟୁ ଯୋଗେ (କଣ୍ଠରୁ) ସ୍ୱର (ଶବ୍ଦ) ନାମ ଧରି ବହିର୍ଗତ ହୁଏ ସେତେବେଳେ ତାକୁ ବୈଖରୀ (ପ୍ରଖର ବା ସୁସ୍ପଷ୍ଟ ଶବ୍ଦ) କୁହାଯାଏ । ଏହି ବୈଖରୀ

ଶବ୍ଦଟି କଣ୍ଠ ତାଳୁ ମୂର୍ଦ୍ଧାଦ ସ୍ଥାନଗୁଡ଼ିକୁ ଆଘାତ କରି ଶାଖା ପଲ୍ଲବ-ରୂପେ, ଅକାରରୁ କ୍ଷକାର ପର୍ଯ୍ୟନ୍ତ ଅକ୍ଷର ରୂପରେ ଅଭିବ୍ୟକ୍ତ ହୁଏ । ଅକ୍ଷରସମୂହର ସମବାୟରୁ ପଦ ଏବଂ ପଦସମୂହର ସମବାୟରୁ ବାକ୍ୟ ପ୍ରକାଶିତ ହୁଏ । ସମସ୍ତ ମନ୍ତ୍ର, ସମଗ୍ର ବେଦ ଶାସ୍ତ୍ର ପୁରାଣ ଓ ବାକ୍ୟସମୂହ ଏବଂ ବିବିଧ ଭାଷା, ସପ୍ତସ୍ୱର-ସମନ୍ୱିତ ଗୀତସମୂହ, ଏ ସମସ୍ତ ନାଦରୁ ଉତ୍ପନ୍ନ ହୁଏ । ସୁତରାଂ ଏହି ସରସ୍ୱତୀ (ବାକ୍) ଦେବୀ ମୂଳତଃ ସର୍ବଭୂତର ମୂଳାଧାର ସ୍ୱରୂପ ଗୁହାକୁ ଆଶ୍ରୟ କରିଅଛନ୍ତି ।

ଯୋଗବାଣୀ (ଶ୍ରୀ ୧୦୮ ଶଙ୍କର ପୁରୁଷୋତ୍ତମ ତୀର୍ଥସ୍ୱାମୀକୃତ)

ଶିଷ୍ୟ—ଆଜ୍ଞା, ନାଦ ଯେ ସ୍ୱୟଂ ଭଗବାନ—କୌଣସି ଶାସ୍ତ୍ରରେ ଏକଥା ଭଗବାନ୍ ସୁସ୍ପଷ୍ଟ କହିଛନ୍ତି ?

ଗୁରୁ—ହଁ, ଶୁଣ । ଶ୍ରୀମଦ୍ଭାଗବତରେ ଶ୍ରୀଭଗବାନ୍ କହିଛନ୍ତି—

ଶ୍ରୀ ଭଗବାନୁବାଚ

ସ ଏଷ ଜୀବୋ ବିବରପ୍ରସୂତିଃ
ପ୍ରାଣେନ ଘୋଷେଣ ଗୁହାଂ ପ୍ରବିଷ୍ଟଃ ।
ମନୋମୟଂ ସୂକ୍ଷ୍ମମୁପେତ୍ୟ ରୂପଂ
ମାତ୍ରା ସ୍ୱରୋ ବର୍ଣ୍ଣ ଇତି ସ୍ଥବିଷ୍ଠଃ ॥ ୧୭ ॥
ଯଥାନଳଃ ଖେଽନିଲବନ୍ଧୁରୁଷ୍ମା
ବଲେନ ଦାରୁଣ୍ୟଧି ମଥ୍ୟମାନଃ ।
ଅଣୁଃ ପ୍ରଜାତୋ ହବିଷା ସମିଧ୍ୟତେ
ତଥୈବ ମେ ବ୍ୟକ୍ତିରିୟଂ ହି ବାଣୀ ।୧୮॥

୧୧ ସ୍କନ୍ଧ ୧୨ ଅଃ

ପ୍ରିୟ ଉଦ୍ଧବ ! ସମସ୍ତଙ୍କର ଜୀବନଦାତା ପରମାତ୍ମା ମୂଳାଧାରରନ୍ଧ୍ର ଚକ୍ରରେ ହିଁ କ୍ରମଶଃ ପ୍ରକଟ ହୋଇଥାନ୍ତି । ପ୍ରଥମେ ଅନାହତ ନାଦ

ସ୍ୱରୂପ ପରାବାଣୀ ନାମକ ପ୍ରାଣ ସହିତ ମୂଳାଧାରଚକ୍ରରେ ପ୍ରବେଶ କରନ୍ତି, ତା ପରେ ମଣିପୁର ଚକ୍ରରେ ନାଭିକୁ ଆସି ପଶ୍ୟନ୍ତୀ ବାଣୀ-ରୂପ ମନୋମୟ ସୂକ୍ଷ୍ମରୂପ ଧାରଣ କରନ୍ତି । ତା ପରେ ହୃଦୟ-ଦେଶସ୍ଥିତ ଚକ୍ରକୁ ଆସି ମଧ୍ୟମା ବାଣୀରୂପେ ବ୍ୟକ୍ତ ହୁଅନ୍ତି । କ୍ରମଶଃ ମୁଖକୁ ଆସି ହ୍ରସ୍ୱ ଦୀର୍ଘ ଆଦି ମାତ୍ରା ଉଦାତ୍ତ-ଅନୁଦାତ୍ତ ଆଦି ସ୍ୱର କ କାର ଆଦି ବର୍ଣ୍ଣରୂପ ସ୍ଥୂଳ ବୈଖରୀ ଶବ୍ଦ ରୂପରେ ପରିଣତ ହୁଅନ୍ତି । ଅଗ୍ନି ଆକାଶରେ ଉଷ୍ମା ବା ଅବ୍ୟକ୍ତ ରୂପରେ ଅବସ୍ଥିତ ଥାନ୍ତି । ସେ ସମୟରେ ବଳପୂର୍ବକ ଅରଣିକାଷ୍ଠ ମନ୍ଥନ କରାଯାଏ । ସେତେବେଳେ ବାୟୁ ସହାୟତାରେ ଅତି ସୂକ୍ଷ୍ମ ରୂପରେ ପ୍ରକାଶିତ ହୁଅନ୍ତି । ସେଥିରେ ଘୃତ ପ୍ରଦାନଦ୍ୱାରା ବର୍ଦ୍ଧିତ ହୋଇ ପ୍ରଚଣ୍ଡ ରୂପ ଧାରଣ କରନ୍ତି । ସେହିପରି ମୁଁ ଶବ୍ଦବ୍ରହ୍ମ ରୂପରେ ପରା ପଶ୍ୟନ୍ତୀ ମଧ୍ୟମା ବୈଖରୀ ଶବ୍ଦ ରୂପରେ ପ୍ରକଟ ହୁଏ ।

ବେଦା ବ୍ରହ୍ମାତ୍ମବିଷୟାସ୍ତ୍ରିକାଣ୍ଡବିଷୟା ଇମେ ।
ପରୋକ୍ଷବାଦା ଋଷୟଃ ପରୋକ୍ଷଂ ମମ ଚ ପ୍ରିୟମ୍ ॥
ଶବ୍ଦବ୍ରହ୍ମ ସୁଦୁର୍ବୋଧଂ ପ୍ରାଣେନ୍ଦ୍ରିୟମନୋମୟମ୍ ।
ଅନନ୍ତପାରଂ ଗମ୍ଭୀରଂ ଦୁର୍ବିଗାହ୍ୟଂ ସମୁଦ୍ରବତ୍ ॥
ମୟୋପବୃଂହିତଂ ଭୂମ୍ନା ବ୍ରହ୍ମଣାନନ୍ତଶକ୍ତିନା ।
ଭୂତେଷୁ ଘୋଷରୂପେଣ ବିସେଷ୍ୱୂର୍ଣ୍ଣେବ ଲକ୍ଷ୍ୟତେ ॥
ଯଥୋର୍ଣ୍ଣନାଭିର୍ହୃଦୟାଦୂର୍ଣ୍ଣାମୁଦ୍ୱମତେ ମୁଖାତ୍ ।
ଆକାଶାଦ୍ ଘୋଷବାନ୍ ପ୍ରାଣୋ ମନସା ସ୍ପର୍ଶରୂପିଣା ॥
ଛନ୍ଦୋମୟୋଽମୃତମୟଃ ସହସ୍ର ପଦବୀଂ ପ୍ରଭୁଃ ।
ଓଁକାରଦ୍ୱ୍ୟଞ୍ଜିତ-ସ୍ପର୍ଶ ସ୍ୱରୋଷ୍ମାନ୍ତସ୍ଥ ଭୂଷିତାମ୍ ॥
ବିଚିତ୍ରଭାଷାବିତତାଂ ଛନ୍ଦୋଭିଶ୍ଚତୁରୁତ୍ତରୈଃ ।
ଅନନ୍ତପାରାଂ ବୃହତୀଂ ସୃଜତ୍ୟାକ୍ଷିପତେ ସ୍ୱୟମ୍ ॥

ଶ୍ରୀମଦ୍ଭାଗବତ ୧୧ ସ୍କନ୍ଧ ୨୧ ଅଃ

ହେ ଉଦ୍ଧବ ! ବେଦ-କର୍ମ ଉପାସନା ଓ ଜ୍ଞାନ—ଏହି ତ୍ରିକାଣ୍ଡାତ୍ମକ । ଏହି ତିନି କାଣ୍ଡଦ୍ୱାରା ପ୍ରତିପାଦିତ ବିଷୟ ବ୍ରହ୍ମ ଏବଂ ଆତ୍ମାର ଏକତା । ସମସ୍ତ ମନ୍ତ୍ର ଏବଂ ମନ୍ତ୍ରଦ୍ରଷ୍ଟା ଋଷିମାନେ ଏହା ଖୋଲଖୋଲି କହିନାହାନ୍ତି, ପରୋକ୍ଷଭାବରେ କହିଛନ୍ତି ଏବଂ ଏହାକୁ ଗୁପ୍ତଭାବରେ ରଖିବା ମୋର ମଧ୍ୟ ଅଭିପ୍ରାୟ । ସମସ୍ତେ ଏହାର ଅଧିକାରୀ ନୁହନ୍ତି ; ଯାହାର ଅନ୍ତଃକରଣ ଶୁଦ୍ଧ, ସେହି କେବଳ ଏ କଥା ବୁଝିପାରିବ । ବେଦର ନାମ ଶବ୍ଦବ୍ରହ୍ମ, ତାହା ମୋର ପ୍ରତିମୂର୍ତ୍ତି, ସେଥିପାଇଁ ତାହାର ରହସ୍ୟ ଅବଗତ ହେବା ଅତ୍ୟନ୍ତ କଠିନ । ଏହି ଶବ୍ଦବ୍ରହ୍ମ ପରା ପଶ୍ୟନ୍ତୀ ମଧ୍ୟମା ଓ ବାଣୀ ରୂପେ ପ୍ରାଣ ମନ ଆଉ ଇନ୍ଦ୍ରିୟମୟ, ସମୁଦ୍ର ପରି ସୀମାରହିତ ଓ ଗଭୀର । ଏହା ବୁଝିବା ଅତ୍ୟନ୍ତ କଷ୍ଟକର । ସାଧାରଣ ପ୍ରାଣୀଗଣ ତାହାର ଏହି ରୂପ ଜାଣନ୍ତି ନାହିଁ, କେବଳ ବୈଖରୀ ବାଣୀରୂପ ବେଦକୁହିଁ ଜାଣିଛନ୍ତି । ହେ ଉଦ୍ଧବ ! ମୁଁ ଅନନ୍ତଶକ୍ତିସମ୍ପନ୍ନ ଏବଂ ସ୍ୱୟଂ ଅନନ୍ତ ବ୍ରହ୍ମସ୍ୱରୂପ, ମୋ କର୍ତ୍ତୃକ ଅଧିଷ୍ଠିତ ମୃଣାଳତନ୍ତୁ ପରି ଅତି ସୂକ୍ଷ୍ମ ମୋର ରୂପ ପ୍ରାଣୀଗଣଙ୍କର ଅନ୍ତଃକରଣରେ ଅନାହତ ନାଦ ରୂପରେ ଲକ୍ଷିତ ହୁଏ । ଭଗବାନ୍ ହିରଣ୍ୟଗର୍ଭ ସ୍ୱୟଂ ବେଦମୂର୍ତ୍ତି ଏବଂ ଅମୃତମୟ । ତାଙ୍କର ଉପାଧି ପ୍ରାଣ,—ଆଉ ସ୍ୱୟଂ ଅନାହତ ଶବ୍ଦ ଦ୍ୱାରାହିଁ ଏହାର ଅଭିବ୍ୟକ୍ତି । ଯେପରି ଉର୍ଣ୍ଣନାଭି ଆପଣା ହୃଦୟରୁ ମୁଖଦ୍ୱାରା ଜାଲ ଉଦ୍‌ଗୀରଣ ପୂର୍ବକ ପୁନରାୟ ଗ୍ରହଣ କରେ, ସେହିପରି ସ୍ପର୍ଶ ଆଦି ବାଣୀ ସବୁ ସଙ୍କଳ୍ପକାରକ ମନ ରୂପ ନିମିତ୍ତ କାରଣଦ୍ୱାରା ହୃଦୟ-ଆକାଶରୁ ଅନନ୍ତ ଅପାର ବୈଖରୀ ବେଦବାଣୀ ସ୍ୱୟଂ ପ୍ରକଟ କରନ୍ତି, ପୁଣି ଆପଣା ଭିତରେ ଲୀଳା କରନ୍ତି । ଏହି ବାଣୀ ହୃଦ୍‌ଗତ ଓଁକାର ଦ୍ୱାରା ଅଭିବ୍ୟକ୍ତ ସ୍ପର୍ଶ (କ ରୁ ମ ପର୍ଯ୍ୟନ୍ତ) ଅକାର ଆଦି ଷୋଡ଼ଶ ସ୍ୱର ଉଷ୍ମବର୍ଣ୍ଣ (ଶ ଷ

ସ ହ) ଅନ୍ତଃସ୍ଥ 'ଯ ର ଲ ବ' ଏହିପରି ବିଚିତ୍ର ବୈଦିକ ଲୌକିକ ଭାଷାରେ ବିସ୍ତୃତ ।

ଶିଷ୍ୟ—ତାହା ହେଲେ ଶବ୍ଦବ୍ରହ୍ମର ମୂର୍ତ୍ତି ହେଲା ବେଦ ଏବଂ ତାହାର ପରା ପଶ୍ୟନ୍ତୀ ମଧ୍ୟମା ରୂପ ଅବସ୍ଥାତ୍ରୟ ସାଧାରଣ ଲୋକ-ମାନେ ଜାଣନ୍ତି ନାହିଁ, କେବଳ ବୈଖରୀ ବାଣୀରୂପକ ବେଦକୁ ଜାଣନ୍ତି ।

ଗୁରୁ—ହଁ, ରାଧାତନ୍ତ୍ରରେ ଅଛି—

ପରବ୍ରହ୍ମଣି ବେଦେ ଚ ଭେଦୋ ନାସ୍ତି ବରାନନେ
ଯୋ ବେଦଃ ସ ପରଂବ୍ରହ୍ମ ତଦେବ ବେଦରୂପଧୃକ୍ ॥

ହେ ବରାନନେ ! ପରବ୍ରହ୍ମ ଓ ବେଦରେ ଭେଦ ନାହିଁ । ଯେ ବେଦ ସେହି ପରବ୍ରହ୍ମ, ତାହା ହିଁ ବେଦରୂପଧାରୀ ।

ଅକ୍ଷରଂ ନିର୍ଗୁଣଂ ବ୍ରହ୍ମ ପରଂ ବ୍ରହ୍ମେତି ଗୀୟତେ
ସଗୁଣଂ ସ୍ୟାତ୍ ସଦା ବ୍ରହ୍ମ ଶବ୍ଦବ୍ରହ୍ମ ତଦୁଚ୍ୟତେ ॥ ରାଧାତନ୍ତ୍ର ।

ଅକ୍ଷର ହେଲେ ନିର୍ଗୁଣ ବ୍ରହ୍ମ, ସେ ପରଂବ୍ରହ୍ମ ବୋଲି କଥିତ ହୁଅନ୍ତି ଏବଂ ବ୍ରହ୍ମ ସଗୁଣ ରୂପ ପରିଗ୍ରହ କଲେ ଶବ୍ଦବ୍ରହ୍ମ ନାମରେ କଥିତ ହୋଇଥାନ୍ତି ।

ଶିଷ୍ୟ—ପୂର୍ବ ଶ୍ଳୋକରେ ନିର୍ଗୁଣ ପରବ୍ରହ୍ମଙ୍କୁ ବେଦ ବୋଲି କହିଲେ, ଏ ଶ୍ଳୋକରେ ସଗୁଣ ବ୍ରହ୍ମଙ୍କୁ ଶବ୍ଦବ୍ରହ୍ମ ବୋଲି କହୁଛନ୍ତି, ଏହା ଦ୍ୱାରା ବାକ୍ୟର ବିରୋଧ ହେଲା ନାହିଁ କି ?

ଗୁରୁ—କାର୍ଯ୍ୟ କାରଣ ରୂପରେ ଯେତେବେଳେ ଲୀଳା କରନ୍ତି, ସେତେବେଳେ ଦୁଇଟି ରୂପରେ ପ୍ରତିଭାତ ହୁଅନ୍ତି । କଳସ, ସରା ଇତ୍ୟାଦିରେ ନାନା ରୂପର ମୃତ୍ତିକା ହିଁ ଅବଲୋକିତ ହୋଇଥାଏ ।

ଶ୍ରୀମଦ୍ଭାଗବତରେ ଆହୁରି ମଧ୍ୟ କୁହାଯାଇଛି:—

ସୂତ ଉବାଚ

ସମାହିତାତ୍ମନୋ ବ୍ରହ୍ମନ୍ ବ୍ରହ୍ମଣଃ ପରମେଷ୍ଠିନଃ ।
ହୃଦ୍ୟାକାଶାଦଭୂନ୍ନାଦୋ ବୃତ୍ତିରୋଧାଦ୍‌ବିଭାବ୍ୟତେ ॥ ୩୭ ॥
ଯଦୁପାସନୟା ବ୍ରହ୍ମନ୍ ଯୋଗିନୋ ମଲମାତ୍ମନଃ ।
ଦ୍ରବ୍ୟକ୍ରିୟାକାରକାଖ୍ୟଂ ଧୂତ୍ୱା ଯାନ୍ତ୍ୟପୁନର୍ଭବମ୍ ॥ ୩୮ ॥
ତତୋଽଭୂତ୍ ତ୍ରିବୃଦୋଙ୍କାରୋ ଯୋଽବ୍ୟକ୍ତପ୍ରଭବଃ ସ୍ୱରାଟ୍ ।
ଯତ୍ତଲ୍ଲିଙ୍ଗଂ ଭଗବତୋ ବ୍ରହ୍ମଣଃ ପରମାତ୍ମନଃ ॥ ୩୯ ॥
ଶୃଣୋତି ଯ ଇମଂ ସ୍ଫୋଟଂ ସୁପ୍ତଶ୍ରୋତ୍ରେ ଚ ଶୂନ୍ୟଦୃକ୍ ।
ଯେନ ବାଗ୍ ବ୍ୟଜ୍ୟତେ ଯସ୍ୟ ବ୍ୟକ୍ତିରାକାଶ ଆତ୍ମନଃ ॥ ୪୦ ॥
ସ୍ୱଧାମ୍ନୋ ବ୍ରହ୍ମଣଃ ସାକ୍ଷାଦ୍ ବାଚକଃ ପରମାତ୍ମନଃ ।
ସ ସର୍ବମନ୍ତ୍ରୋପନିଷଦ୍-ବେଦବୀଜଂ ସନାତନମ୍ ॥ ୪୧ ॥
ତସ୍ୟ ହ୍ୟାସଂସ୍ତ୍ରୟୋ ବର୍ଣ୍ଣା ଅକାରାଦ୍ୟା ଭୃଗୂଦ୍‌ବହ ।
ଧାର୍ଯ୍ୟନ୍ତେ ଯୈସ୍ତ୍ରୟୋ ଭାବା ଗୁଣାନାମାର୍ଥବୃତ୍ତୟଃ ॥ ୪୨ ॥

ଶ୍ରୀମଦ୍‌ଭାଗବତ ୧୨ । ୬ ଅଃ

ସମାହିତାତ୍ମା ପରମେଷ୍ଠୀ ବ୍ରହ୍ମାଙ୍କର ହୃଦୟାକାଶରୁ ଅନାହତ ନାଦ ଆବିର୍ଭୂତ ହୋଇଥିଲା । ଯେତେବେଳେ ଜୀବ ଆପଣାର ମନୋବୃତ୍ତିର ନିରୋଧ କରେ ସେତେବେଳେ ସେ ଏହି ଅନାହତ ନାଦ ଅନୁଭବ କରେ । ହେ ଶୌନକ ! ଶ୍ରେଷ୍ଠ ଯୋଗିଗଣ ଏହି ଅନାହତ ନାଦର ଉପାସନା କରନ୍ତି । ଆଉ ଏହାର ପ୍ରଭାବରେ ଅଧିଭୂତ (ଦ୍ରବ୍ୟ) ଅଧିଦୈବ (କ୍ରିୟା) ଅଧ୍ୟାତ୍ମ (କାରକ)—ଏହି ତ୍ରିବିଧ ମଳ ନଷ୍ଟ କରି ପରମ ଗତି ମୋକ୍ଷ ପ୍ରାପ୍ତ ହୁଅନ୍ତି । ନାଦରୁ ଅକାର ଉକାର ମକାର—ତ୍ରିମାତ୍ରାଯୁକ୍ତ ଓଁକାର ପ୍ରକଟ ହୋଇଛନ୍ତି । ଓଁକାରର ଶକ୍ତିରେ ଅବ୍ୟକ୍ତ ରୂପା ପ୍ରକୃତି ବ୍ୟକ୍ତ ରୂପରେ ପରିଣତ ହୋଇଛନ୍ତି । ଓଁକାର ସ୍ୱୟଂ ଅବ୍ୟକ୍ତ ଓ ଅନାଦି, ଆଉ ପରମାତ୍ମା

ସ୍ୱରୂପ ହୋଇଥିବାରୁ ସ୍ୱୟଂ ପ୍ରକାଶ ପରମବସ୍ତୁକୁ ଭଗବାନ୍ ବ୍ରହ୍ମ ଅଥବା ପରମାତ୍ମା ବୋଲି କୁହାଯାଏ । ଏହାର ବୋଧ ମଧ୍ୟ ଓଙ୍କାର ଦ୍ୱାରା ହୋଇଥାଏ । ଯେତେବେଳେ ଶ୍ରବଣେନ୍ଦ୍ରିୟର ଶକ୍ତି ଲୁପ୍ତ ହୋଇଯାଏ, ଅର୍ଥାତ୍ କର୍ଣ୍ଣାଚ୍ଛାଦନପୂର୍ବକ ବାହ୍ୟ ଶବ୍ଦ ଗ୍ରହଣ ନ କରାଯାଏ, ସେତେବେଳେ ଏହି ଓଙ୍କାରର ସମସ୍ତ ଅର୍ଥ ପ୍ରକାଶକାରକ ସ୍ଫୋଟ ତତ୍ତ୍ୱ-ଶ୍ରବଣରେ ମନୁଷ୍ୟ ସମର୍ଥ ହୁଏ, ଆଉ ସୁଷୁପ୍ତି ଏବଂ ସମାଧି ଅବସ୍ଥାରେ ସମସ୍ତ ଅଭାବକୁ ଜାଣିବାକୁ ସମର୍ଥ ହୁଏ । ଓଁକାର ପରମାତ୍ମାଙ୍କର ବିଶୁଦ୍ଧ ସ୍ୱରୂପ, ଏହି ଓଁକାର ପରମାତ୍ମାଙ୍କଠାରୁ ହୃଦୟରେ ବେଦବାଣୀ ଅଭିବ୍ୟକ୍ତ କରନ୍ତି । ଓଁକାର ଅର୍ଥାତ୍ ଅପର ପ୍ରଣବ ଆପଣାର ଆଶ୍ରୟ ପରମାତ୍ମା ପରଂବ୍ରହ୍ମଙ୍କର ସାକ୍ଷାତ୍ ବାଚକ ଏବଂ ଓଁକାର ସମ୍ପୂର୍ଣ୍ଣ ମନ୍ତ୍ର ଉପନିଷଦ୍ ଆଉ ବେଦର ସନାତନ ବୀଜ । ଓଁକାରର ତିନିବର୍ଣ୍ଣ ଅ, ଉ, ମ, ଏହା ସତ୍ତ୍ୱ ରଜ ତମ ତିନିଗୁଣ, ଋକ୍ ଯଜୁଃ ସାମ ତିନି ବେଦ, ଭୂ ଭୁର୍ବଃ ସ୍ୱଃ ତିନି ଅର୍ଥ ବା ଲୋକ, ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ତିନି ବୃତ୍ତି ରୂପରେ ତିନି ତିନି ସଂଖ୍ୟାବିଶିଷ୍ଟ ଭାବକୁ ଧାରଣ କରନ୍ତି ।

ଶିଷ୍ୟ—ଓଁକାର ନାଦ କଣ ବ୍ରହ୍ମାଙ୍କର ମଧ୍ୟ ଉପାସ୍ୟ ?

ଗୁରୁ—ହଁ । ଓଙ୍କାରର ମକାର ପାଦଟି ନାଦମୟ, ତାହାଠାରୁ ପ୍ରାଣାଖ୍ୟ ହିରଣ୍ୟଗର୍ଭ ଏବଂ ତାହାଠାରୁ ବିରାଟାଖ୍ୟ ହିରଣ୍ୟଗର୍ଭ ପ୍ରକଟ ହୋଇଥାନ୍ତି । ସୁତରାଂ ସଗୁଣ ବ୍ରହ୍ମ ମଧ୍ୟ ନିର୍ଗୁଣ ନାଦର ଉପାସନା କରିଥାନ୍ତି । ପରେ ଏହାର ବିସ୍ତୃତ ଆଲୋଚନା କରିବା ।

ଶିଷ୍ୟ—ହିରଣ୍ୟଗର୍ଭ କିଏ ?

ଗୁରୁ—

ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ ।
ସ ଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ॥
ଋକ୍‌ବେଦ, ତୈତ୍ତିରୀୟ ଆରଣ୍ୟକ

ସୃଷ୍ଟିର ଆଦି ସମୟରେ ପରମାତ୍ମାଙ୍କର ସକାଶରୁ ହିରଣ୍ୟଗର୍ଭ—ଚତୁର୍ମୁଖ ବ୍ରହ୍ମା ଆବିର୍ଭୂତ ହେଲେ । ଏହି ହିରଣ୍ୟଗର୍ଭ ଭୁବନ-ଜାତଙ୍କର ଏକ ପତି, ଏକ ଈଶ୍ୱର, ହିରଣ୍ୟଗର୍ଭ ରୂପେ ଆବିର୍ଭୂତ ଏହି ପରମାତ୍ମା ପୃଥିବୀ ଏବଂ ସ୍ୱର୍ଗକୁ ଧାରଣ କରିଛନ୍ତି । ଏହି ହିରଣ୍ୟ-ଗର୍ଭାଖ୍ୟ ପରମାତ୍ମାଙ୍କ ବିନା ଆମେ ଆଉ କେଉଁ ଦେବତାଙ୍କ ପାଇଁ ଯଜ୍ଞ କରିବୁ, ଆଉ ତାଙ୍କର ପ୍ରୀତିସମ୍ପାଦନ ନିମିତ୍ତ ଶ୍ରୌତସ୍ମାର୍ତ୍ତ ଅନୁଷ୍ଠାନ କରିବୁ ?

ଶିଷ୍ୟ—ଏହା କିଣ ଶ୍ରୁତିବିରୋଧ ହେଲା ନାହିଁ ? ପର ପ୍ରଣବ ଏବଂ ଅପର ପ୍ରଣବ ହିଁ ଏହି ସମସ୍ତ ଜଗତ୍ ବୋଲି କହିଛନ୍ତି । ପୁଣି ବେଦ କହିଛନ୍ତି, ହିରଣ୍ୟଗର୍ଭ ବ୍ରହ୍ମା ପ୍ରଥମେ ପରମାତ୍ମାଙ୍କଠାରୁ ଆବିର୍ଭୂତ ହୋଇଛନ୍ତି—ଏହାର ମୀମାଂସା କିଣ ?

ଗୁରୁ—ଅପର ପ୍ରଣବ ହିଁ ହିରଣ୍ୟଗର୍ଭ । ସଗୁଣ ବ୍ରହ୍ମ ଯେପରି ଅକାର, ଉକାର, ମକାର, ସତ୍ତ୍ୱ ରଜଃ ତମଃ, ବ୍ରହ୍ମା ବିଷ୍ଣୁ ମହେଶ୍ୱର, ସ୍ପନ୍ଦ ପ୍ରାଣ ଓ ଶବ୍ଦ—ତିନୋଟି ଯାକ ଆପାତ ଦୃଷ୍ଟିରୁ ପୃଥକ୍ ବୋଲି ମନେ ହେଲେ ମଧ୍ୟ ତିନୋଟି ଯାକ ଗୋଟିଏ, 'ଏକ-ମାତ୍ର ଓଁକାର—ସେହିପରି ଏହି ସମଷ୍ଟିକୁ ହିରଣ୍ୟଗର୍ଭ ବୋଲି ବେଦ ଉଲ୍ଲେଖ କରିଛନ୍ତି । ହିରଣ୍ୟଗର୍ଭାଖ୍ୟ ଅପର ପ୍ରଣବର ସ୍ଥୂଳ ଶରୀର ହେଲା ଅକାରାଖ୍ୟ ପୁରୁଷ ବିରାଟ ବ୍ରହ୍ମା ଓ ସ୍ପନ୍ଦନାତ୍ମକ ଜଗତ୍, ସୂକ୍ଷ୍ମ ଶରୀର ଉକାରାଖ୍ୟ ପୁରୁଷ ଜୀବସମଷ୍ଟିପ୍ରାଣ ହିରଣ୍ୟଗର୍ଭ,

ଆଉ କାରଣ ଶରୀର ମକାରାଖ୍ୟ ପୁରୁଷ ନାଦ ଈଶ୍ୱର । ଏକମାତ୍ର ଓଙ୍କାରର ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ଅବସ୍ଥା ଭେଦରେ ଅବସ୍ଥାତ୍ରୟର ଅଭିମାନୀ ଦେବତାତ୍ରୟ ହେଲେ ବ୍ରହ୍ମା ବିଷ୍ଣୁ ମହେଶ୍ୱର; ତେବେ ପ୍ରାଣକୁ ହିଁ ଅର୍ଥାତ୍ ଉକାରାଖ୍ୟ ପୁରୁଷକୁ ହିଁ ହିରଣ୍ୟଗର୍ଭ ବୋଲି କୁହାଯାଇଥାଏ । ପ୍ରକୃତରେ ହିରଣ୍ୟଗର୍ଭ ଅକାର, ଉକାର, ମକାର ତିନୋଟି ।

ଶିଷ୍ୟ—ତା ହେଲେ ପ୍ରକୃତି କିଏ ହେଲେ ?

ଗୁରୁ—ସ ଭୈରବଶ୍ଚିଦାକାଶଃ ଶିବ ଇତ୍ୟଭିଧୀୟତେ ।

ଅନନ୍ୟାଂ ତସ୍ୟ ତାଂ ବିଦ୍ଧି ସ୍ପନ୍ଦଶକ୍ତିଂ ମନୋମୟୀଂ ॥

ଯୋଗବାଶିଷ୍ଠ, ନିର୍ବାଣପ୍ରକରଣ ଉତ୍ତରାର୍ଦ୍ଧ ।

ସେହି ଭୈରବ ଚିଦାକାଶ ଶିବ ବୋଲି କଥିତ ହୁଅନ୍ତି, ସେହି ମନୋମୟୀ ସ୍ପନ୍ଦ ଶକ୍ତିକୁ ତାଙ୍କଠାରୁ ଅଭିନ୍ନ ବୋଲି ଜାଣି-ଥାଅ ।

ଶିଷ୍ୟ—ଶିବ କିଏ ?

ଗୁରୁ—ପରମେଶ ପ୍ରକାଶାତ୍ମା ପ୍ରକାଶସ୍ୟ ମହେଶିତୁଃ ।

ପ୍ରଥମୋ ଯଃ ପରିସ୍ପନ୍ଦଃ ଶିବତତ୍ତ୍ୱଂ ତଦୁଚ୍ୟତେ ॥

ପରମଶୋଲ୍ଲାସ

ପରମେଶ୍ୱର ପ୍ରକାଶ ସ୍ୱରୂପ, ଜ୍ୟୋତିର୍ମୟ ମହେଶ୍ୱରଙ୍କର ଯେଉଁ ପ୍ରଥମ ସ୍ପନ୍ଦନ (କମ୍ପନ ଚଳନ) ତାହାହିଁ ଶିବତତ୍ତ୍ୱ ବୋଲି କଥିତ ହୋଇଥାଏ ।

ଶିଷ୍ୟ—ଦୁଇଟିଯାକ ତ ଏକା ହୋଇଗଲା, କେଉଁଟି ପୁରୁଷ, କେଉଁଟି ପ୍ରକୃତି କପରି ଜଣାଯିବ ?

ଗୁରୁ—ନ ଶିବେନ ବିନା ଶକ୍ତିର୍ନ ଶକ୍ତିରହିତଃ ଶିବଃ ।
ଉମାଶଙ୍କରଯୋରୈକ୍ୟଂ ଯଃ ପଶ୍ୟତି ସ ପଶ୍ୟତି ॥
ସୂତସଂହିତା ।

ଶିବଙ୍କ ଛଡ଼ା ଶକ୍ତି ନାହାନ୍ତି, ଆଉ ଶକ୍ତିବିରହିତ ଶିବ ମଧ୍ୟ ନାହାନ୍ତି । ଯେଉଁ ବ୍ୟକ୍ତି ଉମାଶଙ୍କରଙ୍କର ଐକ୍ୟ ଦର୍ଶନ କରେ ସେହି ଯଥାର୍ଥ ଦର୍ଶନ କରିଥାଏ ।

ଶିଷ୍ୟ—ଶିବ-ଶକ୍ତିଙ୍କର ପାର୍ଥକ୍ୟ ବୁଝିବାର କଣ କିଛି ଉପାୟ ନାହିଁ ?

ଗୁରୁ—ନିଶ୍ଚୟ ଅଛି ।
ବ୍ରହ୍ମାବିଷ୍ଣୁମୟୋ ରୁଦ୍ର ଅଗ୍ନିଷୋମାତ୍ମକଂ ଜଗତ୍ ।
ପୁଂଲିଙ୍ଗଂ ସର୍ବମୀଶାନଂ ସ୍ତ୍ରୀଲିଙ୍ଗଂ ଭଗବତ୍ୟୁମା ॥
ଉମାରୁଦ୍ରାତ୍ମିକାଃ ସର୍ବାଃ ପ୍ରଜାଃ ସ୍ଥାବରଜଙ୍ଗମାଃ ॥
ରୁଦ୍ରହୃଦୟୋପନିଷଦ୍

ରୁଦ୍ର ବ୍ରହ୍ମାବିଷ୍ଣୁମୟ, ଜଗତ୍ ଅଗ୍ନିଷୋମାତ୍ମକ, ସମସ୍ତ ପୁଂଲିଙ୍ଗ ଈଶାନ ଏବଂ ସମସ୍ତ ସ୍ତ୍ରୀଲିଙ୍ଗ ଭଗବତୀ ଉମା । ସ୍ଥାବର ଜଙ୍ଗମ ପ୍ରଜାସମୂହ ଉମାରୁଦ୍ରାତ୍ମକ ।

ଶିଷ୍ୟ—ଠିକ୍ ବୁଝିପାରିଲି ନାହିଁ । ପ୍ରକୃତି-ପୁରୁଷ ସଂଯୋଗରେ ସ୍ତ୍ରୀ-ପୁରୁଷ ସମସ୍ତ ଗଠିତ ହୋଇଅଛି । ସବୁ ପୁରୁଷ ଈଶାନ ଏବଂ ନିଖିଳ ସ୍ତ୍ରୀ ଉମା—ଏହା ଅତି ସ୍ଥୂଳ କଥା, ମୁଁ ସୂକ୍ଷ୍ମ ତତ୍ତ୍ୱ ଜାଣିବାକୁ ଚାହେଁ ।

ଗୁରୁ—ତୁମର ପ୍ରଶ୍ନରେ ସନ୍ତୁଷ୍ଟ ହେଲି । ଆଚ୍ଛା ତେବେ ଶୁଣ ।

ବ୍ୟକ୍ତଂ ସର୍ବମୁମାରୂପମବ୍ୟକ୍ତନ୍ତୁ ମହେଶ୍ୱରମ୍ ।
ଉମାଶଙ୍କରଯୋର୍ଯୋଗଃ ସ ଯୋଗୋ ବିଷ୍ଣୁରୁଚ୍ୟତେ ॥
ରୁଦ୍ରହୃଦୟୋପନିଷଦ୍ ।

ଯାହା କିଛି ବ୍ୟକ୍ତ ସବୁ ଉମାଙ୍କର ରୂପ ; ମହେଶ୍ୱର ଅବ୍ୟକ୍ତ । ଉମାଶଙ୍କରଙ୍କର ଯେଉଁ ଯୋଗ ତାହାହିଁ ବିଷ୍ଣୁ ବୋଲି କଥିତ ହୋଇଥାନ୍ତି । ବ୍ୟକ୍ତ ଉମା ଆଉ ଅବ୍ୟକ୍ତ ଉମାନାଥ—କ'ଣ ଏଥର ବୁଝିପାରିଲ ?

ଶିଷ୍ୟ—ଆଜ୍ଞା ହଁ, ଆଉ ସନ୍ଦେହ ନାହିଁ ।

ଗୁରୁ—କାହାକୁ ଆଶ୍ରୟ କରିବାକୁ ହେବ ଶୁଣ ।

ଆତ୍ମାନଂ ପରମାତ୍ମାନମନ୍ତରାତ୍ମାନମେବଚ ।
ଜ୍ଞାତ୍ୱା ତ୍ରିବିଧମାତ୍ମାନଂ ପରମାତ୍ମାନମାଶ୍ରୟେତ୍ ॥

ରୁଦ୍ରହୃଦୟୋପନିଷଦ୍

ଆତ୍ମା, ଅନ୍ତରାତ୍ମା ଏବଂ ପରମାତ୍ମା—ଏହି ତିନି ପ୍ରକାର ଆତ୍ମାକୁ ଜାଣି ପରମାତ୍ମାକୁ ଆଶ୍ରୟ କରିବ ।

ଶିଷ୍ୟ—ପରମାତ୍ମା ପଦରେ କାହାକୁ ଲକ୍ଷ୍ୟ କରୁଛନ୍ତି ?

ଗୁରୁ—ଅନ୍ତରାତ୍ମା ଭବେଦ୍‌ବ୍ରହ୍ମା ପରମାତ୍ମା ମହେଶ୍ୱରଃ ।
ସର୍ବେଷାମେବ ଭୂତାନାଂ ବିଷ୍ଣୁରାତ୍ମା ସନାତନଃ ॥

ଅନ୍ତରାତ୍ମା ବ୍ରହ୍ମା, ପରମାତ୍ମା ମହେଶ୍ୱର ଏବଂ ସର୍ବଭୂତର ଆତ୍ମା ପ୍ରାଣରୂପୀ ବିଷ୍ଣୁ । ପରମାତ୍ମା ନାଦରୂପୀ ଶଙ୍କର—ବୁଝିଲ ତ ?

ଶିଷ୍ୟ—ହଁ ପ୍ରଭୁ ।

ଗୁରୁ—ଆହୁରି ଶୁଣ—

ବ୍ୟକ୍ତା ତୁ ପ୍ରଥମା ମାତ୍ରା ଦ୍ୱିତୀୟାବ୍ୟକ୍ତସଂଜ୍ଞକା ।
ମାତ୍ରା ତୃତୀୟା ଚିଚ୍ଛକ୍ତିରର୍ଦ୍ଧମାତ୍ରା ପରଂପଦମ୍ ॥

ମାର୍କଣ୍ଡେୟପୁରାଣ

ବ୍ୟକ୍ତା ପ୍ରଥମ ମାତ୍ରା ଅକାର, ଅବ୍ୟକ୍ତା ଦ୍ୱିତୀୟ ମାତ୍ରା ଉ କାର, ତୃତୀୟ ମାତ୍ରା ମ କାର ଚିତ୍‌ଶକ୍ତି ଏବଂ ଅର୍ଦ୍ଧମାତ୍ରା ପର ପଦ । ଏହି ମ କାରଟି ଅର୍ଦ୍ଧନାରୀଶ୍ୱର । ସ୍ତ୍ରୀ ପୁରୁଷ ଅଟନ୍ତି ପୁଣି

ପ୍ରକୃତି ମଧ୍ୟ ଅଟନ୍ତି । ମା କୁହ, ବାପା କୁହ, ସବୁ ସେହି ଶ୍ରୀ-ନାଦବ୍ରହ୍ମ ।

ଶିଷ୍ୟ – ତାହା ହେଲେ ମକାର ନାଦ ହିଁ ଅଛନ୍ତି ?

ଗୁରୁ—ହଁ ବତ୍ସ, ସେହି ପର ପ୍ରକୃତି ଜୀବାତ୍ମା ପ୍ରଥମେ ଅଖଣ୍ଡ ନାଦ ରୂପେ ଆବିର୍ଭୂତ ହେଲେ । ମ କାରର ଦୁଇଟି ଅଂଶ ଅଛି—ଗୋଟିଏ ମୁମୁକ୍ଷାଭିମୁଖୀ, ଅପରଟି ସୃଷ୍ଟ୍ୟଭିମୁଖ । ପ୍ରଥମଟି ସ୍ଥିତି ହୋଇଛନ୍ତି ମାତ୍ର, କୌଣସି ପରିଣାମ ଆରମ୍ଭ ହୋଇନାହିଁ—ସେଇଟି ଶୁଦ୍ଧସତ୍ତ୍ୱ ମାୟା, ଦ୍ୱିତୀୟଟି ପରିଣାମ-ଉନ୍ମୁଖ ମିଶ୍ରିତ ଗୁଣମୟୀ ଅବିଦ୍ୟା । ଏମାନଙ୍କର ପୃଥକ୍ ହେବାର ଉପାୟ ନାହିଁ । ସେହି ପ୍ରକୃତିଠାରୁ ଉ କାର ପ୍ରାଣ (ମହତ୍ତତ୍ତ୍ୱ), ତାହାଠାରୁ ଅ କାର ସ୍ଥୂଳ ବ୍ରହ୍ମା ଅହଙ୍କାର ।

ଶ୍ରୀମଦ୍ଭାଗବତରେ କଥିତ ଅଛି—

ସତ୍ତ୍ୱଂ ବିଶୁଦ୍ଧଂ ବସୁଦେବଶବ୍ଦିତଂ
ଯଦୀୟତେ ତତ୍ର ପୁମାନପାବୃତଃ ।
ସତ୍ତ୍ୱେ ଚ ତସ୍ମିନ୍ ଭଗବାନ୍ ବାସୁଦେବୋ
ହ୍ୟଧୋକ୍ଷଜୋ ମେ ମନସା ବିଧୀୟତେ ॥ ୪ । ୩ । ୨୩

ଅର୍ଥ—ଯେଉଁ ସତ୍ତ୍ୱଗୁଣ ବିଶୁଦ୍ଧ ତାହା ବସୁଦେବ ଶବ୍ଦରେ ଉକ୍ତ ହୁଏ । କାରଣ ନିର୍ମଳ ସତ୍ତ୍ୱଗୁଣରେ ପରମ ପୁରୁଷ ବସୁଦେବ ହିଁ ପ୍ରକାଶ ପାନ୍ତି । ଏଇଥିପାଇଁ ସେହି ସତ୍ତ୍ୱ ସ୍ୱରୂପ ଅଥଚ ଇନ୍ଦ୍ରିୟର ଅଗୋଚର ଭଗବାନ ବାସୁଦେବଙ୍କୁ ମୁଁ ମନ ଭିତରେ ସତତ ନମସ୍କାର ପୂର୍ବକ ଅର୍ଚ୍ଚନା କରୁଅଛି ।

ଆତ୍ମବୋଧ ଉପନିଷଦରେ ଦେହକୁ ଆତ୍ମା ଏବଂ ବିଜ୍ଞାନାତ୍ମା ପୁରୁଷଙ୍କୁ ଅନ୍ତରାତ୍ମା ଓ ଅକ୍ଷର ପୁରୁଷଙ୍କୁ ପରମାତ୍ମା ବୋଲି

କୁହାଯାଇଅଛି । ସେହି ପରମାତ୍ମାଙ୍କର ସ୍ୱରୂପ ଏହି ପ୍ରକାରରେ ବର୍ଣ୍ଣିତ ହୋଇଅଛି—

"ବଟକଣିକା ବା ଶ୍ୟାମାକତଣ୍ଡୁଳୋ ବା ବାଳାଗ୍ରଶତ-ସହସ୍ରବିକଳ୍ପନାଭିଃ ସ ଲଭ୍ୟତେ ।"

ସେହି ପ୍ରାଣାଖ୍ୟ ହିରଣ୍ୟଗର୍ଭ ହିଁ ବୁଦ୍ଧି, "ଯୋ ବୈ ପ୍ରାଣଃ ସା ପ୍ରଜ୍ଞା ଯା ବୈ ପ୍ରଜ୍ଞା ସା ପ୍ରାଣଃ ।" କୌଷିତକୀ ଉପନିଷଦ୍ ।

ପ୍ରାଣ ହିଁ ବୁଦ୍ଧି—ବୁଦ୍ଧି ହିଁ ପ୍ରାଣ, "ପ୍ରାଣାଃ ବୈ ଧିୟଃ"—ପ୍ରାଣ ହିଁ ସକଳ ଇନ୍ଦ୍ରିୟ, ସଂକଳ୍ପ-ଶକ୍ତି ବିଶିଷ୍ଟ ହିରଣ୍ୟଗର୍ଭ ମନ, ଅଧ୍ୟବସାୟ-ଶକ୍ତିବିଶିଷ୍ଟ ହିରଣ୍ୟଗର୍ଭ ବିଜ୍ଞାନ ଅର୍ଥାତ ବୁଦ୍ଧି । ଏଥର ବୁଝିଲ ତ ଯେ ଶବ୍ଦବ୍ରହ୍ମ ହିଁ ଅପର ପ୍ରଣବ ବୁଦ୍ଧିମନ ଅହଙ୍କାର ଇନ୍ଦ୍ରିୟ ସମସ୍ତ । "ହିରଣ୍ୟଗର୍ଭୋ ଭଗବାନନ୍ତଃକରଣ ସଙ୍ଗତଃ ।" ସୂତସଂହିତା ।

ଶିଷ୍ୟ—ହଁ ଦେବ ।

ଗୁରୁ—ଅପର ପ୍ରଣବ ପ୍ରାଣ ହିଁ ଆଧିଭୌତିକ ବିଷୟ ରୂପ-ରସ ଆଦି ଭୋଗ୍ୟ ପଦାର୍ଥ ଏବଂ ଆଧ୍ୟାତ୍ମିକ ଶ୍ରୋତ୍ରତ୍ୱଗାଦି ଇନ୍ଦ୍ରିୟ-ଗଣ ଭୋଗର କାରଣ ଏବଂ ଦିଗ ବାୟୁ ପ୍ରଭୃତି ଇନ୍ଦ୍ରିୟଗଣର ଅନୁଗ୍ରାହକ ଦେବତାମଣ୍ଡଳୀ ଓ ଜୀବାତ୍ମା ଭୋକ୍ତା ପୁରୁଷ—ଏ ସମ୍ବନ୍ଧରେ ବୋଧହୁଏ ଆଉ କିଛି ସନ୍ଦେହ ନାହିଁ ?

ଶିଷ୍ୟ—ନା ପ୍ରଭୁ ।

ଗୁରୁ—ଦେଖ ଗୋଟିଏ କଥା ବାରମ୍ବାର କହୁଛି ।

ଶିଷ୍ୟ—ମୋ ପରି ମଳିନ ବୁଦ୍ଧି ବିଶିଷ୍ଟ ଶିଷ୍ୟକୁ ବାରମ୍ବାର ନ କହିଲେ ତ କିଛି ଧାରଣା କରି ପାରିବ ନାହିଁ ।

ଗୁରୁ—ଏକା ସୂର୍ଯ୍ୟ ପ୍ରତ୍ୟେକ ଦିନ ଉଦୟ ହୁଅନ୍ତି, ଏକା ନଦୀ ଆବହମାନ କାଳରୁ ସାଗର ଅଭିମୁଖରେ ଗମନ କରୁଛନ୍ତି,

ଏକା ଅଗ୍ନି ପ୍ରତିଦିନ ପ୍ରଜ୍ଜ୍ୱଳିତ କରାଯାଉଛି, ଏକା ଅନ୍ନ ପ୍ରତିଦିନ ଭୋଜନ କରାଯାଉଛି, ସେହିପରି ଏକା ପ୍ରଣବ ତତ୍ତ୍ୱ, ଯେତେବେଳ ପର୍ଯ୍ୟନ୍ତ ଆଲୋଚନା କରିବାର ଶକ୍ତି ଥିବ ସେତେବେଳ ଯାଏ ପୁଣି ପୁଣି ଆଲୋଚନା କରିବାକୁ ହେବ, ସେଥିରେ କିଛି ଦୋଷ ନାହିଁ । ଆଲୋଚ୍ୟ ବିଷୟଟିକୁ ମନ ଯେତେଦିନ ପର୍ଯ୍ୟନ୍ତ ନିଃସନ୍ଦିଗ୍ଧ ଭାବରେ ଗ୍ରହଣ ନ କରିଛି, ସେତେଦିନ ପର୍ଯ୍ୟନ୍ତ ଧ୍ୟାନ ହୋଇପାରେ ନାହିଁ । ଆଚ୍ଛା ତା ପରେ ଶୁଣ । ପଦାର୍ଥାଦର୍ଶେ—

ସୂକ୍ଷ୍ମା କୁଣ୍ଡଳିନୀ ମଧ୍ୟେ ଜ୍ୟୋତିର୍ମାତ୍ରସ୍ୱରୂପିଣୀ
ଅଶ୍ରୋତ୍ରବିଷୟା ତସ୍ମାଦ୍ୟଦ୍‌ଗଚ୍ଛତ୍ୟୂର୍ଦ୍ଧ୍ୱଗାମିନୀ ॥
ସ୍ୱୟଂ ପ୍ରକାଶା ପଶ୍ୟନ୍ତୀ ସୁଷୁମ୍ନାମାଶ୍ରିତା ଭବେତ୍ ।
ସୈବ ହୃତ୍‌ପଙ୍କଜଂ ପ୍ରାପ୍ୟ ମଧ୍ୟମା ନାଦରୂପିଣୀ ॥
ତତଃ ସଂଜଳ୍ପମାନା ସ୍ୟାଦବିଭକ୍ତୋର୍ଦ୍ଧ୍ୱଗାମିନୀ ।
ସୈବୋରଃକଣ୍ଠତାଲୁସ୍ଥା ଶିରୋଘ୍ରାଣରଦସ୍ଥିତା ॥
ଜିହ୍ୱାମୂଳୋଷ୍ଠନିର୍ଯ୍ୟାତା ସର୍ବବର୍ଣ୍ଣପରିଗ୍ରହା ।
ଶବ୍ଦପ୍ରପଞ୍ଚଜନନୀ ଶ୍ରୋତ୍ରଗ୍ରାହ୍ୟା ତୁ ବୈଖରୀ ॥

ମୂଳାଧାରରେ ଅଶ୍ରୋତ୍ରବିଷୟା ଅର୍ଥାତ୍ ନିଃଶବ୍ଦା ଜ୍ୟୋତିର୍ମାତ୍ର-ସ୍ୱରୂପିଣୀ ସୂକ୍ଷ୍ମା କୁଣ୍ଡଳିନୀ ଶକ୍ତି ହେଲେ ପରା ତାହାଠାରୁ ଆବିର୍ଭୂତା ସୁଷୁମ୍ନା ଆଶ୍ରିତା ଊର୍ଦ୍ଧ୍ୱଗାମିନୀ ସ୍ୱୟଂ ପ୍ରକାଶରୂପା ପଶ୍ୟନ୍ତୀ । ସେ ହୃଦୟପଦ୍ମ ପ୍ରାପ୍ତ ହୋଇ ମଧ୍ୟମା ନାଦରୂପିଣୀ ହୁଅନ୍ତି । ତାହାଠାରୁ ସମ୍ୟକ୍ କଥନ ରୂପ ଅବିଭକ୍ତା ଊର୍ଦ୍ଧ୍ୱଗାମିନୀ ବୈଖରୀ, ତାହାଙ୍କ କଣ୍ଠ ତାଳୁ ମସ୍ତକ ଘ୍ରାଣ ଦନ୍ତରେ ଅବସ୍ଥିତା, ଜିହ୍ୱା ମୂଳ ଓଷ୍ଠରୁ ଵ୍ୟକ୍ତ ହୋଇ ସର୍ବ ବର୍ଣ୍ଣରୂପଗ୍ରହଣକାରିଣୀ ଶବ୍ଦପ୍ରପଞ୍ଚଜନୟିତ୍ରୀ ଶ୍ରୋତ୍ର ଦ୍ୱାରା ଗ୍ରହଣୀୟା ବୈଖରୀ ବାକ୍ ।

ଇଚ୍ଛାଜ୍ଞାନକ୍ରିୟାତ୍ମାସୌ ତେଜୋରୂପା ଗୁଣାତ୍ମିକା ।
କ୍ରମେଣାନେନ ସୃଜତି କୁଣ୍ଡଳୀ ବର୍ଣ୍ଣମାଳିକାମ୍ ॥

ଇଚ୍ଛାଜ୍ଞାନକ୍ରିୟାତ୍ମିକା ତେଜୋରୂପିଣୀ ତ୍ରିଗୁଣମୟୀ କୁଣ୍ଡଳୀ ଏହି କ୍ରମରେ ଅକାରାଦ୍ୟ କ୍ଷକାରାନ୍ତ ବର୍ଣ୍ଣ ସମସ୍ତ ସୃଜନ କରନ୍ତି ।

ଶିଷ୍ୟ—ପଶ୍ୟନ୍ତୀ ସ୍ଥାନ କେଉଁଠାରେ ?

ଗୁରୁ—ଶ୍ରୀଧର ସ୍ୱାମୀ କହିଛନ୍ତି—ମଣିପୁର; ପ୍ରାଣତୋଷିଣୀ-କାର କହନ୍ତି ଯେ—ଅଧିଷ୍ଠାନ । ବସ୍ତୁତଃ ମୂଳାଧାର ଅତିକ୍ରମ କରିବାକ୍ଷଣି ସେ ପଶ୍ୟନ୍ତୀ ନାଦ ରୂପ ଧାରଣ କରନ୍ତି । ମଣିପୁରରେ ପୂର୍ଣ୍ଣତା—ସେଠାରୁ ଊର୍ଦ୍ଧ୍ୱଗାମିନୀ ହୋଇ ହୃଦୟରେ ମଧ୍ୟମା, ମୁହଁରେ ବୈଖରୀ । ଅଥର୍ବବେଦ ଭାଷ୍ୟରେ ମଣିପୁର କହିଛନ୍ତି—

ପ୍ରପଞ୍ଚସାର ତୃତୀୟ ପଟଳ

(୧) ଯଦା ଯଦା ତ୍ରିଗୁଣସ୍ୟୈବ ତଦା ତ୍ରିଗୁଣିତା ବଭୂଃ ।
ଶକ୍ତିଃ କାଳାଗ୍ନିନାଦାତ୍ମା ଗୂଢ଼ ମୂର୍ତ୍ତିଃ ପ୍ରତୀୟତେ ॥

ଯେତେବେଳେ ତିନଗୁଣ ହୁଅନ୍ତି ସେତେବେଳେ ତ୍ରିଗୁଣ-ବିଶିଷ୍ଟା ଫଳିତା ସର୍ବଗତା ଶକ୍ତି କାଳ ଅଗ୍ନି ନାଦ ଆତ୍ମା, ଗୁପ୍ତ ଆକାର ବିଶିଷ୍ଟା ପ୍ରତୀତ ହୁଅନ୍ତି ।

(୨) ତଦା ତାଂ ତାରମିତ୍ୟାହୁର୍ବ୍ୟୋମାତ୍ମେତି ବହୁଶ୍ରୁତାଃ ।
ତାମେବ ଶକ୍ତିଂ ବ୍ରୁବତେ ହରେତ୍ୟାତ୍ମେତି ଗୃପରେ ॥
ନିର୍ଗୁଣା ସା ନିର୍ଦୋଷା ସା ନିର୍ବର୍ଣ୍ଣା ଚ କ୍ଷୟୀ ଚ ସା ।
ନିର୍ଲେପ ସା ନିର୍ମୂର୍ତ୍ତି ସା ନିରେଖା ସା ବିଶିଷ୍ୟତେ ।
ଏତେଷାଂ ତାରଣୀତ୍ୱରଃ ଶକ୍ତିସ୍ତଦ୍ଭୂତଶକ୍ତିତଃ ॥

ସେତେବେଳେ ତାଙ୍କୁ ବହୁଶାସ୍ତ୍ରପାରଦର୍ଶୀ ବିଦ୍ୱାନଗଣ ତାଙ୍କର ବ୍ୟୋମାତ୍ମା ବୋଲି କହିଥାନ୍ତି ଏବଂ ଅନ୍ୟ କେହି କେହି ପଣ୍ଡିତ ସେହି ଶକ୍ତିକୁ ହର ଆତ୍ମା ବୋଲି କହିଥାନ୍ତି । ସେ

ସତ୍ତ୍ୱ ରଜଃ ତମଃ ତ୍ରିଗୁଣମୟୀ, ସେ ବାତ, ପିତ୍ତ କଫ, ଅଥବା ରାଗ-ଦ୍ୱେଷ ମୋହ ତ୍ରିଦୋଷା, ସେ ଅକାର ଉକାର ମକାର ତ୍ରିବର୍ଣ୍ଣ ଏବଂ ସେ ଋକ୍ ଯଜୁ ସାମ ତ୍ରିବେଦ, ସେ ପୃଥିବୀ ଅନ୍ତରୀକ୍ଷ ସ୍ୱର୍ଲୋକ ତିନ ଲୋକ, ବ୍ରହ୍ମା ବିଷ୍ଣୁ ମହେଶ୍ୱର ଅଥବା ସୂର୍ଯ୍ୟ, ଚନ୍ଦ୍ର ଅଗ୍ନି ତିନ ମୂର୍ତ୍ତି, ବାମା ଶକ୍ତି ଚିତ୍‌କଳା, ଜ୍ୟେଷ୍ଠାଶକ୍ତି ତ୍ରିପୁର ପରମେଶ୍ୱରୀ ରୌଦ୍ରୀଶକ୍ତି ଇଚ୍ଛାଶକ୍ତି—ଏହି ତ୍ରିରେଖା ନିଷ୍କଳ ବିନ୍ଦୁ ସ୍ୱରୂପା ।




୧ ହକାରାର୍ଦ୍ଧ

ଶ୍ରୀ କ୍ରମରେ

ସାପି କୁଣ୍ଡଳିନୀ ଶକ୍ତିଃ କାମକଳା-ସ୍ୱରୂପିଣୀ ।
ସଞ୍ଚିନ୍ତ୍ୟ ସାଧକଶ୍ରେଷ୍ଠଃ ତ୍ରୈଲୋକ୍ୟଂ ବଶମାନୟେତ୍ ॥
ବାହ୍ୟାଭ୍ୟନ୍ତର-ଭେଦେନ ଚିନ୍ତନୀୟାଞ୍ଚ ତାଂ ଶୃଣୁ ।
ଏକାକୃତିଂ ସ୍ୱରୂପେଣ ସର୍ବାଂ ଶକ୍ତିଂ ବିଚିନ୍ତୟେତ୍ ॥

ସେହି କୁଣ୍ଡଳିନୀ ଶକ୍ତି କାମକଳା ସ୍ୱରୂପିଣୀ । ସାଧକ ଶ୍ରେଷ୍ଠ ତାହାକୁ ସମ୍ୟକ୍ ଭାବରେ ଚିନ୍ତାକରି ତ୍ରୈଲୋକ୍ୟକୁ ବଶ କରିବାକୁ

ସମର୍ଥ ହୁଅନ୍ତି । ସ୍ୱରୂପରେ ସମସ୍ତ ଶକ୍ତି ଏକୀକୃତ ହେଲେ ମଧ୍ୟ ବାହ୍ୟ-ଅଭ୍ୟନ୍ତର ଭେଦରେ ଚିନ୍ତାକଲେ ମୂଳାଧାରରେ ସ୍ଥିତା କୁଣ୍ଡଳିନୀହିଁ ସେହି ସହସ୍ରାରେ କାମକଳାରୂପିଣୀ ହୁଅନ୍ତି । କାମ ଶବ୍ଦ ଅନୁସାରେ କମନୀୟ, କଳା ଶବ୍ଦରେ ଅଗ୍ନି ଓ ଅମୃତ । ଏହି କାମକଳାହିଁ ତ୍ରିପୁରସୁନ୍ଦରୀ କାଳୀ, ତାରା, ଗୌରୀ । କାମକଳାର ମୁଖବିନ୍ଦୁଠାରୁ ନାସିକା ପ୍ରଭୃତି ଅଙ୍ଗସମୂହ, ସ୍ତନବିନ୍ଦୁ ଯୁଗଳଠାରୁ ବାହୁଯୁଗଳ ଅନ୍ୟାନ୍ୟ ସମସ୍ତ ଅବୟବ, ଇକାରାର୍ଦ୍ଧ ରୂପ ଯୋନିଠାରୁ ଚରଣଯୁଗଳ ସମୁତ୍ଥିତ ହେବ ।

ଅନାଦି ନିଧନଂ ଯତ୍ତୁଂ ପରାଶକ୍ତ୍ୟାଖ୍ୟମବ୍ୟୟମ୍ ।
ଲାବଣ୍ୟଲହରୀସାରରୂପମାନନ୍ଦବାରିଧିଃ ॥ ତନ୍ତ୍ରାର୍ଣ୍ଣବ ।

ଏହି ହେଉଛନ୍ତି ଅନାଦିନିଧନ ପରାଶକ୍ତି ଏବଂ ଏହିପରି ରୂପହିଁ ଲାବଣ୍ୟ-ଲହରୀ-ସାର ଓ ଜଗତର ଆନନ୍ଦଜନକ । ତନ୍ତ୍ରାର୍ଣ୍ଣବ ।

ଏହି ସବୁର ତାରଣ ହେତୁ ତାରା, ଶକ୍ତିଦ୍ୱାରା ଧାରଣ କରନ୍ତି ବୋଲି ଶକ୍ତି । (ପ୍ରପଞ୍ଚସାର) ।

ଶିଷ୍ୟ—କାମକଳା କଣ କୁଣ୍ଡଳିନୀର ଅନ୍ୟ ନାମ ?

ଗୁରୁ—ହଁ, ମୂଳାଧାରସ୍ଥିତା କୁଣ୍ଡଳିନୀ ହିଁ ସହସ୍ରାରେ କାମକଳାରୂପିଣୀ ଓଙ୍କାର ନାଦବ୍ରହ୍ମର ଅକାର ଆଦି କ୍ଷକାରାନ୍ତ ବର୍ଣ୍ଣ ସମୁଦାୟ ଶକ୍ତି, ଶାସ୍ତ୍ରାନ୍ତରରେ କକାର ଆଦି ମକାରାନ୍ତ ବର୍ଣ୍ଣକୁ ପଞ୍ଚବିଂଶତି ତତ୍ତ୍ୱ ବୋଲି କହିଛନ୍ତି ।

ଯୋଗିନୀ ତନ୍ତ୍ରରେ ଅଛି (ପ୍ରଥମ ଖଣ୍ଡ ଦଶମ ପଟଳ)

ତନ୍ମଧ୍ୟେ ତୁ ମୟା ଦୃଷ୍ଟଂ ବର୍ଣ୍ଣପୁଞ୍ଜଂ ମହୋଜ୍ଜ୍ୱଳଂ ।
ସୂର୍ଯ୍ୟକୋଟିସମାଭାସଂ ଚନ୍ଦ୍ରକୋଟିସୁଶୀତଳଂ ।
ବହ୍ନିକୋଟିମହୋଜ୍ଜ୍ୱଳଂ ପରଂବ୍ରହ୍ମମୟଂ ଧ୍ରୁବମ୍ ॥

ତାହା ମଧ୍ୟରେ ମହା ଉଜ୍ଜ୍ୱଳ କୋଟି ସୂର୍ଯ୍ୟ-ସମପ୍ରଭ, କୋଟି ଚନ୍ଦ୍ରସୁଶୀତଳ, କୋଟି-ବହ୍ନି ମହାଉଜ୍ଜ୍ୱଳ ପରଂବ୍ରହ୍ମମୟ ନିତ୍ୟ ବର୍ଣ୍ଣପୁଞ୍ଜକୁ ଦେଖିଅଛୁ ।

ବିଶ୍ୱସାରତନ୍ତ୍ରରେ କୁହାଯାଇଅଛି:—

ଶବ୍ଦବ୍ରହ୍ମେତି ତଂ ପ୍ରାହ ସ ସାକ୍ଷାଦ୍ଦେବୋ ମହେଶ୍ୱରଃ ।
ଅନାହତେଷୁ ଚକ୍ରେଷୁ ସ ଶବ୍ଦଃ ପରିକୀର୍ତ୍ତ୍ୟତେ ॥
ଅନାହତଂ ମହାଚକ୍ରଂ ହୃଦୟେ ସର୍ବଜନ୍ତୁଷୁ ।
ତତ୍ର ଓଁକାର ଇତ୍ୟୁକ୍ତୋ ଗୁଣତ୍ରୟସମନ୍ୱିତଃ ।
ଶିବ ବ୍ରହ୍ମା ତଥା ବିଷ୍ଣୁରୋଙ୍କାରେ ଚ ପ୍ରତିଷ୍ଠିତଃ ॥
ଅକାରଶ୍ଚ ଭବେଦ୍ ବ୍ରହ୍ମା ଉକାରଃ ସଚ୍ଚିଦାତ୍ମକଃ ।
ମକାରୋ ରୁଦ୍ର ଇତ୍ୟୁକ୍ତ ଇତି ତସ୍ୟାର୍ଥକଳ୍ପନା ॥
ଅକାରେ ଚ ଭବେଦ୍ ବିଷ୍ଣୁ ରୁକାରେ ଚ ପ୍ରଜାପତିଃ ।
ମକାରେ ଚ ଭବେଦ୍ ରୁଦ୍ର ଇତି ବା ବର୍ଣ୍ଣନିର୍ଣ୍ଣୟଃ ॥

ତାହାଙ୍କୁ ଶବ୍ଦବ୍ରହ୍ମ କହନ୍ତି । ସେ ସାକ୍ଷାତ୍ ଜ୍ୟୋତିର୍ମୟ ସଦାଶିବ । ସେହି ଶବ୍ଦ ଅନାହତ ଚକ୍ରରେ ଅଛି ବୋଲି କୁହାଯାଏ । ସବୁ ପ୍ରାଣୀଙ୍କର ହୃଦୟରେ ଅନାହତ ନାମକ ମହାଚକ୍ର ଅଛି । ସେହି ସ୍ଥାନରେ ଗୁଣତ୍ରୟସମନ୍ୱିତ ଶବ୍ଦବ୍ରହ୍ମ ଓଁକାରାତ୍ମା ଅବସ୍ଥାନ କରନ୍ତି । ଅକାର ବ୍ରହ୍ମା, ଉକାର ବିଷ୍ଣୁ, ମକାର ଶିବ, ଅଥବା ଅକାର ବିଷ୍ଣୁ, ଉକାର ବ୍ରହ୍ମା, ମକାର ଶିବ—ଏହିପରି ବର୍ଣ୍ଣ ନିର୍ଣ୍ଣୟ କରାଯାଏ ।

ଶିଷ୍ୟ—ବିଷ୍ଣୁ ଅକାର ?

ଗୁରୁ—ତିନୋଟିଯାକ ଯେତେବେଳେ ଗୋଟିଏ, ତେବେ ଆଉ କଥା କଣ ? କେଉଁ କଳ୍ପରେ ହୁଏତ ଠାକୁରଟି ଅକାର

ରୂପରେ ଲୀଳା କରିଥିଲେ । ଉପରର ପ୍ରଥମ ଶ୍ଳୋକଟି ପରାପର-ମହୋଲ୍ଲାସରେ ମଧ୍ୟ ଉକ୍ତ ହୋଇଅଛି । ବିଶ୍ୱସାର ବିଶ୍ୱପ୍ର ପଟଳରେ ଅଛି—ସେହି ପରଂବ୍ରହ୍ମ କୂଟସ୍ଥ ଜଗତର ଅଙ୍କୁର । ବହ୍ନି, ବାୟୁ, ସୂର୍ଯ୍ୟ ପ୍ରଭୃତି ଦେବଗଣ ବେଦଚତୁଷ୍ଟୟ ସୃଷ୍ଟି ପ୍ରଭୃତି କାଳ କଳ୍ପ—ସେମାନେ ସମସ୍ତେ ହିଁ ତଦାତ୍ମକ ।

ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ବାଙ୍ମନାଶେ ଜଗଦୀଶ୍ୱର ।
ଯସ୍ମିନ୍ ସୃଷ୍ଟିଃ ସଦୈବେତି ଯସ୍ମିନ୍ନଦ୍ୟାପି ତିଷ୍ଠତି ॥
ସ ଏବ ପରମଂ ବ୍ରହ୍ମ ସୋହଂଭାବେନ ଜାୟତେ ॥

ହେ ଜଗଦୀଶ୍ୱର, ଶବ୍ଦର ବିଲୟରେ ଯାହା ଦେହରେ ସମସ୍ତ ଲୀନ ହୁଏ, ଯାହାଠାରୁ ସର୍ବଦା ସୃଷ୍ଟି ହୁଏ, ଯାହା ଦେହରେ ଅଦ୍ୟାପି ସୃଷ୍ଟି ଅବସ୍ଥିତ, ସେହି ପରଂବ୍ରହ୍ମ ସୋହଂ ଭାବରେ ଆବିର୍ଭୂତ ହୁଅନ୍ତି । ସୋହଂର ସ ହ ଲୋପ କରି ଯେତେବେଳେ ସନ୍ଧି କରାଯାଏ ସେତେବେଳେ ସମସ୍ତ ବର୍ଣ୍ଣରେ ଓଁକାର ହୁଏ—ଏହା ବ୍ରହ୍ମା କହିଛନ୍ତି ।

ପରାନନ୍ଦମୟଂ ବ୍ରହ୍ମ ଶବ୍ଦବ୍ରହ୍ମବିଭୂଷିତଂ ।
ଆତ୍ମନୋ ଦେହ ମଧ୍ୟେ ତୁ ସର୍ବମନ୍ତ୍ରାତ୍ମକଂ ପ୍ରିୟେ ॥

ପରମାନନ୍ଦମୟ ଶବ୍ଦବ୍ରହ୍ମ ନାଦଦ୍ୱାରା ବିଭୂଷିତ, ସର୍ବମନ୍ତ୍ରାତ୍ମକ ଓଁକାର ସ୍ୱଶରୀର ମଧ୍ୟରେ ଦୃଷ୍ଟ ହୋଇଥାନ୍ତି ।

କାମଧେନୁ ତନ୍ତ୍ରରେ ଅଛି:—

ବର୍ଣ୍ଣାତ୍ ଜାୟତେ ବ୍ରହ୍ମା ତଥା ବିଷ୍ଣୁଃ ପ୍ରଜାପତିଃ ।
ରୁଦ୍ରଶ୍ଚ ଜାୟତେ ଦେବି ଜଗତ୍-ସଂହାର-କାରକଃ ॥

ଇତି ସର୍ବେଷାମୁପାସ୍ୟାନାଂ ବ୍ରହ୍ମବିଷ୍ଣୁପ୍ରଭୃତୀନାଂ ସର୍ବଗ-କଳାନାମୋଷଧୀନାଞ୍ଚ ବ୍ରହ୍ମସ୍ୱରୂପପ୍ରଣବପଞ୍ଚରଶ୍ମ୍ୟାକାରୋକାରମକାର-ବିନ୍ଦୁନାଦାଦିଭ୍ୟଃ ଉତ୍ପତ୍ତିଃ ।

ବର୍ଣ୍ଣରୁ ପ୍ରଜାପତି ବ୍ରହ୍ମା, ବିଷ୍ଣୁ ଓ ସଂହାରକର୍ତ୍ତା ଶିବ ଉତ୍ପନ୍ନ ହୋଇଥିଲେ । ସମସ୍ତଙ୍କର ଉପାସ୍ୟ ବ୍ରହ୍ମା ବିଷ୍ଣୁ ଶିବ ସର୍ବଗତ କଳାସମୂହର ଏବଂ ଔଷଧିସମୂହର ବ୍ରହ୍ମ ସ୍ୱରୂପ ପ୍ରଣବର ପଞ୍ଚରଶ୍ମି ଅକାର ଉକାର ମକାର ବିନ୍ଦୁ ନାଦ ଆଦିରୁ ଉତ୍ପତ୍ତି ହୋଇଅଛି ।

ପ୍ରୟୋଗସାରରେ କୁହାଯାଇଅଛି:—

ସୋଽନ୍ତରାତ୍ମା ତଦା ଦେବୀ ନାଦାତ୍ମା ନଦତେ ସ୍ୱୟଂ ।
ଯଥା-ସଂସ୍ଥାନ-ଭେଦେନ ସମ୍ଭୂୟ ବର୍ଣ୍ଣତାଂ ଗତଃ
ବାୟୁନା ପ୍ରେର୍ଯ୍ୟମାଣୋଽସୌ ପିଣ୍ଡାଦ୍ ବ୍ୟକ୍ତିଂ ପ୍ରଯାସ୍ୟତି ॥

ସେତେବେଳେ ସେହି ଅନ୍ତରାତ୍ମା ନାଦାତ୍ମା ଦେବୀ ସ୍ୱୟଂ ଧ୍ୱନି କରନ୍ତି । ଯଥାସଂସ୍ଥାନ ଭେଦରେ ଉତ୍ପନ୍ନ ହୋଇ ବର୍ଣ୍ଣରୂପ ପ୍ରାପ୍ତ ହୁଅନ୍ତି । ବାୟୁଦ୍ୱାରା ପ୍ରେରିତ ହୋଇ ଦେହରୁ ବ୍ୟକ୍ତ ହୋଇଥାନ୍ତି ।

ଶିଷ୍ୟ—ସେହି ନାଦକୁ ଶିବ କୁହାଯାଉଛି ପୁଣି ଦେବୀ ବୋଲି କୁହାଯାଉଛି । ଯଥାସଂସ୍ଥାନଭେଦର ଅର୍ଥ କଣ ?

ଗୁରୁ—ଅଷ୍ଟୌ ସ୍ଥାନାନି ବର୍ଣ୍ଣାନାମୁରଃ କଣ୍ଠଃ ଶିରସ୍ତଥା ।
ଜିହ୍ୱା-ମୂଳଞ୍ଚ ଦନ୍ତାଶ୍ଚ ନାସିକୌଷ୍ଠୌ ଚ ତାଲୁକଃ ॥

ବକ୍ଷ କଣ୍ଠ ମସ୍ତକ ଜିହ୍ୱାମୂଳ ଦନ୍ତ ନାସିକା ଓଷ୍ଠ ତାଲୁ—ଏହି ଆଠଟି ସ୍ଥାନରେ ଅବସ୍ଥାନ କରି ବାଗିନ୍ଦ୍ରିୟ ଯଥାସମ୍ଭବ ବିଭିନ୍ନ ବର୍ଣ୍ଣରାଶି ପ୍ରକାଶ କରିଥାଏ । ଏଥିପାଇଁ ବାଗିନ୍ଦ୍ରିୟକୁ ଜିହ୍ୱାମୂଳାଦି ଅଷ୍ଟସ୍ଥାନସ୍ଥିତ କୁହା ଯାଇଅଛି ।

ବୈଖରୀ ଶବ୍ଦନିଷ୍ପତ୍ତିଃ ମଧ୍ୟମା ଶ୍ରୁତିଗୋଚରା ।
ଦ୍ୟୋତିତାର୍ଥା ଚ ପଶ୍ୟନ୍ତୀ ସୂକ୍ଷ୍ମା ବ୍ରହ୍ମୈବ ନାପାୟିନୀ ॥

ଘଟ ଆଦି ଅର୍ଥରୂପା ବୈଖରୀ, ଶ୍ରୋତ୍ରଗ୍ରାହ୍ୟା ମଧ୍ୟମା, ଜ୍ଞାନରୂପା

ପଶ୍ୟନ୍ତୀ ଓ ବ୍ରହ୍ମରୂପା ସୂକ୍ଷ୍ମା । (ଅଲଙ୍କାରକୌମୁଦୀ)
ତୁମର ପ୍ରଥମ ପ୍ରଶ୍ନର ଉତ୍ତର ପ୍ରୟୋଗସାରରେ ଅଛି ।
ନାଦାତ୍ମନା ପ୍ରବୁଦ୍ଧା ସା ନିରାମୟ ପଦୋନ୍ମୁଖୀ ।
ଶିବୋନ୍ମୁଖୀ ଯଦା ଶକ୍ତିଃ ପୁଂରୂପା ସା ତଦା ସ୍ମୃତା ॥

ନିଦ୍ରିତା ଶକ୍ତି ଯେଉଁବେଳେ ସାଧକର ସାଧନା ବଳରେ ନାଦାତ୍ମା ଦ୍ୱାରା ଜାଗରିତ ହୋଇ ନିରାମୟ ପରମପଦ ଆଡ଼କୁ ଯିବାପାଇଁ ଊର୍ଦ୍ଧ୍ୱମୁଖୀ ହୁଅନ୍ତି, ଶକ୍ତି ଯେଉଁବେଳେ ଶିବ ସମ୍ମିଳନ ଲାଭ ପାଇଁ ଉଦ୍‌ଯୁକ୍ତା ହୁଅନ୍ତି, ସେତେବେଳେ ସେ ପୁଂରୂପିଣୀ ବୋଲି ସ୍ମୃତ ହୋଇଥାନ୍ତି । ସୃଷ୍ଟ୍ୟୁନ୍ମୁଖିନୀ ଶକ୍ତି ହିଁ ଯେତେବେଳେ ଶିବୋନ୍ମୁଖୀ ହୁଅନ୍ତି ସେତେବେଳେ ସେ ପୁରୁଷ ଜୀବାତ୍ମା । ବୁଝିଲ ?

ଶିଷ୍ୟ—ଆଜ୍ଞା ହିଁ, ଆଜ୍ଞା ଏହି କୁଣ୍ଡଳିନୀ କେଉଁଠାରେ ଅବସ୍ଥାନ କରନ୍ତି ?

ଗୁରୁ—ଯୋଗିନାଂ ହୃଦୟାମ୍ଭୋଜେ ନୃତ୍ୟନ୍ତୀ ନିତ୍ୟମଞ୍ଜସା ।
ଆଧାରେ ସର୍ବଭୂତାନାଂ ସ୍ଫୁରନ୍ତୀ ବିଦ୍ୟୁଦାକୃତିଃ ॥ ସାରଦା ।

ଯୋଗିଗଣଙ୍କର ହୃଦୟ-କମଳରେ ନିତ୍ୟ ତତ୍ତ୍ୱ ଦ୍ୱାରା ନୃତ୍ୟ କରନ୍ତି ଏବଂ ସମସ୍ତ ପ୍ରାଣୀଗଣଙ୍କର ମୂଳାଧାରଚକ୍ରରେ ବିଦ୍ୟୁଦାକୃତି ସେ କୁଣ୍ଡଳିନୀ ସ୍ଫୁରିତା ହୋଇଥାନ୍ତି ।

ଶିଷ୍ୟ—ନାଦବ୍ରହ୍ମଙ୍କର ଆବିର୍ଭାବ, ବେଦ ଆଦି ନାନା ଶାସ୍ତ୍ରରୂପଧାରଣ, କୁଣ୍ଡଳିନୀ ଶବ୍ଦବ୍ରହ୍ମ ଓଙ୍କାର ଜୀବାତ୍ମା ରୂପରେ ପ୍ରାଣୀଦେହରେ ବିଳାସ ଓ ପରା ପଶ୍ୟନ୍ତୀ ମଧ୍ୟମା ବୈଖରୀର ଲୀଳା ଏବଂ ବର୍ଣ୍ଣରୂପଧାରଣ ପ୍ରଭୃତି ଅପୂର୍ବ ବିଳାସ ଶ୍ରବଣରେ ମୁଁ କୃତାର୍ଥ ହେଲି ।

ଗୁରୁ—ଆସ, ଆମେ ସେହି ନାଦବ୍ରହ୍ମଙ୍କୁ ପ୍ରଣାମ କରିବା ।

ନାଦଂ ନାଦ୍ବଚଶାସ୍ତ୍ରବୃନ୍ଦଧରଣଂ ଶାସ୍ତ୍ରୈକବେଦ୍ୟଂ ଶୁଭଂ
ଶାସ୍ତ୍ରାବାଦ୍ଧକୃପାଳୁପାଦ ରସିକୈଃ ସାକ୍ଷାତ୍କୃତଂ ସର୍ବ୍ବଦା ।
ଶାସ୍ତ୍ରଂ ଶାସନରୂପଦ୍ବବ୍ୟମମଳଂ ପ୍ରୋକ୍ତସାଦ୍ଧନୋଦ୍ଧଣ୍ଡକଂ
ଶବ୍ଦବ୍ରହ୍ମ ନରସ୍ତ-ଦୋଷ ମମଳଂ ନତ୍ୱୋକ୍ତସବେଶଂ ଭଜେ ॥

---

ଓଁ ଶ୍ରୀ ଶ୍ରୀ ଗୁରବେ ନମଃ

ଶ୍ରୀମତେ ରାମାନୁଜାୟ ନମଃ          ଶ୍ରୀମତେ ରାମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ ।

# ଶ୍ରୀଶ୍ରୀନାଦଲୀଳାମୃତ

## ତୃତୀୟ ହିଲ୍ଲୋଳ

ବିଶାଳବିଶ୍ୱସ୍ୟ ବିଧାନ-ବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ ।
ବସୁନ୍ଧରା-ବାରି-ବିମାନ-ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ୱେନ ସଦୋଦିତାୟ
ପୂର୍ଣ୍ଣାୟ ତଦ୍‌ବିଳାସବିଳାସାୟ ଓଁକାରାୟ ନମଃ ।
ଓଁକାରାୟ ନମସ୍ତସ୍ମୈ ଓଙ୍କାରାୟ ନମୋ ନମଃ ।
ଓଁକାରାୟ ନମସ୍ତେଽସ୍ତୁ ଓଁକାରାୟ ନମୋଽସ୍ତୁତେ ॥
ତସ୍ମୈ ନମୋ ଭଗବତେ ନିର୍ଗୁଣାୟ ଗୁଣାତ୍ମନେ ।
କେବଳାୟାଦ୍ୱିତୀୟାୟ ଗୁରବେ ବ୍ରହ୍ମମୂର୍ତ୍ତୟେ ॥
ନମଃ ପ୍ରଣବଦେହାୟ କ୍ଷରାୟ ଚାକ୍ଷରାୟ ଚ ।
ବେଦାୟ ବେଦରୂପାୟ ଶବ୍ଦିନେ ଶବ୍ଦରୂପିଣେ ॥

ଶିଷ୍ୟ—ଅନ୍ୟାନ୍ୟ ବ୍ରହ୍ମବେତ୍ତାମାନେ ନାଦବ୍ରହ୍ମ ସମ୍ବନ୍ଧରେ କଣ କହିଛନ୍ତି ?

ଗୁରୁ—ପାଣିନିଦର୍ଶନ ମତରେ ଶବ୍ଦ ଦ୍ୱିବିଧ—ନିତ୍ୟ ଓ ଅନିତ୍ୟ । ନିତ୍ୟ ଶବ୍ଦ ଏକମାତ୍ର ସ୍ଫୋଟ, ତା ଛଡ଼ା ବର୍ଣ୍ଣାତ୍ମକ ଶବ୍ଦ-ସମୂହ ଅନିତ୍ୟ । ......ଯେପରି ନୀଳ ହଳଦିଆ ରକ୍ତବର୍ଣ୍ଣର ସାନ୍ନିଧ୍ୟବଶତଃ ଗୋଟିଏ ସ୍ଫଟିକ ମଣି କେତେବେଳେ ନୀଳ, କେତେବେଳେ ହଳଦିଆ, କେତେବେଳେ ଅବା ରକ୍ତବର୍ଣ୍ଣ ରୂପରେ ପ୍ରତୀୟମାନ ହୁଏ, ସେହିପରି ସ୍ଫୋଟ ଏକମାତ୍ର ହେଲେ ମଧ୍ୟ ଘଟପଟ ଆଦି ଭିନ୍ନ ଭିନ୍ନ ଅର୍ଥର ବୋଧକ ହୁଏ । ଏହି ମତରେ ସ୍ଫୋଟକୁ ହିଁ ସଚ୍ଚିଦାନନ୍ଦ ବ୍ରହ୍ମ ବୋଲି ସ୍ୱୀକାର କରିଛନ୍ତି ।

ମହାଭାଷ୍ୟର ଟୀକାକାରମାନେ କୁହନ୍ତି—ସ୍ଥାୟୀ ଶବ୍ଦ ମନୁଷ୍ୟର ଦେହରେ ପ୍ରବିଷ୍ଟ ହୋଇ ତାହାକୁ ବା ସେହି ମନୁଷ୍ୟକୁ ସ୍ଥାୟୀ ପଦରେ ଲୀନ କରିଦିଏ । ଯେଉଁ ବ୍ୟକ୍ତି ବାକ୍‌ସିଦ୍ଧ ଅର୍ଥାତ୍ ସତ୍ୟବାକ୍, ଯାହାଙ୍କର ଜ୍ଞାନମୟ ବାକ୍ୟଦ୍ୱାରା ପାତକ ଧୌତ ହୋଇ ଯାଇଅଛି, ତାଙ୍କର ଦେହରେ ଏହି ଶବ୍ଦମୟ ବ୍ରହ୍ମ ପ୍ରବେଶ କରି-ଥାନ୍ତି ।" (ଶିବତତ୍ତ୍ୱବିବେକ) କାରଣ ଶୂନ୍ୟ ସ୍ୱତ ଉତ୍ଥିତ ଶବ୍ଦ ପରି ସ୍ଥାୟୀ ଶବ୍ଦ ।

ଶିଷ୍ୟ—ବେଦାନ୍ତ ଦର୍ଶନର ୧ । ୩ । ୨୯ ସୂତ୍ରର ଭାଷ୍ୟରେ ଶ୍ରୀଭଗବାନ୍ ଶଙ୍କରାଚାର୍ଯ୍ୟ ତ ମଧ୍ୟ ଶବ୍ଦକୁ ନିତ୍ୟ ବୋଲି କହିଛନ୍ତି । ଯେହେତୁ ନିର୍ଦ୍ଦିଷ୍ଟ ଆକୃତିମାନ୍ ଦେବତା ପ୍ରଭୃତି ଜଗତ୍ ନିତ୍ୟ, ସେହି ହେତୁ ବେଦ ଶବ୍ଦ ମଧ୍ୟ ନିତ୍ୟ ଅର୍ଥାତ୍ ଅନାଦି ଅନନ୍ତ ।

ଗୁରୁ—ହଁ । ଜୈମିନି କହିଛନ୍ତି—

"ନିତ୍ୟସ୍ତୁ ସ୍ୟାଦ୍ଦର୍ଶନସ୍ୟ ପରାର୍ଥତ୍ୱାତ୍ ।"

ପୂର୍ବମୀମାଂସା ୧ । ୧ । ୧୮

ସୂତ୍ରସ୍ଥ ତୁ ଶବ୍ଦଦ୍ୱାରା ଶବ୍ଦର ଅନିତ୍ୟତ୍ୱ ଆଶଙ୍କା ନିବାରିତ ହୋଇଅଛି । ମୁନି କହିଛନ୍ତି ଯେ, ଶବ୍ଦ ଉଚ୍ଚାରିତ ହୋଇ ଶ୍ରୁତ

ହେବା ମାତ୍ରେ ତାହାର ଅର୍ଥ ଉପଲବ୍ଧି ହୋଇଥାଏ ; ଶବ୍ଦ ଅନିତ୍ୟ ହୋଇଥିଲେ ତାହା କଦାପି ହୁଅନ୍ତା ନାହିଁ । ଆଚାର୍ଯ୍ୟ ପିଙ୍ଗଳ କହିଛନ୍ତି ଯେ ଆତ୍ମା ବୁଦ୍ଧିଦ୍ୱାରା ଅର୍ଥ ବା ପ୍ରୟୋଜନ ନିର୍ଣ୍ଣୟ ପୂର୍ବକ ତାହା ମନକୁ ସଙ୍କଳ୍ପିତ କରନ୍ତି, ମନ ତାହା କାୟସ୍ଥ ଅଗ୍ନିଙ୍କୁ (ତେଜଙ୍କୁ) ସଙ୍କଳ୍ପିତ କରନ୍ତି, ତେଜ ବାୟୁକୁ କରନ୍ତି । ପରିଶେଷରେ ବାୟୁ ଏହି ପ୍ରକାରରେ ସଙ୍କଳ୍ପିତ ବା ଚୈତନ୍ୟସାମର୍ଥ୍ୟରେ ପ୍ରେରିତ ବା ସ୍ପନ୍ଦିତ ହୋଇ ମୁଖବିବରରେ ପ୍ରବେଶପୂର୍ବକ ସ୍ଥାନ ଓ ପ୍ରଯତ୍ନ ଆଦି ଭେଦରେ ବିବିଧ ବର୍ଣ୍ଣ ଆଦି ଉତ୍ପାଦନ କରିଥାନ୍ତି । ଏହିପରି ପ୍ରକାରରେ ଉତ୍ପନ୍ନ ବର୍ଣ୍ଣାଦିର ସଂଯୋଜନରେ ଶବ୍ଦ ବା ବାକ୍ୟର ସୃଷ୍ଟି ହୁଏ ; ଏହି ଶବ୍ଦରେ ବକ୍ତାର ଯେଉଁ ବଦନ ସାମର୍ଥ୍ୟର ପ୍ରକାଶ ତାହା ନିତ୍ୟ ଏବଂ ସ୍ୱୟଂ ଚୈତନ୍ୟ ଜ୍ୟୋତିଃସ୍ୱରୂପର ଦ୍ୟୋତକ । ବକ୍ତାର ଏହି ବଦନସାମର୍ଥ୍ୟ କେବେହେଲେ ନଷ୍ଟ ହୁଏ ନାହିଁ । ଏହା ଅବିନାଶୀ । ଅତଏବ ଶବ୍ଦ ବର୍ଣ୍ଣସମୂହର ସଂଯୋଜନ ଫଳ ମାତ୍ର । ବର୍ଣ୍ଣାତ୍ମକ ଏହି ଶବ୍ଦହିଁ ଆମ୍ଭେମାନେ ଶ୍ରବଣାଦିଦ୍ୱାରା ଉପଲବ୍ଧି କରିଥାଉ । ଅତଏବ ବର୍ଣ୍ଣ କ୍ଷଣଧ୍ୱଂସୀ ଏବଂ ଅନିତ୍ୟ । କିନ୍ତୁ ବଦନସାମର୍ଥ୍ୟର ପ୍ରକାଶହିଁ ନିତ୍ୟ ଚୈତନ୍ୟ ସ୍ୱରୂପ, ଏହାହିଁ ସ୍ଫୋଟ ।

ଯଦ୍‌ବାଚାନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ ।
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥
କେନୋପନିଷଦ୍ (୧ । ୫)

ଧ୍ୱନିଃ ସ୍ଫୋଟଶ୍ଚ ଶବ୍ଦାନାଂ ଧ୍ୱନିସ୍ତୁ ଖଲୁ ଲକ୍ଷ୍ୟତେ ।
ହ୍ରସ୍ୱୋ ମହାଂଶ୍ଚ କେଷାଞ୍ଚିତ୍ ସ୍ୱୟଂ ନୈବ ସ୍ୱଭାବତଃ ॥
ମହାଭାଷ୍ୟ

ଶିଷ୍ୟ—ଶ୍ରୀମଦ୍ଭାଗବତରେ ତ ନାଦକୁହିଁ ସ୍ଫୋଟ ବୋଲି ଶ୍ରୀ ଶୁକଦେବ ଉଲ୍ଲେଖ କରିଛନ୍ତି ।

ଗୁ ରୁ—ହଁ, ପାଣିନିକୃତ ଶିକ୍ଷାରେ କଥିତ ହୋଇଅଛି—

ଆତ୍ମା ବୁଦ୍ଧ୍ୟା ସମେତ୍ୟାର୍ଥାନ୍ ମନୋଯୁଙ୍କ୍ତେ ବିବକ୍ଷୟା ।
ମନଃ କାୟାଗ୍ନିମାହନ୍ତି ସଃ ପ୍ରେରୟତି ମାରୁତଂ ।
ମାରୁତସ୍ତୁରସି ଚରନ୍ ମନ୍ଦ୍ରଂ ଜନୟତି ସ୍ୱରମ୍ ।

ଅର୍ଥାତ୍ ଆତ୍ମା ବୁଦ୍ଧି ସହିତ ଯୁକ୍ତ ହୋଇ ସମସ୍ତ ବିଷୟ ଆତ୍ମଗତ କରି ବିବକ୍ଷିତ ପଦାର୍ଥର ନିରୂପଣାର୍ଥେ ମନକୁ ନିଯୁକ୍ତ କରେ, ମନ କାୟାଗ୍ନିକୁ ଗୃହିତ କରେ ଏବଂ କାୟାଗ୍ନି ଶରୀରାଭ୍ୟନ୍ତରସ୍ଥ ବାୟୁକୁ ପ୍ରେରଣ କରେ । ଅନନ୍ତର ଏହି ବାୟୁ ବକ୍ଷଃସ୍ଥଳରେ ପ୍ରବେଶ କରି ମନ୍ଦ୍ରସ୍ୱର ଉତ୍ପନ୍ନ କରେ । ପରେ ଏହି ସ୍ୱରହିଁ ମୁଖଗହ୍ୱରକୁ ଆସି କଣ୍ଠ ତାଳୁ ଆଦି ସଂଯୋଗରେ ବୈଖରୀ ବାକ୍ ରୂପରେ ପ୍ରକାଶିତ ହୁଏ ।

ଶିଷ୍ୟ—ପିଙ୍ଗଳାଚାର୍ଯ୍ୟ, ପାଣିନି ମୁନି—ଏମାନଙ୍କର ମତ ଏକ ପ୍ରକାର ।

ଗୁରୁ—ହଁ, ଭଗବାନ ଉପବର୍ଷ କୁହନ୍ତି, "ବର୍ଣ୍ଣ ଏବ ତୁ ଶବ୍ଦ" ଇତି ଅର୍ଥାତ୍ ବର୍ଣ୍ଣ ଶବ୍ଦମୂଳକ ବା ଶବ୍ଦର ସ୍ଥୂଳ ପରିଚୟକ ।

ବାକ୍ୟପଦୀୟ ଗ୍ରନ୍ଥରେ ଭର୍ତ୍ତୃହରି କହିଛନ୍ତି—

ଶବ୍ଦସ୍ୟ ପରିଣାମୋଽୟମିତ୍ୟାମ୍ନାୟବିଦୋ ବିଦୁଃ ।

ଆମ୍ନାୟ— (ବେଦ-) ବିଦ୍‌ଗଣ—ବେଦଜ୍ଞ ପୁରୁଷବୃନ୍ଦ—ବିଶ୍ୱଜଗତକୁ ଶବ୍ଦର ପରିଣାମ ବୋଲି କହିଥାନ୍ତି ।

"ବାଗେବାର୍ଥଂ ପଶ୍ୟତି ବାଗ୍-ବ୍ରବୀତି ।
ବାଗେବାର୍ଥଂ ସନ୍ନିହିତଂ ସନ୍ତନୋତି ॥

ବାଚୈବ ବିଶ୍ୱଂ ବହୁରୂପଂ ନିବଦ୍ଧଂ ।
ତଦେବୈତଦେକଂ ପ୍ରବିଭଜ୍ୟୋପଭୁଙ୍‌କ୍ତେ ॥" ଇତି
(ବାକ୍ୟପଦୀୟଧୃତ)

ବାକ୍ ବା ଶବ୍ଦହିଁ ଅର୍ଥକୁ ଦର୍ଶନ କରେ, ଶବ୍ଦ ହିଁ ଅର୍ଥ ବୋଲି ଅର୍ଥର ବାଚକ ହୁଏ, ବାକ୍ ବା ଶବ୍ଦହିଁ ଅର୍ଥସମୂହକୁ ସନ୍ନିହିତ କରି ଆକର୍ଷଣ କରେ, ବାକ୍ ବା ଶବ୍ଦ ଦ୍ୱାରା ବିଶ୍ୱ ବହୁରୂପରେ ନିବଦ୍ଧ ହୋଇଅଛି ।

ଅଥେଦମାନ୍ତରଂ ଜ୍ଞାନଂ ସୂକ୍ଷ୍ମବାଗାତ୍ମନା ସ୍ଥିତମ୍ ।
ବ୍ୟକ୍ତୟେ ସ୍ୱସ୍ୟ ରୂପସ୍ୟ ଶବ୍ଦତ୍ୱେନ ନିବର୍ତ୍ତତେ ॥
(ବାକ୍ୟପଦୀୟଧୃତ)

"ସୂକ୍ଷ୍ମ ବାଗାତ୍ମାରେ ଅବସ୍ଥିତ ଆନ୍ତର ଜ୍ଞାନ ସ୍ୱକୀୟ ରୂପର ଅଭିବ୍ୟକ୍ତି ନିମିତ୍ତ ଶବ୍ଦରୂପରେ ବିବର୍ତ୍ତିତ ହୋଇଥାଏ । ଶବ୍ଦ (ଭେଦ ସଂସର୍ଗ ବୃତ୍ତିଶକ୍ତି) ମନୋଭବ ପ୍ରାପ୍ତ ଓ ତେଜ ଦ୍ୱାରା ପରିପକ୍ୱ (ଅନୁଗୃହୀତ) ହୋଇ ପ୍ରାଣବାୟୁରେ ପ୍ରବିଷ୍ଟ ହୁଏ, ଏବଂ ବାୟୁ, ଅନ୍ତଃକରଣ-ତତ୍ତ୍ୱର ଆଶ୍ରୟରେ ତଦ୍ଧର୍ମସମାବିଷ୍ଟ ହୋଇ ତେଜଦ୍ୱାରା ବିବର୍ତ୍ତିତ ହୋଇଥାଏ । ଅତଏବ ଶବ୍ଦ, ଚୈତନ୍ୟାଧିଷ୍ଠିତ ଭେଦ ସଂସର୍ଗବୃତ୍ତିଶକ୍ତି । ଶବ୍ଦ ନିତ୍ୟ ଓ କାର୍ଯ୍ୟଭେଦରେ ଦ୍ୱିବିଧ । କାର୍ଯ୍ୟ ଶବ୍ଦ ସଗୁଣ ବ୍ରହ୍ମ । ନିତ୍ୟ ଶବ୍ଦ ଓ ନିର୍ଗୁଣ ବ୍ରହ୍ମ ଅଭିନ୍ନ ।"
(ଯୋଗତ୍ରୟାନନ୍ଦ)

ଶିଷ୍ୟ—ନିତ୍ୟ ଶବ୍ଦ ସ୍ଫୋଟ ବା ନାଦକୁ ହିଁ କହୁଛନ୍ତି ତ—ତାହାର ନିର୍ଗୁଣତ୍ୱ ମୁଁ ଠିକ୍ ଧାରଣା କରିପାରୁନାହିଁ । ନାଦ ଯେତେବେଳେ ଶୁଣାଯାଉଛି, ସେତେବେଳେ ତାହାକୁ ନିର୍ଗୁଣ ବୋଲି କିପରି କୁହାଯିବ ?

ଗୁରୁ—ଏ ସମ୍ବନ୍ଧରେ ପରେ ଆଲୋଚନା କରିବ । ଶୁଣ—

ଅନାଦିନିଧନଂ ବ୍ରହ୍ମ ଶବ୍ଦତତ୍ତ୍ୱଂ ଯଦକ୍ଷରଂ ।
ବିବର୍ତ୍ତତେଽର୍ଥଭାବେନ ପ୍ରକ୍ରିୟା ଜଗତୋ ଯତଃ ॥
ଗ୍ରାହ୍ୟତ୍ୱଂ ଗ୍ରାହକତ୍ୱଂ ଚ ଦ୍ୱେ ଶକ୍ତୀ ତେଜସୋ ଯଥା ।
ତଥୈବ ସର୍ବ୍ୱଶବ୍ଦାନାମେତେ ପୃଥଗବସ୍ଥିତେ ॥

ବାକ୍ୟପଦୀୟ

ଅର୍ଥାତ୍ ଏକା ତେଜର ଯେପରି ଗ୍ରାହ୍ୟତ୍ୱ ଏବଂ ଗ୍ରାହକତ୍ୱ ଦ୍ୱିବିଧ ଶକ୍ତି ଦେଖାଯାଏ, ସେହିପରି ସମସ୍ତ ଶବ୍ଦର ମଧ୍ୟ ଦୁଇଟି ସାମର୍ଥ୍ୟ ଅଛି ; ସେଇଥିପାଇଁ ଶବ୍ଦ ଜ୍ଞାତା ଏବଂ ଜ୍ଞେୟ, ଗ୍ରାହକ ଏବଂ ଗ୍ରାହ୍ୟ ।

ସର୍ବଭୂତାଦି ପରିବ୍ୟାପକ ଚୈତନ୍ୟ ହିଁ ଶବ୍ଦ ବ୍ରହ୍ମ ।

ଅଜସ୍ରବୃତ୍ତିଃ ଯଃ ଶବ୍ଦଃ ସୂକ୍ଷ୍ମତ୍ୱାନ୍ନୋପଲଭ୍ୟତେ ।
ବ୍ୟଞ୍ଜନାଦ୍ ବାୟୁରିବ ସ ସ୍ୱନିମିତ୍ତାତ୍ ପ୍ରତୀୟତେ ॥
ଅଣବଃ ସର୍ବ୍ୱଶକ୍ତିତ୍ୱାଦ୍ ଭେଦସଂସର୍ଗବୃତ୍ତୟଃ ।
ଛାୟାତପତମଃ ଶବ୍ଦ ଭାବେନ ପରିଣାମିନଃ ॥
ସ୍ୱଶକ୍ତୌ ବ୍ୟଜ୍ୟମାନାୟାଂ ପ୍ରଯତ୍ନେନ ସମୀରିତାଃ ।
ଅଭ୍ରାଣୀବ ପ୍ରଚୀୟନ୍ତେ ଶବ୍ଦାଖ୍ୟାଃ ପରମାଣବଃ ॥

ବାକ୍ୟପଦୀୟ

ନିରନ୍ତର ବୃତ୍ତିସମ୍ପନ୍ନ ଯେଉଁ ଶବ୍ଦ ସୂକ୍ଷ୍ମତ୍ୱ ହେତୁ ଉପଲବ୍ଧି ହୁଏ, ପ୍ରକାଶନ ହେତୁ ବାୟୁ ପରି ସ୍ୱୀୟ ନିମିତ୍ତଠାରୁ ପ୍ରତୀତ ହୋଇଥାଏ, ଭେଦସଂସର୍ଗବୃତ୍ତି ଅଣୁଗୁଡ଼ିକ ସର୍ବଶକ୍ତିତ୍ୱ ହେତୁ ଛାୟା ଆତପ ତମଃ ଶବ୍ଦ ଭାବଦ୍ୱାରା ପରିଣାମଶୀଳ । ଏହି ସ୍ୱଶକ୍ତିରେ ବ୍ୟଜ୍ୟମାନ ପ୍ରଯତ୍ନ ସହକାରେ ସମ୍ୟକ୍ ରୂପେ ପ୍ରେରିତ ଶବ୍ଦ ନାମକ ପରମାଣୁଗୁଡ଼ିକ ମେଘସମୂହ ପରି ବ୍ୟାପ୍ତ ହୋଇଥାଏ ।

ସଙ୍ଗୀତଦାମୋଦରରେ ଅଛି—

ଆତ୍ମନା ପ୍ରେରିତଂ ଚିତ୍ତଂ ବହ୍ନିମାହନ୍ତି ଦେହଜମ୍ ।
ବ୍ରହ୍ମଗ୍ରନ୍ଥିସ୍ଥିତଂ ପ୍ରାଣଂ ସ ପ୍ରେରୟତି ପାବକଃ ॥
ପାବକପ୍ରେରିତଂ ସୋଽଥ କ୍ରମାଦୂର୍ଦ୍ଧ୍ୱପଥେ ଚରନ୍ ।
ଅତିସୂକ୍ଷ୍ମଧ୍ୱନିଂ ନାଭୌ ହୃଦି ସୂକ୍ଷ୍ମଂ ଗଳେ ପୁନଃ ॥
ପୁଷ୍ଟଂ ଶୀର୍ଷେଽପ୍ୟପୁଷ୍ଟଞ୍ଚ କୃତ୍ରିମଂ ବଦନେ ତଥା ।
ଆବିର୍ଭାବୟତିତ୍ୟେବଂ ପଞ୍ଚଧା କୀର୍ତ୍ତ୍ୟତେ ବୁଧୈଃ ।
ନକାରଂ ପ୍ରାଣନାମାନଂ ଦକାରମନଳଂ ବିଦୁଃ ।
ଜାତଃ ପ୍ରାଣାଗ୍ନିସଂଯୋଗାତ୍ତେନ ନାଦୋଽଭିଧୀୟତେ ॥
(ଜୀବତତ୍ତ୍ୱବିବେକ)

ଚୈତନ୍ୟ ବା ଆତ୍ମା କର୍ତ୍ତୃକ ପ୍ରେରିତ ଚିତ୍ତ ଦେହସ୍ଥିତ ଅଗ୍ନିକୁ ଆଘାତ କରେ । ପରେ ସେହି ଅଗ୍ନି ବ୍ରହ୍ମଗ୍ରନ୍ଥିସ୍ଥିତ ପ୍ରାଣକୁ ପ୍ରେରଣ କରେ; ସେହି ପ୍ରାଣ ଅଗ୍ନିପ୍ରେରିତ ହୋଇ କ୍ରମେ ଊର୍ଦ୍ଧ୍ୱପଥରେ ବିଚରଣ କରୁ କରୁ ନାଭିରେ ଅତି ସୂକ୍ଷ୍ମ ଧ୍ୱନି, ହୃଦୟରେ ସୂକ୍ଷ୍ମ, ଗଳାରେ ପୁଷ୍ଟ, ଶୀର୍ଷଦେଶରେ ଅପୁଷ୍ଟ, ବଦନରେ କୃତ୍ରିମ—ଏହି ପାଞ୍ଚ ପ୍ରକାର ନାଦ ବା ଶବ୍ଦ ଉତ୍ପନ୍ନ କରେ; ଅର୍ଥାତ୍ ଅତିସୂକ୍ଷ୍ମ ସୂକ୍ଷ୍ମ ପୁଷ୍ଟ ଅପୁଷ୍ଟ ଏବଂ କୃତ୍ରିମ (ସ୍ଥୂଳ ରୂପରେ ପ୍ରକାଶିତ) —ଏହି ପାଞ୍ଚପ୍ରକାର ନାଦ ବା ଶବ୍ଦ । ନକାରର ନାମ ପ୍ରାଣ ଏବଂ ଦକାରର ନାମ ଅଗ୍ନି । ପ୍ରାଣ ଏବଂ ଅଗ୍ନି ସଂଯୋଗରେ ଉତ୍ପତ୍ତି, ସେଥିପାଇଁ ଏହାର ନାମ ନାଦ ବା ଶବ୍ଦ ।

ଯଦୁକ୍ତଂ ବ୍ରହ୍ମଣଃ ସ୍ଥାନଂ ବ୍ରହ୍ମଗ୍ରନ୍ଥିଶ୍ଚ ଯୋ ମତଃ ।
ତନ୍ମଧ୍ୟେ ସଂସ୍ଥିତଃ ପ୍ରାଣଃ ପ୍ରାଣାଦ୍‌ବହ୍ନି ସମୁଦ୍ଭବଃ ॥
ବହ୍ନିମାରୁତସଂଯୋଗାନ୍ନାଦଃ ସମୁପଜାୟତେ ।

ନ ନାଦେନ ବିନା ଗୀତଂ ନ ନାଦେନ ବିନା ସ୍ୱରଃ ।
ନ ନାଦେନ ବିନା ରାଗସ୍ତସ୍ମାନ୍ନାଦାତ୍ମକଂ ଜଗତ୍ ॥
ନ ନାଦେନ ବିନା ଜ୍ଞାନଂ ନ ନାଦେନ ବିନା ଶିବଃ ।
ନାଦରୂପଂ ପରଂ ଜ୍ୟୋତିର୍ନାଦରୂପୀ ସ୍ୱୟଂ ହରିଃ ॥

ଶବ୍ଦକଳ୍ପଦ୍ରୁମଧୃତ ସଙ୍ଗୀତଦାମୋଦର

ଯାହା ବ୍ରହ୍ମର ସ୍ଥାନ ବ୍ରହ୍ମଗ୍ରନ୍ଥି ବୋଲି କଥିତ ହୋଇଅଛି, ତନ୍ମଧ୍ୟରେ ଅବସ୍ଥିତ ପ୍ରାଣ । ପ୍ରାଣରୁ ଅଗ୍ନି ଉତ୍ପନ୍ନ ହୁଏ । ବହ୍ନି ଏବଂ ବାୟୁର ସଂଯୋଗ ହେତୁ ନାଦ ସମୁତ୍ପନ୍ନ ହୋଇଥାଏ । ନାଦ ବିନା ଗୀତ ହୋଇପାରେ ନାହିଁ, ନାଦ ବିନା ଉଦାତ୍ତ ଅନୁଦାତ୍ତ ସ୍ୱରିତ ସ୍ୱର, ନାଦ ବିନା ରାଗ କଦାପି ହୋଇପାରେ ନାହିଁ, ସେଇଥିପାଇଁ ଜଗତ୍ ନାଦାତ୍ମକ, ନାଦ ବ୍ୟତୀତ ଜ୍ଞାନ ନାହିଁ, ନାଦ ବିନା ଶିବ ନାହିଁ, ପରମ ଜ୍ୟୋତି ନାଦରୂପ, ସ୍ୱୟଂ ହରି ନାଦ-ରୂପୀ ।

ନାଭେରୁର୍ଦ୍ଧ୍ୱଂ ହୃଦସ୍ଥାନାଦ୍ ମାରୁତଃ ପ୍ରାଣସଂଜ୍ଞକଃ ।
ନଦତି ବ୍ରହ୍ମରନ୍ଧ୍ରାନ୍ତେ ତେନ ନାଦଃ ପ୍ରକୀର୍ତ୍ତିତଃ ॥

ଶବ୍ଦକଳ୍ପଦ୍ରୁମଧୃତ ସଙ୍ଗୀତଦାମୋଦର

ନାଭିର ଊର୍ଦ୍ଧ୍ୱ ହୃଦସ୍ଥାନଠାରୁ ପ୍ରାଣ ନାମକ ବାୟୁ ବ୍ରହ୍ମରନ୍ଧ୍ର ମଧ୍ୟରେ ଶବ୍ଦ କରେ—ସେଇଥିପାଇଁ ନାଦ ବୋଲି କଥିତ ହୁଏ ।

ଆକାଶାଗ୍ନିମରୁଜ୍ଜାତୋ ନାଭେରୁର୍ଦ୍ଧ୍ୱଂ ସମୁଚ୍ଚରନ୍ ।
ମୁଖେଽଭିବ୍ୟକ୍ତିମାୟାତି ଯଃ ସ ନାଦ ଇତୀରିତଃ ॥

ଆକାଶ, ଅଗ୍ନି ଏବଂ ପ୍ରାଣରୁ ଉତ୍ପନ୍ନ ନାଭିର ଊର୍ଦ୍ଧ୍ୱଦେଶରେ ସମ୍ୟକ୍ ବିଚରଣ କରୁ କରୁ ଯେ ବଦନରେ ଅଭିବ୍ୟକ୍ତ ହୁଅନ୍ତି, ସେ ନାଦ ।

ଶିଷ୍ୟ—ସଙ୍ଗୀତଦାମୋଦର ମତରେ ନାଭିରେ ଅତି ସୂକ୍ଷ୍ମ ଧ୍ୱନି ଅର୍ଥାତ୍ ପଶ୍ୟନ୍ତୀ ଅବସ୍ଥା ହୁଏ, ଏ କଥା ଶ୍ରୀଧର ସ୍ୱାମୀ ମଧ୍ୟ କହିଛନ୍ତି ।

ଗୁରୁ—ହଁ,—"ଇତିପୂର୍ବରେ କହିଛି ଯେ ଉତ୍ପତ୍ତି-ବିନାଶ-ରହିତ ଜ୍ଞାନ ହିଁ ବ୍ରହ୍ମ ଚୈତନ୍ୟ ନାମରେ ଖ୍ୟାତ । ସେହି ଆତ୍ମାର ଜ୍ଞାନରୂପ ବ୍ରହ୍ମଚୈତନ୍ୟ ଶବ୍ଦରୂପରେ ବିବର୍ତ୍ତିତ ହୋଇ ପ୍ରକାଶିତ ହୋଇଥାନ୍ତି । ଏହି ଜ୍ଞାନାତ୍ମକ ଶବ୍ଦ ମନୋଭାବପ୍ରାପ୍ତ ଏବଂ ତେଜ-ପ୍ରଭାବରେ ବିବର୍ଦ୍ଧିତ ହୋଇ ପ୍ରାଣରୂପ ଧାରଣ କରନ୍ତି । ସେହି ପ୍ରାଣ ହିଁ ପୁନଃ ସ୍ଥୂଳତମ ଶବ୍ଦରୂପରେ ପ୍ରତୀୟମାନ ହୁଏ । ଏହାହିଁ ଆତ୍ମାର ପ୍ରାଣରୂପତ୍ୱ—ପ୍ରାଣାଶ୍ରୟତ୍ୱାତ୍ ପ୍ରାଣାତ୍ମକତ୍ୱାଦ୍ ବା । ସେଥିପାଇଁ ବ୍ୟାସଦେବ କହିଛନ୍ତି "ଅତଏବ ପ୍ରାଣଃ ।" (ବେଦାନ୍ତ ଦର୍ଶନ ୧ । ୧ । ୨୩) ଅର୍ଥାତ୍ ପ୍ରାଣର ବ୍ରହ୍ମଲିଙ୍ଗତ୍ୱ ଶ୍ରୁତି ଥିବାରୁ ପ୍ରାଣ ବ୍ରହ୍ମ ବୋଲି ଅଭିହିତ ।" ଜୀବତତ୍ତ୍ୱବିବେକ

ଏକ କଥାରେ କହିବାକୁ ଗଲେ ବଦନସାମର୍ଥ୍ୟରେ ସ୍ଫୁରଣ ହିଁ ସଚ୍ଚିଦାନନ୍ଦ ବ୍ରହ୍ମ । ଶବ୍ଦ ଉଚ୍ଚାରଣ କାଳରେ ପରା-ପଶ୍ୟନ୍ତୀ ଆଦି କ୍ରମରେ ଶରୀରାଧିଷ୍ଠିତ ସେହି ବ୍ରହ୍ମ ହିଁ ପ୍ରକାଶିତ ହୋଇଥାନ୍ତି । ସେଥିପାଇଁ ଶବ୍ଦକୁ ଉପରୋକ୍ତ କ୍ରମରେ ନିତ୍ୟ ବୋଲି କୁହାଯାଏ ।

"ଅପିଚ ଆଚାର୍ଯ୍ୟ ଶଙ୍କର କହନ୍ତି ଯେ ଦୂରରୁ ଶବ୍ଦ ଶୁଣା-ଯାଉଛି ଅଥଚ ପରିଷ୍କାର ଭାବରେ କିଛି ବୁଝି ହେଉନାହିଁ, କେବଳ ତାରତ୍ୱାଦି ଜ୍ଞାନ ହେଉଅଛି—ଏହିପରି ଜ୍ଞାନକୁ ଧ୍ୱନି କୁହାଯାଏ ।

ଅତଏବ କହିବାକୁ ହେବ ଯେ ଧ୍ୱନି ହିଁ (ଶ୍ରବଣସାମର୍ଥ୍ୟ) ସ୍ଫୋଟ, କିନ୍ତୁ ଇତିପୂର୍ବେ ପ୍ରମାଣିତ ହୋଇଯାଇଛି ଯେ ସ୍ଫୋଟ ହିଁ ସଚ୍ଚିଦାନନ୍ଦ ବ୍ରହ୍ମ, ସୁତରାଂ ଧ୍ୱନି ମଧ୍ୟ ସଚ୍ଚିଦାନନ୍ଦ ବ୍ରହ୍ମ ସ୍ୱରୂପ । ଏହି ସଚ୍ଚିଦାନନ୍ଦ ବ୍ରହ୍ମ ହିଁ ଶ୍ରବଣସାମର୍ଥ୍ୟ, ବଦନସାମର୍ଥ୍ୟ,

ଦର୍ଶନସାମର୍ଥ୍ୟ ଇତ୍ୟାଦି ପ୍ରକାର ତାବତ୍ ଇନ୍ଦ୍ରିୟସାମର୍ଥ୍ୟ ଅବସ୍ଥିତ ହୋଇଥାଏ । ଇନ୍ଦ୍ରିୟଗଣ ଦ୍ୱାର ବା ଗୋଲକମାତ୍ର । ଅତଏବ କହିବାକୁ ହେବ ଯେ ଏହି ସଚ୍ଚିଦାନନ୍ଦ ବ୍ରହ୍ମ (ଚିଦାକାଶ) ଦ୍ୱାରା ହିଁ ଶବ୍ଦ ଗ୍ରାହ୍ୟରୂପେ ଜ୍ଞାତ ହୋଇଥାଏ; ସେଥିପାଇଁ ଭଗବାନ ଗୀତାରେ କହିଛନ୍ତି "ଶବ୍ଦ ଖେ" ଅର୍ଥାତ୍ ଆକାଶର ଗୁଣ ଯେ ଶବ୍ଦ ତାହା ମୁଁ ସହଜ କଥାରେ ଶବ୍ଦର ଅବବୋଧକ ଅଥଚ ତତ୍‌ସଂଭୂତ ଯେ ପଦାର୍ଥ ତାହା (ମୁହିଁ) ବ୍ରହ୍ମ ଚୈତନ୍ୟ ।"

ଶିଷ୍ୟ—ତା ହେଲେ ପରଶବ୍ଦ ବଦନସାମର୍ଥ୍ୟର ସ୍ଫୁରଣ ହିଁ ସଚ୍ଚିଦାନନ୍ଦ ପର ପ୍ରଣବ । ମାଣ୍ଡୂକ୍ୟ ଉପନିଷଦରେ ଏହାକୁ ଚତୁର୍ଥ ବୋଲି ଉଲ୍ଲେଖ କରିଛନ୍ତି । ସେ କାରଣ ଏବଂ ନାଦବ୍ରହ୍ମ, କାର୍ଯ୍ୟ ଅପର ପ୍ରଣବ ।

ଗୁରୁ—ହଁ, ଆହୁରି ଶୁଣ । "ଶୌନକ କହନ୍ତି—

ଶବ୍ଦଃ ପ୍ରକୃତିଃ ସର୍ବବର୍ଣ୍ଣାନାମ୍ ।

ତୈତ୍ତିରୀୟ ପ୍ରାତିଶାଖ୍ୟ ୨୨ ଅଃ

ଶବ୍ଦ ହିଁ ସମସ୍ତ ବର୍ଣ୍ଣର ମୂଳ କାରଣ ।

ତସ୍ୟ ରୂପାନ୍ୟତ୍ୱେ ବର୍ଣ୍ଣାନ୍ୟତ୍ୱମ୍ ।

ଅର୍ଥାତ୍ ଶବ୍ଦର ରୂପଭେଦରେ ବର୍ଣ୍ଣର ରୂପଭେଦ ହୁଏ, ଅତଏବ ପ୍ରତିପନ୍ନ ହେଲା ଯେ ପ୍ରାଣନ-କ୍ରିୟାଯୁକ୍ତ ଚୈତନ୍ୟ ହିଁ ଶବ୍ଦଧାରଭୂତ; ସୁତରାଂ ଶବ୍ଦ ନିତ୍ୟ ।"

ଶିଷ୍ୟ—ସ୍ଫୋଟରୂପ ଶବ୍ଦର ନିତ୍ୟତ୍ୱ ଶ୍ରୀଭଗବାନ ଭାଗବତରେ, ଭଗବାନ ବ୍ୟାସଦେବ ଓ ଭଗବାନ୍ ଶଙ୍କରାଚାର୍ଯ୍ୟ ବେଦାନ୍ତ ସୂତ୍ରରେ କହିଛନ୍ତି ।

ଗୁରୁ—ହଁ, ଯେ ପର୍ଯ୍ୟନ୍ତ ବ୍ରହ୍ମାଣ୍ଡ ଅଛି, ସେ ପର୍ଯ୍ୟନ୍ତ ସେହି ମହାନାଦସାଗରରେ ଅନନ୍ତକୋଟି ବ୍ରହ୍ମାଣ୍ଡ ଭାସୁଅଛି ଏବଂ ଶବ୍ଦ ହିଁ

ଘନୀଭୂତ ହୋଇ ବ୍ରହ୍ମାଣ୍ଡ ଆକାରରେ ପରିଣତ ହୋଇଅଛି । ଯେପରି କଳଶ କହିଲେ ମାଟି ଛଡ଼ା ଆଉ କିଛି ନୁହେଁ, ସେହିପରି ବ୍ରହ୍ମାଣ୍ଡ କହିଲେ ନାଦ ଛଡ଼ା ଆଉ କିଛି ନୁହେଁ । ତେବେ ଏହା ମନେ ରଖିବାକୁ ହେବ ଯେ—

"ବାତ୍ୟା ଦ୍ୱାରା ଯେପରି ଶାନ୍ତକଲ୍ଲୋଳ ସମୁଦ୍ର ସ୍ଫୀତ ହୁଏ, ସମୁଦ୍ର ସମୁତ୍ଥିତ ତରଙ୍ଗ ସମୁଦ୍ର ବକ୍ଷରେ ଧୃତ ହୋଇ ମଧ୍ୟ ସ୍ଥୂଳ ଦୃଷ୍ଟିରେ ଯେପରି ସମୁଦ୍ରଠାରୁ ଭିନ୍ନ ରୂପରେ ଗୃହୀତ ହୁଏ, ସୃଷ୍ଟି ଅବ୍ୟକ୍ତ ବା ସାମ୍ୟାବସ୍ଥାରେ ବିଦ୍ୟମାନା ପ୍ରଶାନ୍ତ ପରମେଶ-ଶକ୍ତି ସୃଷ୍ଟି କାଳରେ ସେହିପରି ଉଚ୍ଛୂନ ବା ସ୍ଫୀତ ହୁଅନ୍ତି ।"

ଶିଷ୍ୟ—ଏହାର କାରଣ କଣ ?

ଗୁରୁ—ସେ କଥା ପୂର୍ବରୁ ଆଲୋଚନା କରିଛି । ଆଚ୍ଛା ଶୁଣ । ପୁରୁଷ ପ୍ରକୃତି ଏକ ବ୍ରହ୍ମର ଦୁଇ ରୂପ--

ଶିବେଚ୍ଛୟା ପରା ଶକ୍ତିଃ ଶିବତତ୍ତ୍ୱୈକ-ସଙ୍ଗତା ।
ତତଃ ପରିସ୍ଫୁରତ୍ୟାଦୌ ସର୍ଗେ ତୈଳଂ ତିଳାଦିବ ॥

ଧ୍ୟାନବିନ୍ଦୂପନିଷଦ୍ ଦୀପିକାଧୃତ

ତିଳରୁ ଯେପରି ତୈଳ ନିର୍ଗତ ହୁଏ, ଆଦି ସର୍ଗରେ ସେହିପରି ସନାତନ ଶିବଙ୍କର ଇଚ୍ଛା ଅନୁସାରେ ତାଙ୍କଠାରୁ ଶିବ ସ୍ୱରୂପରେ ଏକୀଭାବରେ ମିଳିତା ପରାଶକ୍ତି ସର୍ବତୋଭାବରେ କମ୍ପିତା ଶୋଭିତା ହୁଅନ୍ତି । ବିବିଧ ଆକାରରେ ପରିଦୃଷ୍ଟ ହେଲେ ମଧ୍ୟ ପରମାର୍ଥତ ସେହି ଶକ୍ତି ଶକ୍ତିମାନ୍ ଶିବଙ୍କଠାରୁ ଅଭିନ୍ନ । ତତ୍ତ୍ୱ ଗୋଟିଏ, ଯେତେବେଳେ ଲୀଳା କରିବାକୁ ଇଚ୍ଛା ହୁଏ ସେତେବେଳେ ଦୁଇଟି ହୁଅନ୍ତି, ସ୍ୱୟଂ ଅବିଚ୍ଛିନ୍ନ ଥାଇ ମଧ୍ୟ ଶକ୍ତି ସହାୟତାରେ ବହୁରୂପରେ ଲୀଳା କରିଥାନ୍ତି । "ପ୍ରକୃତି" ଓ "ପୁରୁଷ" ଏହି ଉଭୟଙ୍କ ଯୋଗେ ଜଗତ୍ ସୃଷ୍ଟି ହୋଇଅଛି ସତ, କିନ୍ତୁ ପୁରୁଷାଂଶର

ଅବଚ୍ଛିନ୍ନବୃତ୍ତି ନବଚ୍ଛିନ୍ନ ଅପିଚ ପ୍ରକୃତି ଅଂଶର ବନ୍ଧାରଣୀଳତ୍ୱ ବଶତଃ ପ୍ରକୃତି ଅଂଶହିଁ ପ୍ରପଞ୍ଚ ଆକାରରେ ପରିଣତ ହୁଏ । ଋଗ୍‌ବେଦ ଏଇଥିପାଇଁ ଅର୍ଦ୍ଧଗର୍ଭା ଏହି ପଦ ପ୍ରୟୋଗ କରିଛନ୍ତି ।

ତା ପରେ ଶୁଣ । ବୃହଦ୍ଧର୍ମପୁରାଣ ମଧ୍ୟମଖଣ୍ଡ ୧୪ ଅଧ୍ୟାୟରେ ଶ୍ରୀଭଗବାନ୍ ନାରଦଙ୍କୁ କହିଛନ୍ତି—

ପରମାର୍ଥତସ୍ତୁ ସା ଶକ୍ତିଃ ଶକ୍ତିମତଃ ଶିବାଦଭିନ୍ନା—
ମୂଳାଧାରେ ବସେଦଗ୍ନିସ୍ତସ୍ମାନ୍ନାଦୋଽଭିପଦ୍ୟତେ ।
ପଞ୍ଚ ସ୍ଥାନାନ ଭିନ୍ନାସୌ ବ୍ୟକ୍ତୋ ଭବତି ମୂର୍ଦ୍ଧନି ॥ ୨୦
ନାଭୌ ସୂକ୍ଷ୍ମୋଽତିପୂର୍ବଃ ସ୍ୟାତ୍ ସୂକ୍ଷ୍ମୋ ହୃଦି ବଶିଷ୍ୟତେ ।
କଣ୍ଠେ ଭବତି ଚ ବ୍ୟକ୍ତୋ ମୁଖେ କୃତ୍ରିମତାଂ ବ୍ରଜେତ୍ ।
ମୂର୍ଦ୍ଧନି ଚ ତଥା'ବ୍ୟକ୍ତୋ ନାଦ ଏଷ ପ୍ରକୀର୍ତ୍ତିତଃ ॥ ୨୧

ମୂଳାଧାରରେ ଯେଉଁ ଅଗ୍ନି ଅଛି ତାହାଠାରୁ ନାଦ ଉତ୍ପନ୍ନ ହୁଏ । ଏହି ନାଦ କ୍ରମେ ନାଭିଦେଶ ପ୍ରଭୃତି ପଞ୍ଚସ୍ଥାନ ଅତିକ୍ରମ କରି ମସ୍ତକରେ ପ୍ରକଟତା ପ୍ରାପ୍ତ ହୋଇଥାଏ । ଏହା ପ୍ରଥମେ ମୂଳାଧାରରେ ଉତ୍ପନ୍ନ ହୋଇ ନାଭିଦେଶରେ ଅତି ସୂକ୍ଷ୍ମ, ହୃଦୟରେ ସୂକ୍ଷ୍ମ, କଣ୍ଠରେ ଅବ୍ୟକ୍ତ, ମୁଖରେ କୃତ୍ରିମ ଏବଂ ମସ୍ତକରେ ଅବ୍ୟକ୍ତ ଅର୍ଥାତ୍ ଅଜ୍ଞାନ ନାଦ, ଏହିପରି କଥିତ ହୋଇଥାଏ ।

ଦୟାଲ ମହାରାଜ କହିଛନ୍ତି—

"ପରମାଣୁ କୁହ, ପ୍ରକୃତି କୁହ ବା ମାୟା କୁହ, ଏହା ଶକ୍ତି ମାତ୍ର ଅଥବା ଏହା ଏହି ଶବ୍ଦାତ୍ମିକା ବାଗ୍‌ଦେବୀ । ଯେଉଁଠାରେ ଶକ୍ତିର ସ୍ପନ୍ଦନ ସେଠାରେ ଶବ୍ଦ ନିଶ୍ଚୟ ରହିବ । ଶବ୍ଦରୁ ଜଗତ୍ ସୃଷ୍ଟି । ସୃଷ୍ଟିର ସୁପ୍ତାବସ୍ଥା—ତାହାହିଁ ସାମ୍ୟାବସ୍ଥା ବା ମାୟା । ଶକ୍ତିର ସ୍ପନ୍ଦନାବସ୍ଥା ବା ଅଭିବ୍ୟକ୍ତ ଅବସ୍ଥା ଯାହା, ତାହାହିଁ ପ୍ରକୃତି । ପ୍ରକୃତି ଏହି ବ୍ରହ୍ମାଣ୍ଡ ରୂପରେ ପରିଦୃଶ୍ୟମାନ ।"

ସାଂଖ୍ୟଯୋଗାଚାର୍ଯ୍ୟ ଶ୍ରୀମତ୍ ସ୍ୱାମୀ ହରିହରାନନ୍ଦ ଆରଣ୍ୟ ସାଂଖ୍ୟତତ୍ତ୍ୱାଲୋକରେ କହିଛନ୍ତି—(୩୦୯ ପୃଷ୍ଠା)

"ସ୍ଥୂଳୋତ୍ପତ୍ତିବିଷୟେ ସାଂଖ୍ୟସମ୍ମତ ସ୍ମୃତି" ଯଥା—

"ପୂର୍ବକାଳରେ ଚନ୍ଦ୍ରାର୍କ-ପବନ-ଶୂନ୍ୟ ଆକାଶ ଅଚଳ ଓ ପ୍ରସୁପ୍ତବତ୍ ହୋଇଥିଲା । ତା ପରେ ତମ ଭିତରୁ ଅପର ତମ ପରି—ସଲିଳ ଉତ୍ପନ୍ନ ହେଲା । ସେହି ସଲିଳର ଉତ୍ପୀଡ଼ନରୁ ମାରୁତ ଉତ୍ପନ୍ନ ହେଲା । ଯେପରି କୌଣସି ପାତ୍ର ଜଳଦ୍ୱାରା ପୂର୍ଣ୍ଣ କରି ଦେଲେ ତନ୍ମଧ୍ୟସ୍ଥ ବାୟୁ ସଶବ୍ଦରେ ବୁଦ୍‌ବୁଦ ଆକାରରେ ନିର୍ଗତ ହୁଏ, ସେହିପରି ସେହି ବାୟୁ ଓ ସଲିଳର ସଂଘର୍ଷରୁ ଦୀପ୍ତତେଜା ମହାବଳ ଅଗ୍ନି ଆକାଶକୁ ନିସ୍ତିମିର କରି ପ୍ରାଦୁର୍ଭୂତ ହେଲେ । ସେହି ଜଳ ଅଗ୍ନି ଓ ବାୟୁ ସଂଯୁକ୍ତ ହୋଇ ନଭକୁ ସମାକ୍ଷିପ୍ତ କଲେ । ମାରୁତ-ସଂଯୋଗରେ ସେହି ଅଗ୍ନି ଘନତ୍ୱ ପ୍ରାପ୍ତ ହେଲେ, ସେହି ଘନତ୍ୱ ପ୍ରାପ୍ତ ଅଗ୍ନିର ଯେଉଁ ସ୍ନେହାଂଶ ରହିଲା ତାହା ସଂଘାତତ୍ୱ ପ୍ରାପ୍ତ ହୋଇ ଶେଷରେ ଭୂମିତ୍ୱ ପ୍ରାପ୍ତ ହେଲା । ଭୂମି ସମସ୍ତ ଗନ୍ଧ, ରସ, ପ୍ରାଣୀ ଓ ସ୍ନେହର ଆଶ୍ରୟ, ସେଥିରେ ସବୁକିଛି ପ୍ରସୂତ ହୁଏ ।"

(ଶାନ୍ତିପର୍ବ ଭୃଗୁଭରଦ୍ୱାଜସଂବାଦ)

" ୩୧୦ ପୃଷ୍ଠାରେ ପାଦଟୀକା—

"ଉଦ୍ଧୃତ ଶାସ୍ତ୍ରରେ ଏହିପରି କ୍ରମ ଦେଖାଯାଏ—ପ୍ରଥମେ କାରଣ ସଲିଳରୁ ପ୍ରବଳ ଶବ୍ଦ, ତତ୍‌ପରେ ସ୍ପର୍ଶ, ତତ୍‌ପରେ ତେଜଃ, ତତ୍ପରେ ସ୍ନେହ ବା ପ୍ରସ୍ତର ଆଦି ରସାତ୍ମକ ଦ୍ରବ୍ୟର ତରଳ ଅବସ୍ଥା, ପରେ ତାହାର ସଂଘାତ ଅବସ୍ଥା—ଯାହା ଅସ୍ମଦ୍‌ବ୍ୟବହାର୍ଯ୍ୟ ଗନ୍ଧ ପ୍ରଭୃତିର ଆଶ୍ରୟ ।"

୩୭୦ ପୃଷ୍ଠାରେ କହିଛନ୍ତି—

"କାରଣ ସଲିଳରୁ ସଶବ୍ଦରେ ବାୟୁ ଉତ୍ପନ୍ନ ହେଲା; ତା ପରେ ଧୀପ୍ତତେଜା ହୁତାଶନ; ତା ପରେ ତରଳଭାବ, ତା ପରେ କଠିନ ଅବସ୍ଥା ହୋଇଅଛି । ଏଥିରୁ ଜଣାଯାଉଛି ଯେ ଲୋକ-ସର୍ଗର ଆଦ୍ୟରେ ଯେଉଁ କାରଣ ହୋଇଥିଲା ତାହା ଶବ୍ଦାତ୍ମକ ।"

ଶିଷ୍ୟ—ଏକା କଥା । ବେଦ ବେଦାନ୍ତ ତନ୍ତ୍ର ସାଂଖ୍ୟ ବା ଅନ୍ୟାନ୍ୟ ଶାସ୍ତ୍ର ସମସ୍ତେ ତ ଏକ ବାକ୍ୟରେ କହୁଛନ୍ତି ଯେ, ଶବ୍ଦହିଁ ଜଗତର ଆଦ୍ୟ କାରଣ ।

ଗୁରୁ—ଯେ ସତ୍ୟଦର୍ଶୀ ସେ ଏହି କଥା ହିଁ କହିବେ—ଜଗତ୍ ଉପାଦାନ ଶବ୍ଦବ୍ରହ୍ମ ଓଁକାରର ଘନୀଭୂତ ମୂର୍ତ୍ତି । ନାଦବ୍ରହ୍ମ-ସାଗରରେ ଜଗଦ୍‌ରୂପ ତରଙ୍ଗ ରଙ୍ଗ କରୁଅଛି । ଯେପରି ତରଙ୍ଗ ଜଳରୁ ଭିନ୍ନ ଆକାର ରୂପେ ଦୃଷ୍ଟ ହେଲେ ମଧ୍ୟ ଜଳ ଛଡ଼ା ଆଉ କିଛି ନୁହେଁ, ସେହିପରି ବିବିଧ ଆକାରରେ ପରିଦୃଷ୍ଟ ଏହି ବିଶ୍ୱ ନାଦବ୍ରହ୍ମ ଛଡ଼ା ଆଉ କିଛି ନୁହେଁ ।

ଜ୍ଞାନପ୍ରଦୀପରେ କଥିତ ଅଛି—

ସାରଦାତିଳକ—ଶକ୍ତିର୍ନାଦସ୍ତୟୋର୍ମିଥଃ ।

ଅର୍ଥାତ୍ ନାଦଶବ୍ଦରେ ପ୍ରକୃତିଶକ୍ତିକୁ ମଧ୍ୟ ବୁଝାଉଛି । ସାଧକର ପିଣ୍ଡ ମଧ୍ୟରେ ଜୀବାତ୍ମା ବା ଜୀବନୀଶକ୍ତିରୂପରେ କୁଣ୍ଡଳିନୀ ଶକ୍ତିହିଁ ପ୍ରକୃତିଶକ୍ତି ବୋଲି କଥିତ । ସେହି କୁଣ୍ଡଳିନୀ ମହାଶକ୍ତି ଯେ ପର୍ଯ୍ୟନ୍ତ କୁଳକୁଣ୍ଡଳିନୀ ମହାମାୟା ସହସ୍ରାରସ୍ଥିତ ପରମଶିବରେ ବା ପରମାତ୍ମାଙ୍କଠାରେ ଲୟପ୍ରାପ୍ତା ଅର୍ଥାତ୍ ଏକୀଭୂତା ହୋଇ ନ ଯାନ୍ତି, ସେ ପର୍ଯ୍ୟନ୍ତ ସାଧକର ସେହି ନାଦ ବା ଅନାହତ ଧ୍ୱନିର ନିବୃତ୍ତି ହେବ ନାହିଁ । ୧ମ ଭାଗ ୧୫୫ ପୃଷ୍ଠା

ତଦେବ ଶବ୍ଦବ୍ରହ୍ମ । ନାଦଃ ପୁନଃ ପରବ୍ରହ୍ମବାଚକୋଙ୍କାର-ରୂପଃ । ଜ୍ୟୋତିସ୍ତଦ୍ଦର୍ଶନାଭାବକାଲେଽପି ନାଦାଶ୍ଚ ଶ୍ରୂୟନ୍ତେ

ଅନ୍ତର୍ଲକ୍ଷ୍ୟଂ ପରିରକ୍ଷ୍ୟତେ । ଏତେନ ଚିତ୍ତୈକାଗ୍ର୍ୟବୃଦ୍ଧେଃ ମନନଯୋଗ୍ୟତା ଭବତି । ୧ ସିଦ୍ଧଯୋଗଃ ୧୧୦ ପୃଷ୍ଠା

ଏହା ଶବ୍ଦବ୍ରହ୍ମ ଏବଂ ନାଦ ପରବ୍ରହ୍ମବାଚକ ଓଁକାରର ରୂପ । ଜ୍ୟୋତିରବ୍ଧ ଦର୍ଶନର ଅଭାବ କାଳରେ ନାଦ ଆଦ୍ଧ ଶୁଣିଲେ ଅନ୍ତର୍ଲକ୍ଷ୍ୟର ରକ୍ଷା ହୁଏ । ଏହାଦ୍ୱାରା ଚିତ୍ତର ଏକାଗ୍ରତା ବୃଦ୍ଧି ହେବାରୁ ମନନଯୋଗ୍ୟତା ଜନ୍ମେ । ୧ ।

"ଯେତେବେଳେ କୌଣସି ଶବ୍ଦ କରିବା ପାଇଁ ପ୍ରଥମ ଚେଷ୍ଟା କରାଯାଏ, ସେତେବେଳେ ହୃଦୟରେ ବା ଅନ୍ତଃକରଣରେ ପ୍ରଥମ ପ୍ରଣବ ବା "ଓଁ"କାର ଶବ୍ଦ ହୁଏ । ଯେତେବେଳେ କୌଣସି ଏକାକ୍ଷର ଶବ୍ଦ ଉଚ୍ଚାରଣ କରାଯାଏ, ସେତେବେଳେ ମଧ୍ୟ ଏହି ପ୍ରଣବ ଉଚ୍ଚାରିତ ହୋଇଥାଏ । କୌଣସି ସ୍ୱରଯନ୍ତ୍ରରେ ଆଘାତ କଲେ ଏହି ପ୍ରଣବ ଧ୍ୱନିତ ହୁଏ; ଯେତେବେଳ ପର୍ଯ୍ୟନ୍ତ ଦେହରେ ପ୍ରାଣ ଥିବ, ସେତେବେଳ ପର୍ଯ୍ୟନ୍ତ ଦେହ ମଧ୍ୟରେ ଏହି ଶବ୍ଦ ଧ୍ୱନିତ ହେଉଥିବ—ଏହା ଦେହ ଭିତରେ ସର୍ବଦା ଧ୍ୱନିତ ହେଉଅଛି । ଏହା ଶୁଣିବା ପାଇଁ ଉପଯୁକ୍ତ ହେଲେ ସଦାସର୍ବଦା ଏ ଶବ୍ଦ ଶୁଣି ପାରିବ । ଆମ୍ଭେମାନେ ଅନ୍ୟାନ୍ୟ ଶବ୍ଦରେ ଅତ୍ୟନ୍ତ ଆକୃଷ୍ଟ, ସେଥିପାଇଁ ଏ ଶବ୍ଦ ଶୁଣି ପାରୁନାହିଁ । ନ ହେଲେ ଦେହ ମଧ୍ୟରେ ଅହର୍ନିଶ ଏ ଶବ୍ଦ ଉତ୍ଥିତ ହେଉଅଛି । ଏହି ତତ୍ତ୍ୱରୁ ଜ୍ଞାନୀଗଣ ବିବେଚନା କରନ୍ତି ଯେ ସର୍ବଦା ଏହି ଶବ୍ଦ ଶୁଣିବାକୁ ମିଳେ— କାରଣ ପୂର୍ବରୁ ବୁଝାଯାଇଛି ଯେ କୌଣସି ଶବ୍ଦ କରିବା ପୂର୍ବରୁ ପ୍ରଣବ ଧ୍ୱନି ଆମ୍ଭମାନଙ୍କର ହୃଦୟରେ ଧ୍ୱନିତ ହୁଏ । ଆର୍ଯ୍ୟଋଷିଗଣ ଏଇଥିପାଇଁ ପ୍ରଣବକୁ ପ୍ରଥମ ଶବ୍ଦ ବୋଲି ନିର୍ଦ୍ଦେଶ କରିଅଛନ୍ତି । ପ୍ରଣବ ପ୍ରଥମ ଶବ୍ଦ ବା ପ୍ରଥମ ମନ୍ତ୍ର । ଏହାର ଆଉ ଗୋଟିଏ ଅର୍ଥ

ବ୍ରହ୍ମ—ପ୍ରତ୍ୟେକ ପଦାର୍ଥରେ ହିଁ ବିଦ୍ୟମାନ । ସୃଷ୍ଟିର ପ୍ରଥମ ଶବ୍ଦ ବା ମନ୍ତ୍ରହିଁ ପ୍ରଣବ ।" ଯୋଗତତ୍ତ୍ୱବାରିଧି ୨୮୩-୨୮୪ ପୃଷ୍ଠା ।

ବୃହତ୍ ବ୍ରହ୍ମାଣ୍ଡରେ ବ୍ରହ୍ମା ହିରଣ୍ୟଗର୍ଭ ବା ସମଷ୍ଟି ମହତ୍ ପ୍ରଥମେ ନାମ ପରେ ରୂପାକାରରେ ଅର୍ଥାତ୍ ପରିଦୃଶ୍ୟମାନ ଜଗତ୍‌ରୂପେ ପ୍ରକାଶ ପାଇଲେ । ଏହି ବ୍ୟକ୍ତ ଇନ୍ଦ୍ରିୟଗ୍ରାହ୍ୟ ଜଗତ୍‌ହିଁ ରୂପ, ଏହାର ପଶ୍ଚାତ୍‌ରେ ଅନନ୍ତ ଅବ୍ୟକ୍ତ ସ୍ଫୋଟ ରହିଅଛି । ସ୍ଫୋଟ ଅର୍ଥରେ ସମସ୍ତ ଜଗତର ଅଭିବ୍ୟକ୍ତିର କାରଣ ଶବ୍ଦବ୍ରହ୍ମ । ସମୁଦାୟ ନାମ ଅର୍ଥାତ୍ ଭାବର ଅନନ୍ତ ସମବାୟୀ ଉପାଦାନ ସ୍ୱରୂପ ଏହି ଅନନ୍ତ କୋଟି ସ୍ଫୋଟହିଁ ସେହି ଶକ୍ତି, ଯଦ୍ଦ୍ୱାରା ଭଗବାନ୍ ପ୍ରଥମେ ଆପଣାକୁ ସ୍ଫୋଟରୂପରେ ପରିଣତ କରି ପରେ ଅପେକ୍ଷାକୃତ ସ୍ଥୂଳ ଏହି ପରିଦୃଶ୍ୟମାନ ଜଗତ୍ ରୂପରେ ପରିଣତ କରିଛନ୍ତି । ଏହି ସ୍ଫୋଟର ଏକମାତ୍ର ବାଚକ ଶବ୍ଦ ହେଉଛି "ଓଁ" । ଆଉ କୌଣସି ପ୍ରକାର ବିଶ୍ଳେଷଣଦ୍ୱାରା ଆମେ ଯେତେବେଳେ ଭାବଠାରୁ ଶବ୍ଦକୁ ପୃଥକ୍ କରି ପାରୁନାହିଁ, ସେତେବେଳେ ଏହି ଓଙ୍କାର ରୂପ ଏହି ପବିତ୍ରତମ ଶବ୍ଦରୁ ହିଁ ଜଗତ୍ ସୃଷ୍ଟି ହୋଇଅଛି । ତେବେ ଯଦି କୁହ ଯେ, ଶବ୍ଦ ଓ ଭାବ ନିତ୍ୟ ସମ୍ବନ୍ଧ ସତ, କିନ୍ତୁ ଗୋଟିଏ ଭାବର ବାଚକ ଅନନ୍ତ ଶବ୍ଦ ଥାଇପାରେ, ସୁତରାଂ ସମୁଦାୟ ଜଗତର ଅଭିବ୍ୟକ୍ତିର କାରଣ ସ୍ୱରୂପ ଭାବର ବାଚକ ଯେ ଓଙ୍କାର ଏହାର କୌଣସି ଅର୍ଥ ନାହିଁ । ଏ କଥା କହିଲେ ଆମର ଉତ୍ତର ହେଲା ଏହି—ଓଙ୍କାରହିଁ ଏହିପରି ସର୍ବଭାବବାଚକ ଶବ୍ଦ, ଆଉ ଅନ୍ୟ କୌଣସି ଶବ୍ଦ ଏହା ତୁଲ୍ୟ ନୁହେଁ । ଅର୍ଥାତ୍ ଶବ୍ଦଗୁଡ଼ିକ ମଧ୍ୟରେ ପରସ୍ପର ଯେଉଁ ପ୍ରଭେଦ ତାହା ଯଦି ଦୂର କରି ଦିଆଯାଏ, ତେବେ ଏହି ସ୍ଫୋଟହିଁ ଅବଶିଷ୍ଟ ରହିବ; ସୁତରାଂ ଏହି ସ୍ଫୋଟକୁ ନାଦବ୍ରହ୍ମ ବୋଲି କୁହାଯାଏ । ଅନ୍ୟ ଯେ କୌଣସି ଶବ୍ଦ

ହେଉନା କାହିଁକି, ତାହାଦ୍ୱାରା ସ୍ଫୋଟକୁ ପ୍ରକାଶ କରିବାକୁ ହେଲେ ଏହା ତାହାକୁ ଏତେଦୂର ବିଶିଷ୍ଟ କରି ପକାଇବ ଯେ ତାହାର ଆଉ ସ୍ଫୋଟତ୍ୱ ରହିବ ନାହିଁ । ସୁତରାଂ ଯେଉଁ ଶବ୍ଦଦ୍ୱାରା ଏହା ଖୁବ୍ ଅଳ୍ପ ପରିମାଣରେ ବିଶେଷ ଭାବାପନ୍ନ ହେବ, ଆଉ ଯାହା ଯଥାସମ୍ଭବ ଏହାର ସ୍ୱରୂପ ପ୍ରକାଶ କରିବ, ତାହାହିଁ ଏହାର ପ୍ରକୃତ ବାଚକ ହେବ । ଓଁକାର—କେବଳମାତ୍ର ଓଁକାରହିଁ ଏହିପରି । କାରଣ ଅ, ଉ, ମ ଏହି ତିନୋଟି ଅକ୍ଷର ଏକତ୍ର 'ଅ ଉ ମ' ଏହିପରି ଉଚ୍ଚାରିତ ହେଲେ, ସେହି ସର୍ବପ୍ରକାର ଶବ୍ଦର ବାଚକ ହୋଇପାରେ । ଅ—ସମୁଦାୟ ଶବ୍ଦ ଭିତରେ ସର୍ବାପେକ୍ଷା ଅଳ୍ପ ବିଶେଷ ଭାବାପନ୍ନ । ଏହି କାରଣରୁ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, 'ଅକ୍ଷର ମଧ୍ୟରେ ମୁଁ ଅକାର' । ଆଉ ସମୁଦାୟ ସ୍ପଷ୍ଟୋଚ୍ଚାରିତ ଶବ୍ଦରେ ହିଁ ମୁଖଗହ୍ୱର ମଧ୍ୟରେ ଜିହ୍ୱାମୂଳରୁ ଆରମ୍ଭ କରି ଓଷ୍ଠ ପର୍ଯ୍ୟନ୍ତ ସ୍ପର୍ଶ କରି ଉଚ୍ଚାରିତ ହୁଏ । "ଅ" କଣ୍ଠରୁ ଉଚ୍ଚାରିତ, "ମ" ଶେଷ ଓଷ୍ଠ ଶବ୍ଦ । ଆଉ "ଉ" ଜିହ୍ୱାମୂଳରୁ ଯେଉଁ ଶକ୍ତି ଆରମ୍ଭ ହୋଇ ଓଷ୍ଠରେ ହୁଏ, ସେହି ଶକ୍ତିଟି ଯେପରି ଗଡ଼ିଯାଉଅଛି—ଏହି ଭାବ ପ୍ରକାଶ କରେ । ପ୍ରକୃତ ଭାବରେ ଉଚ୍ଚାରିତ ହେଲେ ଏହି ଓଁକାର ସମୁଦାୟ ଶବ୍ଦୋଚ୍ଚାରଣ କାର୍ଯ୍ୟଟିର ସୂଚକ, ଆଉ କୌଣସି ଶବ୍ଦର ସେ ଶକ୍ତି ନାହିଁ; ସୁତରାଂ ଏହା ହିଁ ସ୍ଫୋଟର ଠିକ୍ ଉପଯୋଗୀ ବାଚକ—ଏହି ସ୍ଫୋଟ ହିଁ ଓଁକାରର ପ୍ରକୃତ ବାଚ୍ୟ । ଆଉ ବାଚକ ବାଚ୍ୟଠାରୁ ପୃଥକ୍ ହେବା ସମ୍ଭବ ନୁହେଁ, ସୁତରାଂ "ଓଁ" ଓ ସ୍ଫୋଟ ଏକା ଜିନିଷ । ଆଉ ଏହି ସ୍ଫୋଟ ବ୍ୟକ୍ତ ଜଗତର ସୂକ୍ଷ୍ମତମାଂଶ ବୋଲି ବ୍ରହ୍ମର ଖୁବ୍ ନିକଟବର୍ତ୍ତୀ । ଅତଏବ ଏହା ଈଶ୍ୱରୀୟ ଜ୍ଞାନର ପ୍ରଥମ ପ୍ରକାଶ, ସୁତରାଂ ଓଁକାର ଈଶ୍ୱରଙ୍କର ପ୍ରକୃତ ବାଚକ । (ଧୃତଭକ୍ତିଯୋଗ)

ଶିଷ୍ୟ—ପ୍ରଣବରେ ଅକାର ଉକାର ମକାରର ଉଚ୍ଚାରଣ ପ୍ରକାର ସେ କହିଛନ୍ତି । ଯେ ଶେଷ ସୀମାରେ ପହଞ୍ଚିଲେଣି, ସେ ମୁକ୍ତ କଣ୍ଠରେ ନାଦବ୍ରହ୍ମର ମହିମା ଗାନ କରିଛନ୍ତି ।

ଗୁରୁ—ବିଭିନ୍ନ ଗ୍ରନ୍ଥରୁ ସେହି ଗୋଟିଏ କଥା ମୁଁ କହୁଛି ।

ଶିଷ୍ୟ—ଆପଣ କୁହନ୍ତୁ, ମୁଁ ଆନନ୍ଦରେ ଶୁଣୁଛି । ମୁଁ କୃତାର୍ଥ ଧନ୍ୟ, ଆପଣ ଆହୁରି କୁହନ୍ତୁ ।

ଓଁ ୭ ଶ୍ରୀଶ୍ରୀ ଗୁରବେ ନମଃ

ଶ୍ରୀମତେ ରାମାନୁଜାୟ ନମଃ ଶ୍ରୀମତେ ରାମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ ।

# ଶ୍ରୀଶ୍ରୀନାଦଲୀଳାମୃତ

## ଚତୁର୍ଥ ହିଲ୍ଲୋଳ

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ ।
ବସୁନ୍ଧରା-ବାରି-ବିମାନ ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ୱେନ ସଦୋଦ୍ଦିତାୟ
ପୂର୍ଣ୍ଣାୟ ଚିଦ୍ ବିଳାସ-ବିଳାସାୟ ଓଙ୍କାରାୟ ନମଃ ।
ସର୍ବସାଧନସିଦ୍ଧୀନାଂ ଯା ସ୍ୟାତ୍ ସିଦ୍ଧିରନୁତ୍ତମା ।
କୈବଲ୍ୟରୂପା ତନ୍ନାହଂ ସୀତାରାମଂ ନମାମ୍ୟହମ୍ ॥
ବରାଭୟକରଂ ଶାନ୍ତଂ ଶୁକ୍ଳବର୍ଣ୍ଣଂ ସଶକ୍ତିକଂ ।
ଜ୍ଞାନାନନ୍ଦମୟଂ ସାକ୍ଷାତ୍ ସର୍ବବ୍ରହ୍ମସ୍ୱରୂପକମ୍ ॥
ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତଭୂତାନି ବ୍ୟାପ୍ୟ ଜୀବବତ୍ ।
ଯଃ ସଂସରତି ଭୂତାତ୍ମା ପ୍ରଣବଂ ତଂ ନତୋଽସ୍ମ୍ୟହମ୍ ॥

ଶିଷ୍ୟ—ଦେବ, ଛାନ୍ଦୋଗ୍ୟ ପ୍ରଭୃତି ଉପନିଷଦରେ ଏହି ନାଦବ୍ରହ୍ମର ବିଷୟ କିପରି ଭାବରେ ବର୍ଣ୍ଣିତ ହୋଇଅଛି ?

ଗୁରୁ—ଛାନ୍ଦୋଗ୍ୟ ଉପନିଷଦରେ ଅନେକ ସ୍ଥଳରେ ପରୋକ୍ଷ ଭାବରେ ନାଦ କଥା ବର୍ଣ୍ଣିତ ହୋଇଅଛି—ଶୁଣ ।

ଦେବାସୁରା ହ ବୈ ଯତ୍ର ସଂଯେତିରେ ଉଭୟେ ପ୍ରାଜାପତ୍ୟାଃ,
ତଦ୍ଧ ଦେବା ଉଦ୍‌ଗୀଥମାଜହ୍ରୁରନେନୈନାନଭିଭବିଷ୍ୟାମ ଇତି ।
ପ୍ରଥମ ପ୍ରପାଠକ ଦ୍ୱିତୀୟ ଖଣ୍ଡ

ଦେବ ଓ ଅସୁରଗଣ ଉଭୟେ ପ୍ରଜାପତିଙ୍କର ସନ୍ତାନ । ସେମାନେ ଯେତେବେଳେ ଯୁଦ୍ଧ କଲେ ସେତେବେଳେ ଦେବଗଣ ଅସୁରଗଣଙ୍କୁ ପରାଭବ ଦେବା ନିମିତ୍ତ ଉଦ୍‌ଗୀଥକୁ ଅବଲମ୍ବନ କରିଥିଲେ । ୧ ।

ସେମାନେ ନାସିକାର ଅଭ୍ୟନ୍ତରବର୍ତ୍ତୀ ପ୍ରାଣରେ ଉଦ୍‌ଗୀଥର (ପ୍ରଣବର) ଉପାସନା କଲେ, ତାହାକୁ ଅସୁରଗଣ (ଅଧର୍ମରେ ଆସକ୍ତରୂପ) ପାପଦ୍ୱାରା ଲିପ୍ତ କଲେ । ପାପଦ୍ୱାରା ଲିପ୍ତ ହେବାରୁ ପ୍ରାଣ ସୁଗନ୍ଧ ଓ ଦୁର୍ଗନ୍ଧ ଆଘ୍ରାଣ କରେ । ୨ ।

ଦେବଗଣ ବାକ୍ୟଦ୍ୱାରା ଉଦ୍‌ଗୀଥକୁ ଉପାସନା କରିବାରୁ ଅସୁରଗଣ ବାକ୍ୟକୁ ପାପଦ୍ୱାରା ଲିପ୍ତ କଲେ, ସେଥିପାଇଁ ଏହା ସତ୍ୟ ଓ ଅସତ୍ୟ ଦୁଇଟିଯାକ କହିଥାଏ । ୩ ।

ଦେବଗଣ ଚକ୍ଷୁଦ୍ୱାରା ଉଦ୍‌ଗୀଥର ଉପାସନା କରିବାରୁ ସେମାନେ ତାହାକୁ ପାପଦ୍ୱାରା ଲିପ୍ତ କଲେ, ତେଣୁ ଚକ୍ଷୁ ଦର୍ଶନୀୟ ଓ ଅଦର୍ଶନୀୟ ଉଭୟ ବସ୍ତୁ ଦେଖେ । ୪ ।

ଦେବଗଣ କର୍ଣ୍ଣରେ ଉଦ୍‌ଗୀଥ ଉପାସନା ଆରମ୍ଭ କଲେ, ଅସୁରଗଣ ତାହାକୁ ପାପଲିପ୍ତ କଲେ—ଫଳରେ ଶ୍ରବଣଯୋଗ୍ୟ ଓ ଅଯୋଗ୍ୟ ଉଭୟ ଶୁଣିବାକୁ ପଡ଼େ । ୫ ।

ଅନନ୍ତର ଦେବତାମାନେ ମନଦ୍ୱାରା ଓଁକାରର ଉପାସନା କଲେ । ଅସୁରମାନେ ତାହାକୁ ପାପଲିପ୍ତ କଲେ—ସେଥିପାଇଁ ମନ ସଂକଳ୍ପଯୋଗ୍ୟ ଓ ଅଯୋଗ୍ୟ ଉଭୟ ସଂକଳ୍ପ କରିଥାଏ । ୬ ।

ତାହା ପରେ ଦେବଗଣ ଏହି ଯେ ମୁଖ୍ୟ ପ୍ରାଣ ସେଥିରେ ଉଦ୍‌ଗୀଥର ଉପାସନା କଲେ । ଅସୁରଗଣ ତାହାକୁ ପ୍ରାପ୍ତ ହୋଇ ବିନଷ୍ଟ ହେଲେ, ଯେପରି ଖୋଳିବାର ଅଯୋଗ୍ୟ ପ୍ରସ୍ତରକୁ ପାଇ (କୋଦାଳ ଆଦି) ନଷ୍ଟ ହୋଇଯାଏ । ୭ ।

ଏବଂ ଯଥାଽଶ୍ମାନମାଖଣମୃତ୍ୱା ବିଧ୍ୱଂସତେ ଏବଂ ହୈବ ସ ବିଧ୍ୱଂସତେ ଯ ଏବଂବିଦି ପାପଂ କାମୟତେ ଯଶ୍ଚୈନମଭିଦାସତି, ସ ଏଷୋଽଶ୍ମାଖଣଃ । ୮ ।

ଯେ ଏହିପରି ତତ୍ତ୍ୱଜ୍ଞାନୀଙ୍କ ପ୍ରତି ପାପ ଇଚ୍ଛା କରନ୍ତି—ହିଂସା କରନ୍ତି, ଯେପରି କୋଦାଳ ପ୍ରସ୍ତର ଖୋଳିଲେ ବିନଷ୍ଟ ହୁଏ, ସେ ମଧ୍ୟ ସେହିପରି ବିନଷ୍ଟ ହୋଇଥାନ୍ତି ; କାରଣ ମୁଖ୍ୟ ପ୍ରାଣତତ୍ତ୍ୱବିତ୍ ପ୍ରସ୍ତର ପରି ଖନନର ଅଯୋଗ୍ୟ ।

ଏହିପରି ବୃହଦାରଣ୍ୟକ ଶ୍ରୁତିରେ କଥିତ ହୋଇଅଛି :—

ଦ୍ୱୟା ହ ପ୍ରାଜାପତ୍ୟା ଦେବାଶ୍ଚାସୁରାଶ୍ଚ । ତତଃ କାନୀୟସା ଏବ ଦେବା ଜ୍ୟାୟସା ଅସୁରାସ୍ତ ଏଷୁ ଲୋକେଷ୍ୱସ୍ପର୍ଦ୍ଧନ୍ତ ତେ ହ ଦେବା ଊଚୁର୍ହନ୍ତା—ସୁରାନ୍ ଯଜ୍ଞ ଉଦ୍‌ଗୀଥେନାତ୍ୟୟାମେତି । ୧ । ୩ । ୧

ପ୍ରଥମେ ବାକ୍ୟ,ତତ୍‌ପରେ ପ୍ରାଣ, ଚକ୍ଷୁ, ଶ୍ରୋତ୍ର, ମନ ପ୍ରଭୃତି ସମସ୍ତେ ପାପଦ୍ୱାରା ବିଦ୍ଧ ହୁଅନ୍ତି,ଶେଷରେ ମୁଖ୍ୟ ପ୍ରାଣର ସହାୟତାରେ ସେମାନେ ବିନଷ୍ଟ ହୁଅନ୍ତି । ଏହି ମୁଖ୍ୟ ପ୍ରାଣହିଁ ହେଲା ନାଦବ୍ରହ୍ମ । ଏପରି ପରୋକ୍ଷ ଭାବରେ କହିଛନ୍ତି ଯେ କୌଣସିମତେ ବୁଝିବାର ଉପାୟ ନାହିଁ ।

ଭଗବାନ ଶଙ୍କରାଚାର୍ଯ୍ୟ ଛାନ୍ଦୋଗ୍ୟଭାଷ୍ୟରେ କହିଛନ୍ତି—ଶାସ୍ତ୍ରୋଦ୍ଭାସିତ ଇନ୍ଦ୍ରିୟବୃତ୍ତିହିଁ ଦେବ, ଆଉ ସ୍ୱଭାବାସକ୍ତ ପ୍ରାଣ ମିକା ବୃତ୍ତିଗୁଡ଼ିକ ଅସୁର । ଜୀବମାନେ ପ୍ରତ୍ୟେକଙ୍କ ଦେହରେ ଚିରଦିନ ଏ ଦେବାସୁର ସଂଗ୍ରାମ ଚାଲିଅଛି ।

ନବମ ମନ୍ତ୍ରର ଭାଷ୍ୟରେ କହିଛନ୍ତି—ସ୍ଥାନ-ସମ୍ବନ୍ଧ-ନିବନ୍ଧନ ନାସାଶ୍ରିତ ପ୍ରାଣର ପାପ ସମ୍ବନ୍ଧ ଅଛି । ମୁଖ୍ୟ ପ୍ରାଣର କୌଣସି ସ୍ଥାନସମ୍ବନ୍ଧ ନାହିଁ, ସୁତରାଂ ପାପ ସମ୍ବନ୍ଧ ମଧ୍ୟ ଅସମ୍ଭବ ।

ଛାନ୍ଦୋଗ୍ୟ—ଯ ଏବ ଅୟଂ ମୁଖ୍ୟଃ ପ୍ରାଣଃ ତମୁଦ୍‌ଗୀଥ-ମୁପାସୀତ ଓଁ ଇତି ହି ଏଷ ସ୍ୱରନ୍ ଏତି । (ପ୍ରଥମ ପ୍ରପାଠକ ପଞ୍ଚମ ଖଣ୍ଡ)

ଏହି ଯେଉଁ ମୁଖ୍ୟ ପ୍ରାଣ ତାହାକୁ ଉଦ୍‌ଗୀଥବୋଧରେ ଉପାସନା କର । ଓଁ ଉଚ୍ଚାରଣ କଲେ ଏହା ସମାଗତ ହୁଏ ।

ଛାନ୍ଦୋଗ୍ୟ ପଞ୍ଚମ ପ୍ରପାଠକ ପ୍ରଥମ ଖଣ୍ଡରେ ବାଗାଦିର ବିବାଦ କଥା ଓ ମୁଖ୍ୟପ୍ରାଣର ଶ୍ରେଷ୍ଠତ୍ୱ କୁହାଯାଇଅଛି । "ମୁଖ୍ୟ ପ୍ରାଣ ଦେହ ଇନ୍ଦ୍ରିୟ ମନର ଅତୀତ ପଦାର୍ଥ । ପରନ୍ତୁ ଜୀବରେ ଅହଂବୃତ୍ତି ହିଁ ଦେହ, ଇନ୍ଦ୍ରିୟ ମନଠାରୁ ଅତୀତ ପଦାର୍ଥ । ଅନ୍ତଃକରଣବୃତ୍ତି କହିଲେ ବୁଦ୍ଧିତତ୍ତ୍ୱ ଓ ମନଃସମନ୍ୱିତ ଅହଂତତ୍ତ୍ୱକୁ ବୁଝାଏ । ଅତଏବ ଏହିମାନେ ହିଁ ମୁଖ୍ୟ ପ୍ରାଣାଖ୍ୟ । ଏହା ଜୀବ-ଦେହରେ ନିର୍ମଳ ସୂକ୍ଷ୍ମ ମରୁତ୍‌ତତ୍ତ୍ୱକୁ ଅବଲମ୍ବନ କରି ଅବସ୍ଥିତି କରେ; ଅତଏବ ସୂକ୍ଷ୍ମ ମରୁତ୍‌ତତ୍ତ୍ୱ-ସମ୍ବଳିତ ଅହଂବୃତ୍ତି ହିଁ ମୁଖ୍ୟ-ପ୍ରାଣ ଶବ୍ଦର ବାଚ୍ୟ ।" ଏହି କଥା ଶ୍ରୀମତ୍ ସନ୍ତଦାସବାବାଜୀ ମହାରାଜ ବେଦାନ୍ତ ଦର୍ଶନ ୩୫୫ ପୃଷ୍ଠାରେ କହିଛନ୍ତି ।

ଶିଷ୍ୟ—ମୁଖ୍ୟପ୍ରାଣ ହିଁ ଯେ ନାଦ ତାହା ଠିକ୍ ସ୍ପଷ୍ଟ ଭାବରେ ସେ କହିଲେ ନାହିଁ ।

ଗୁରୁ—ଅହଂବୃତ୍ତି ନାଦ ଛଡ଼ା ଆଉ କାହାର ଅଛି ?
ଚୈତନ୍ୟଂ ସର୍ବଭୂତାନାଂ ଶବ୍ଦବ୍ରହ୍ମେତି ମେ ମତିଃ । (ସାରଦା)

ପ୍ରପଞ୍ଚସାରରେ କଥିତ ଅଛି—

ଗତୋ ବୋ ଜୀବତାମେଷ ପ୍ରାଣିଷ୍ୱେବ ବ୍ୟବସ୍ଥିତଃ ।
ବ୍ରହ୍ମାଣ୍ଡଂ ଗ୍ରସ୍ତମେତେନ ବ୍ୟାପ୍ତଂ ସ୍ଥାବରଜଙ୍ଗମମ୍ ।
ନାଦଃ ପ୍ରାଣଶ୍ଚ ଜୀବଶ୍ଚ ଘୋଷଶ୍ଚେତ୍ୟାଦି କଥ୍ୟତେ ॥

ପ୍ରଶ୍ନୋପନିଷଦରେ (୨ୟ ପ୍ରଶ୍ନରେ) ଏହାକୁ ବରିଷ୍ଠ ପ୍ରାଣ ବୋଲି ଉଲ୍ଲେଖ କରାଯାଇଛି । ଆକାଶ ବାୟୁ ଅଗ୍ନି ଜଳ ପୃଥିବୀ ବାକ୍ ମନଃ ଚକ୍ଷୁ କର୍ଣ୍ଣ—ସେମାନେ ନିଜ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ ସକାଶେ କହିଛନ୍ତି—ଏହି ଦେହକୁ ଆମେ ବିଶେଷରୂପ ଧାରଣ କରୁ । ୨ ।

ତାନ୍ ବରିଷ୍ଠଃ ପ୍ରାଣ ଉବାଚ ମା ମୋହମାପଦ୍ୟଥ, ଅହମେ-ବୈତତ୍ ପଞ୍ଚଧାତ୍ମାନଂ ପ୍ରବିଭଜ୍ୟୈତଦ୍‌ବାଣମବଷ୍ଟଭ୍ୟ ବିଧାରୟା-ମୀତି ।

ମୁଖ୍ୟପ୍ରାଣ ସେମାନଙ୍କୁ କହିଲେ, ମୋହପ୍ରାପ୍ତ ହୁଅ ନାହିଁ । ମୁଁ ହିଁ ମତେ ପଞ୍ଚଭାଗରେ ବିଭକ୍ତ କରି ଏହି ଶରୀରକୁ ସୁଦୃଢ଼ କରି ବିଶେଷରୂପେ ଧାରଣ କରିଅଛି । ୩ ।

ସ ଯ ଏତାମେବଂ ବିଦ୍ୱାନାଦିତ୍ୟଂ ବ୍ରହ୍ମେତ୍ୟୁପାସ୍ତେଽଭ୍ୟାସୋ ହ ଯଦେନଂ ସାଧବୋ ଘୋଷା ଆ ଚ ଗଚ୍ଛେୟୁ ରୁପ ଚ ନିମ୍ରେଡ଼େରନ୍ନି-ମ୍ରେଡ଼େରନ୍ । ୪ । ଛାନ୍ଦୋଗ୍ୟ ତୃତୀୟ ଅଧ୍ୟାୟ ୧୯ ଖଣ୍ଡ

"ଯେ କେହି ଲୋକ ଏହି ଆଦିତ୍ୟକୁ ଏହିପରି ଜାଣି ଆଦିତ୍ୟକୁ 'ବ୍ରହ୍ମ' ବୋଲି ଉପାସନା କରନ୍ତି, ଏହାଙ୍କ ନିକଟରେ ନିଶ୍ଚୟ

ଅବଲମ୍ବେ ଶୁଭ ଶବ୍ଦସମୂହ ଉପସ୍ଥିତ ହୁଏ ଏବଂ ସୁଖୋପଭୋଗସାଧକ ମଧ୍ୟ ହୋଇଥାନ୍ତି ।”

(ଦୁର୍ଗାଚରଣ ସାଂଖ୍ୟବେଦାନ୍ତତୀର୍ଥକୃତ ଅନୁବାଦ)

ଘୋଷ ଯେ ନାଦ, ତାହା ପ୍ରପଞ୍ଚସାରରେ କୁହାଯାଇଅଛି ।

ଶିଷ୍ୟ—ହଁ, ତାହାହେଲେ ଆଦିତ୍ୟଙ୍କର ଉପାସନା ଦ୍ୱାରା ନାଦ ଲାଭ କରାଯାଇପାରେ ।

ଗୁରୁ—ଆଦିତ୍ୟହିଁ ଓଙ୍କାର । ଓଙ୍କାରର ଆଧିଦୈବିକ ରୂପ ହେଲେ ଆଦିତ୍ୟ ।

ଆଦିତ୍ୟ ଉଦ୍‌ଗୀଥ ଏଷ ପ୍ରଣବ ଓମିତି । (ଛାନ୍ଦୋଗ୍ୟ)

ଯଦ୍‌ବ୍ରହ୍ମ ତଜ୍ଜ୍ୟୋତିର୍ଯଜ୍ଜ୍ୟୋତିଃ ସ ଆଦିତ୍ୟ ସ ବା ଏଷ ଓମିତ୍ୟେତଦାତ୍ମା । (ମୈତ୍ରାୟଣୀ ଶ୍ରୁତି)

ତୈତ୍ତିରୀୟ ଆରଣ୍ୟକରେ ଅଛି—

ସ ନାଦେନ ବହିରତି ପ୍ରାଣୋ ବୈ ନାଦସ୍ତସ୍ମାତ୍ ପ୍ରାଣୋ ନଦନ୍ ସର୍ବମଶ୍ନୁତେ ଅର୍ଥାତ୍ ହିରଣ୍ୟଗର୍ଭାଖ୍ୟ ନାଦରୂପୀ ଶବ୍ଦବ୍ରହ୍ମର ସ୍ପନ୍ଦନରେ ହିଁ ପ୍ରାଣ ସ୍ପନ୍ଦିତ ହୋଇ ସୁଷୁମ୍ନା ଶ୍ୱାସରୂପେ ଧ୍ୱନି କରିଥାଏ ।

ଅଥ ଯଦତଃପରୋ ଦିବୋ ଜ୍ୟୋତିର୍ଦୀପ୍ୟତେ ବିଶ୍ୱତଃ ପୃଷ୍ଠେଷୁ ସର୍ବତଃ ପୃଷ୍ଠେଷ୍ୱନୁତ୍ତମେଷୂତ୍ତମେଷୁ ଲୋକେଷ୍ୱିଦଂ ବାବ ତଦ୍‌ଯଦିଦମସ୍ମିନ୍ନନ୍ତଃପୁରୁଷେ ଜ୍ୟୋତିଃ । ୭ ।

(ଛାନ୍ଦୋଗ୍ୟ ୩ୟ ପ୍ରପାଠକ ୧୩ ଖଣ୍ଡ)

ତସ୍ୟୈଷା ଦୃଷ୍ଟିଃ ଯତ୍ରୈତଦସ୍ମିଞ୍ଛରୀରେ ସଂସ୍ପର୍ଶେନୋଷ୍ଣିମାନଂ ବିଜାନାତି ତସ୍ୟୈଷା ଶ୍ରୁତିର୍ଯତ୍ରୈତତ୍ କର୍ଣ୍ଣାବପିଗୃହ୍ୟ ନିନଦମିବ ନଦଥୁରିବାଗ୍ନେରିବ ଜ୍ୱଳତ ଉପଶୃଣୋତି ତଦେତଦ୍ଦୃଷ୍ଟଞ୍ଚ ଶ୍ରୁତଞ୍ଚେତ୍ୟୁପାସୀତ ଚକ୍ଷୁଷ୍ୟଃ ଶ୍ରୁତୋ ଭବତି ଯ ଏବଂ ବେଦ ଯ ଏବଂ ବେଦ ।୮

(ଛାନ୍ଦୋଗ୍ୟ ୩ୟ ପ୍ରପାଠକ ୧୩ ଖଣ୍ଡ)

ଅର୍ଥାତ୍ ସ୍ୱର୍ଗଲୋକ ପରେ ଯେଉଁ ଜ୍ୟୋତି ବାସିତ ହେଉଛନ୍ତି, ତାହା ସ୍ୱୟଂପ୍ରଭ, ନିରନ୍ତର ତାହାର ପ୍ରକାଶ ବିଦ୍ୟମାନ—ସଂସାର ଉପରେ ସମସ୍ତଙ୍କ ଉପରେ ସର୍ବୋତ୍ତମ ଉତ୍ତମ ସତ୍ୟ ଆଦି ଲୋକ-ସମୂହରେ ପ୍ରକାଶିତ ଅଛନ୍ତି । ସେହି ଜ୍ୟୋତି ମାନବଦେହ ମଧ୍ୟସ୍ଥିତ ଜ୍ୟୋତି । ଏହି ଶରୀରକୁ ହସ୍ତଦ୍ୱାରା ସ୍ପର୍ଶ କଲେ ଯେଉଁ ଉଷ୍ଣତା ଅନୁଭବ କରିହୁଏ, ତାହାଦ୍ୱାରା ଆତ୍ମଜ୍ୟୋତିର ଅନୁଭୂତି ହୋଇ-ଥାଏ ଅର୍ଥାତ୍ ତାହାହିଁ ସେହି ଆତ୍ମଜ୍ୟୋତିର ଦର୍ଶନର ସାକ୍ଷାତ୍ ଉପାୟ ।

କର୍ଣ୍ଣଦ୍ୱୟ ଆଙ୍ଗୁଳିଦ୍ୱାରା ଆଚ୍ଛାଦିତ କଲେ ଯେଉଁ ରଥ-ନିର୍ଘୋଷ ବୃଷଭନିନାଦସଦୃଶ ବା ପ୍ରଜ୍ୱଳିତ ଅଗ୍ନିର ଶବ୍ଦପରି ଶବ୍ଦ ଶ୍ରୁତି-ଗୋଚର ହୁଏ, ତାହାହିଁ ଏହି ଜ୍ୟୋତିର ସାକ୍ଷାତ୍ ଶ୍ରବଣର ଉପାୟ । କଥିତ ବ୍ରହ୍ମଜ୍ୟୋତିକୁ ଦୃଷ୍ଟ ଶ୍ରୁତ ବୋଲି ଉପାସନା କରିବ—ତଦ୍ଦ୍ୱାରା ଉପାସକ ଦର୍ଶନୀୟ ଓ ଲୋକବିଶ୍ରୁତ ହୋଇଥାଏ ।

ଶିଷ୍ୟ—ଏହି ଜ୍ୟୋତିର ଦର୍ଶନ ଶ୍ରବଣରେ ଦର୍ଶନୀୟ ଓ ଲୋକବିଶ୍ରୁତ ହେବା କିଁ ମାତ୍ର ଫଳ ?

ଗୁରୁ—ଏ ଦର୍ଶନ ଶ୍ରବଣ ତ ପ୍ରକୃତ ଦର୍ଶନ ଶ୍ରବଣ ନୁହେଁ । ଏହି ଜ୍ୟୋତି ଓ ନାଦ ଯେତେବେଳେ ସର୍ବପାପକ୍ଷୟ ହୋଇ ସ୍ୱତଃ ପ୍ରକାଶିତ ହୁଅନ୍ତି, ସେ ପ୍ରକାଶର ଯେତେବେଳେ ଆଉ ଉଦୟ ଅସ୍ତ ନ ଥାଏ, ସେତେବେଳେ ଯାଇ ସାଧକ ଜୀବନ୍ମୁକ୍ତି ଲାଭ କରିଥାଏ ।

ବୃହଦାରଣ୍ୟକ ଶ୍ରୁତିରେ ଅଛି—

ଅସ୍ତମିତେ ଆଦିତ୍ୟେ ଯାଜ୍ଞବଲ୍କ୍ୟ ଚନ୍ଦ୍ରମସ୍ୟସ୍ତମିତେ ଶାନ୍ତେଽଗ୍ନୌ କିଂ ଜ୍ୟୋତିରେବାୟଂ ପୁରୁଷ ଇତି ବାଗେବାସ୍ୟ ଜ୍ୟୋତିର୍ଭବତି ବାଚୈବାୟଂ ଜ୍ୟୋତିଷାସ୍ତେ ପଲ୍ୟୟତେ କର୍ମ

କୁରୁତେ ବ୍ୟପଲ୍ୟେତୀତି ତସ୍ମାଦବୈ ସମ୍ରାଡ଼ପି, ଯତ୍ର ସ୍ୱଃ ପାଣିର୍ନ ବିନିର୍ଜ୍ଞାୟତେଽଥ ଯତ୍ର ବାଗୁଚ୍ଚରତ୍ୟୁପୈବ ତତ୍ର ନ୍ୟେତୀତ୍ୟେବମେ-ବୈତଦ୍ ଯାଜ୍ଞବଲ୍କ୍ୟ । ୪ । ୩ । ୫

ଯାଜ୍ଞବଲ୍କ୍ୟ ! ସୂର୍ଯ୍ୟ ଓ ଚନ୍ଦ୍ରମା ଅସ୍ତମିତ ହେଲେ ଅଗ୍ନି ନିର୍ବାପିତ ହୋଇଗଲେ କେଉଁ ଜ୍ୟୋତି ପୁରୁଷର ସହାୟକ ହୁଏ ? "ଶବ୍ଦ ହିଁ ତାହାର ଜ୍ୟୋତି ହୁଏ," ଶବ୍ଦଜ୍ୟୋତିର ସହାୟତାରେ ସେ ବସେ, ଚାଲେ, କାର୍ଯ୍ୟ କରେ, ଫେରି ଆସେ । ଏଇଥିପାଇଁ ହେ ସମ୍ରାଟ୍, ଯେତେବେଳେ ନିଜର ହାତ ସୁଦ୍ଧା ଭଲ କରି ଦେଖା-ଯାଏ ନାହିଁ ସେତେବେଳେ ଯେଉଁଠି କୌଣସି ଶବ୍ଦ ହୁଏ, ଲୋକ ସେହିଠାରେ ଉପସ୍ଥିତ ହୋଇପାରେ । ଯାଜ୍ଞବଲ୍କ୍ୟ, ଏହା ପ୍ରକୃତରେ ଏହିପରି ।

ମୁଣ୍ଡକ ଶ୍ରୁତିରେ ଅଛି—

ଯଃ ସର୍ବଜ୍ଞଃ ସର୍ବବିଦ୍ ଯସ୍ୟୈଷ ମହିମା ଭୁବି ।
ଦିବ୍ୟେ ବ୍ରହ୍ମପୁରେ ହ୍ୟେଷ ବ୍ୟୋମ୍ନ୍ୟାତ୍ମା ପ୍ରତିଷ୍ଠିତଃ ॥ ୨ । ୨ । ୭

ଯେ ସର୍ବଜ୍ଞ ଏବଂ ସର୍ବବିଦ୍, ଯାହାର ମହିମା ଜଗଦ୍‌ବ୍ୟାପୀ, ଜ୍ୟୋତିର୍ମୟ ହୃଦୟ-ପଦ୍ମ-ମଧ୍ୟସ୍ଥ ଆକାଶରେ ଏହି ଆତ୍ମା ଅବସ୍ଥିତ ଅଛନ୍ତି ।

ଶିଷ୍ୟ—ସୂର୍ଯ୍ୟ ଚନ୍ଦ୍ର ଅଗ୍ନି ଅନ୍ତର୍ହିତ ହୋଇଗଲେ ମଧ୍ୟ ଶବ୍ଦ ଥାଏ ?

ଗୁରୁ—ହିଁ, ଏହି ଶବ୍ଦବ୍ରହ୍ମରୁ ହିଁ ସୂର୍ଯ୍ୟ ଚନ୍ଦ୍ର ଆଦି ଜ୍ୟୋତିଷ୍କ-ମଣ୍ଡଳୀ ଉତ୍ପନ୍ନ ହୋଇଛନ୍ତି, ଏମାନଙ୍କର କାରଣ ନାଦବ୍ରହ୍ମ ।

ବୃହଦାରଣ୍ୟକର ପଞ୍ଚମ ଅଧ୍ୟାୟ ନବମ ବ୍ରାହ୍ମଣରେ କଥିତ ହୋଇଅଛି—

ଅୟମଗ୍ନିର୍ବୈଶ୍ୱାନରୋ ଯୋଽୟମନ୍ତଃପୁରୁଷେ ଯେନେଦମ୍ ଅନ୍ନଂ ପଚ୍ୟତେ ଯଦିଦମଦ୍ୟତେ ତସ୍ୟୈଷ ଘୋଷୋ ଭବତି ଯମେତତ୍ କର୍ଣ୍ଣାବପିଧାୟ ଶୃଣୋତି, ସ ଯଦୋତ୍କ୍ରମିଷ୍ୟନ୍ ଭବତି ନୈନଂ ଘୋଷଂ ଶୃଣୋତି ।

ମନୁଷ୍ୟ ମଧ୍ୟରେ ଏହି ଯେ ଅଗ୍ନି—ଯାହା ଦ୍ୱାରା ଭୁକ୍ତ ଅନ୍ନ ପରିପାକ ହୁଏ—ତାହା ବୈଶ୍ୱାନର, କର୍ଣ୍ଣ ଅବରୋଧ କଲେ ଏହି ଯେଉଁ ଶବ୍ଦ ଶୁଣାଯାଏ, ଏହାହିଁ ସେହି ଅଗ୍ନିର ଶବ୍ଦ, ମନୁଷ୍ୟ ଯେତେବେଳେ ଦେହତ୍ୟାଗ ପାଇଁ ଉଦ୍ୟତ ହୁଏ, ସେତେବେଳେ ଏହି ଶବ୍ଦ ଶୁଣିବାକୁ ପାଏ ନାହିଁ । ଏହି ସତ୍ୟବ୍ରହ୍ମ ଜଠରାଗ୍ନିକୁ ବିରାଟ ବୋଲି ଉପାସନା କରିବ, ତାହାଦ୍ୱାରା ବୈରାଜତ୍ୱ ଲାଭ ହୁଏ । (ଅନୁବାଦ ଉଦ୍‌ବୋଧନ)

ଶିଷ୍ୟ—ଜଠର ଅଗ୍ନିର ଉପାସକ ବୈରାଜତ୍ୱ ଲାଭ କରନ୍ତି ?

ଗୁରୁ—ହଁ, ଜଠର ଅଗ୍ନିକୁ ବିରାଡ୍‌ବୋଧରେ ଉପାସନା କଲେ ଉକ୍ତ ଫଳ ହୁଏ ।

ଛାନ୍ଦୋଗ୍ୟ ଶ୍ରୁତିରେ କଥିତ ହୋଇଅଛି—(୮ମ ପ୍ରପାଠକ ପ୍ରଥମ ଖଣ୍ଡ)

ଅଥ ଯଦିଦମସ୍ମିନ୍ ବ୍ରହ୍ମପୁରେ ଦହରଂ ପୁଣ୍ଡରୀକଂ ବେଶ୍ମ ଦହରୋଽସ୍ମିନ୍ନନ୍ତରାକାଶସ୍ତସ୍ମିନ୍ ଯଦନ୍ତସ୍ତଦନ୍ୱେଷ୍ଟବ୍ୟଂ ତଦ୍‌ବାବ ବିଜିଜ୍ଞାସିତବ୍ୟମ୍ ଇତି । ୧ ।

ଏହି ବ୍ରହ୍ମପୁର ଦେହରେ ଶ୍ୱେତପଦ୍ମସମାକୃତି କ୍ଷୁଦ୍ର ପଦ୍ମ ଅଛି । ଦହର ଅର୍ଥରେ ଅନ୍ତର ଆକାଶ, ସେଥିରେ ଅର୍ଥାତ୍ ଆକାଶ ମଧ୍ୟରେ ଯାହା ଅଛି, ତାହା ଅନ୍ୱେଷଣଯୋଗ୍ୟ ; ତାହା ବିଶେଷ ଭାବରେ ଜାଣିବାକୁ ଇଚ୍ଛା କରିବା କର୍ତ୍ତବ୍ୟ ।

ଶିଷ୍ୟ—ଆକାଶରେ ଶବ୍ଦ ଛଡ଼ା ଆଉ କଣ ଥାଇପାରେ ?

ଗୁରୁ—ଦେଖ, ଏପରି ଭାବରେ କୁହାଯାଇଅଛି ଯେ ସନ୍ଦେହରେ ବୁଝିବାର ଉପାୟ ନାହିଁ । ଶବ୍ଦଶୂନ୍ୟ ଆକାଶ ସମ୍ଭବ ନୁହେଁ । ତା ପରେ କହୁଛନ୍ତି—ଶିଷ୍ୟଗଣ ଏହିକଥା ଶୁଣି ଯଦି ପ୍ରଶ୍ନ କରନ୍ତି, ଏହି ବ୍ରହ୍ମପୁରରେ ଦହର ପୁଣ୍ଡରୀକ ଗୃହ, ଦହର ଏହି ଅନ୍ତର ଆକାଶ—ସେଥିରେ କଣ ଅଛି ଯାହା ଅନ୍ୱେଷଣ କରିବା କର୍ତ୍ତବ୍ୟ, ଯାହା ବିଶେଷ ଭାବରେ ଜାଣିବା ଉଚିତ ? ୨ ।

ତାର ଉତ୍ତରରେ ଗୁରୁ କହୁଛନ୍ତି—ଯାବତ୍ ପରିମାଣ ଏହି ଆକାଶ ତାବତ୍ ପରିମାଣ ଅନ୍ତରାକାଶ, ଏଥିରେ ଦ୍ୟୁଲୋକ ପୃଥିବୀ ଅଗ୍ନି ବାୟୁ ସୂର୍ଯ୍ୟ ଚନ୍ଦ୍ର ବିଦ୍ୟୁତ୍ ଓ ନକ୍ଷତ୍ରସବୁ ଅବସ୍ଥିତ, ଯାହା ଏଇ ଆକାଶରେ ଅଛି ଯାହା ନାହିଁ ସମସ୍ତହିଁ ଅନ୍ତରାକାଶରେ ସମାହିତ । ୩ ।

ଶିଷ୍ୟଗଣ ତାର ଉତ୍ତରରେ କହିଲେ—ଏହି ବ୍ରହ୍ମପୁରରେ ସମସ୍ତ ଭୂତଗଣ, କାମନା, ନିଖିଳ ବିଷୟ ଅବସ୍ଥିତ ଥାଏ—ଯେତେବେଳେ ଏହା ଜରାଗ୍ରସ୍ତ ହୋଇ ଜୀର୍ଣ୍ଣ ହୁଏ, ବିନାଶପ୍ରାପ୍ତ ହୁଏ ଅଥବା ଶସ୍ତ୍ରପ୍ରହାରରେ ନଷ୍ଟ ହୁଏ—କଣ ଅବଶିଷ୍ଟ ରହେ ? ୪ ।

ଗୁରୁ କହିଲେ—ନା, ଏହାକୁ ଜରା ଜୀର୍ଣ୍ଣ କରିପାରେ ନାହିଁ । ଶସ୍ତ୍ରାଘାତଦ୍ୱାରା ଶରୀର ନାଶ ହେଲେ ମଧ୍ୟ ଏହା ନାଶ ହୁଏନାହିଁ । ଏହା ସତ୍ୟ ବ୍ରହ୍ମପୁର—ଏଥିରେ ସମସ୍ତ କାମ ଅବସ୍ଥିତ ।

"ଏଷ ଆତ୍ମା ଅପହତପାପ୍ମା ବିଜରୋ ବିମୃତ୍ୟୁର୍ବିଶୋକୋ ବିଜିଘତ୍ସୋଽପିପାସଃ ସତ୍ୟକାମଃ ସତ୍ୟସଙ୍କଳ୍ପୋ ଯଥା ହ୍ୟେବେହ ପ୍ରଜା ଅନ୍ୱାବିଶନ୍ତି ଯଥାନୁଶାସନଂ ଯଂ ଯମନ୍ତମଭିକାମା ଭବନ୍ତି ଯଂ ଜନପଦଂ ଯଂ କ୍ଷେତ୍ରଭାଗଂ ତଂ ତମେବୋପଜୀବନ୍ତି । ୫ ।

ଏହି ଆତ୍ମା ଅଧର୍ମଶୂନ୍ୟ ଜରାହୀନ ମୃତ୍ୟୁରହିତ ଶୋକଶୂନ୍ୟ ଆହାରେଚ୍ଛାରହିତ ତୃଷ୍ଣାହୀନ ଓ ସତ୍ୟକାମ ଅର୍ଥାତ୍ କଦାଚ ତାହାର କାମନା ବ୍ୟର୍ଥ ହୁଏ ନାହିଁ ଏବଂ ତାହାର ସଙ୍କଳ୍ପ ସତ୍ୟ । ଯେପରି ଏହି ଜଗତରେ ପ୍ରଜାଗଣ ଅନ୍ୟ ସ୍ୱାମୀର ବଶବର୍ତ୍ତୀ ହୋଇ ତାହାର ଆଜ୍ଞାନୁସାରେ କର୍ମ କରିଥାନ୍ତି ଏବଂ ସେହି ସ୍ୱାମୀଙ୍କ ନିକଟରେ ଯେଉଁ ଯେଉଁ ଜନପଦ ବା କ୍ଷେତ୍ରଭାଗ ବାସନା କରିଥାନ୍ତି ତାହାହିଁ ଲାଭକରି ଜୀବିତ ଥାନ୍ତି । ୭ ।

ଶିଷ୍ୟ—ସବୁ ଉପନିଷଦରେ କଣ ଏହିପରି ପରୋକ୍ଷ ଭାବରେ ନାଦବ୍ରହ୍ମ କଥା କୁହାଯାଇଛି ?

ଗୁରୁ—ନା ବତ୍ସ, ବହୁ ଉପନିଷଦ ମୁକ୍ତକଣ୍ଠରେ ନାଦବ୍ରହ୍ମ କଥା କହିଛନ୍ତି । ଏକା ପ୍ରକାର କଥା ବାରମ୍ବାର କହୁଛି, ତୁମର ବିରକ୍ତି ଆସୁନାହିଁ ତ ?

ଶିଷ୍ୟ—ନା ଦେବ, ମୁଁ ଯେତେ ଶୁଣୁଛି, ସେତେ ମୋର ପିପାସା ବଢ଼ୁଅଛି । ଆପଣ କୃପାକରି ନାଦବ୍ରହ୍ମର ଲୀଳାକଥା ବିସ୍ତୃତ ଭାବରେ କୁହନ୍ତୁ । କେବଳ ମୁଁ ନୁହେଁ, ଯେ କୌଣସି ଲୋକ ଏହି ନାଦବ୍ରହ୍ମଲୀଳାମୃତ ପାନ କରିବ ସେ କୃତାର୍ଥ ହୋଇଯିବ, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ ।

ଗୁରୁ—ବ୍ରହ୍ମବିନ୍ଦୁ ଶ୍ରୁତିରେ ଅଛି:—

ସ୍ୱରେଣ ସନ୍ଧୟେଦ୍ ଯୋଗମସ୍ୱରଂ ଭାବୟେତ୍ ପରଂ ।
ଅସ୍ୱରେଣ ହି ଭାବେନ ଭାବୋ ନାଭାବ ଇଷ୍ୟତେ । ୭ ।

ସ୍ୱର ଅର୍ଥାତ୍ ଧ୍ୱନିଦ୍ୱାରା ଯୋଗ ସନ୍ଧାନ କରିବ, ପରମ ପୁରୁଷଙ୍କୁ ଅସ୍ୱର ନାଦହୀନ ଭାବନା କରିବ—ଅସ୍ୱର ଅର୍ଥାତ୍ ଶବ୍ଦଶୂନ୍ୟ ଭାବଦ୍ୱାରାହିଁ ଭାବ ଅଭାବ ଇଚ୍ଛା କରେ ନାହିଁ । ଅର୍ଥାତ୍ ନିତ୍ୟ ସ୍ଥିତି ଲାଭ ହୋଇଥାଏ ।

ଶିଷ୍ୟ—ନାଦହୀନ ପରମ ପୁରୁଷ !

ଗୁରୁ—ହଁ, ବନ୍ଧ୍ରରେ ଚଳନ ନାହିଁ । ଆହୁରି ଶୁଣ—

ଶବ୍ଦୋ ମାୟାବୃତୋ ଯାବତ୍ତାବତ୍ତିଷ୍ଠତି ପୁଷ୍କରେ ।
ଭିନ୍ନେ ତମସି ଚୈକତ୍ୱମେକମେବାନୁ ପଶ୍ୟତି । ୧୫ । ୩

ଯେ ପର୍ଯ୍ୟନ୍ତ ଶବ୍ଦ ମାୟାଦ୍ୱାରା ଆବୃତ ଥାଏ, ସେ ପର୍ଯ୍ୟନ୍ତ ହୃଦୟପଦ୍ମରେ ଅବସ୍ଥାନ କରେ । ଅନ୍ଧକାର ଦୂର ହେଲେ ଅନାହତ ନାଦ ଦ୍ୱାରା ପ୍ରଣବ ଊର୍ଦ୍ଧ୍ୱମୁଖ ହେବା ପରେ ଜ୍ୟୋତି ଆବର୍ଦ୍ଧିତ ହେଲେ ଏକତ୍ୱ ଓ ଏକକୁ ହିଁ ଦର୍ଶନ କରିଥାଏ ।

ଶିଷ୍ୟ—ଶବ୍ଦ କଣ ମାୟାଦ୍ୱାରା ଆବୃତ ?

ଗୁରୁ—ସୁଷୁମ୍ନାପଥ ପୂର୍ବ କର୍ମଫଳରୁ ଯେ ପର୍ଯ୍ୟନ୍ତ ରୁଦ୍ଧ ଥାଏ, ସେତିକି ପର୍ଯ୍ୟନ୍ତ ।

ଦ୍ୱେ'କ୍ଷରଂ ପରଂ ବ୍ରହ୍ମ ଯସ୍ମିନ୍ କ୍ଷୀଣେ ଯଦକ୍ଷରମ୍ ।
ତଦ୍‌ବିଦ୍ୱାନକ୍ଷରଂ ଧ୍ୟାୟେଦ୍ ଯଦୀଚ୍ଛେଚ୍ଛାନ୍ତିମାତ୍ମନଃ ॥

ଶବ୍ଦ ଅର୍ଥାତ୍ ନାଦ ଅକ୍ଷର କ୍ଷରଣହୀନ ପରବ୍ରହ୍ମ—ଯାହା କ୍ଷୀଣ ଅର୍ଥାତ୍ ସୂକ୍ଷ୍ମ ହେଲେ ଯେଉଁ ଅକ୍ଷର, ବିଦ୍ୱାନ୍ ବ୍ୟକ୍ତି ଯଦି ଆପଣାର ଶାନ୍ତି ଇଚ୍ଛା କରନ୍ତି ତା ହେଲେ ସେହି ସୂକ୍ଷ୍ମ ଅକ୍ଷରକୁ ଧ୍ୟାନ କରିବେ ।

ଶିଷ୍ୟ—ସୂକ୍ଷ୍ମ ଅକ୍ଷର !

ଗୁରୁ—ନାଦ ଚର୍-ଅଚର୍-ମିଶ୍ରିତ । ଚନ୍ନାଦକୁ ଲକ୍ଷ୍ୟ କରି ସୂକ୍ଷ୍ମ ଅକ୍ଷର ବୋଲି କହୁଛନ୍ତି ।

ପୁଣି ଶୁଣ—

ଦ୍ୱେ ବିଦ୍ୟେ ବେଦିତବ୍ୟେ ତୁ ଶବ୍ଦ ବ୍ରହ୍ମ ପରଞ୍ଚ ଯତ୍ ।
ଶବ୍ଦବ୍ରହ୍ମଣି ନିଷ୍ଣାତଃ ପରଂ ବ୍ରହ୍ମାଧିଗଚ୍ଛତି ॥ ୧୭ ।

ଦୁଇଟି ବିଦ୍ୟା ଜ୍ଞାତବ୍ୟ—ଶବ୍ଦବ୍ରହ୍ମ ବେଦ ଏବଂ ପରବ୍ରହ୍ମ ପର ପ୍ରଣବ । ଶବ୍ଦବ୍ରହ୍ମରେ ନିପୁଣ ହୋଇ ପରବ୍ରହ୍ମ ପ୍ରାପ୍ତ ହୁଅନ୍ତି ।

ଶବ୍ଦବ୍ରହ୍ମର ଗୌଣ ଅର୍ଥ—ବେଦ, ମୁଖ୍ୟ ଅର୍ଥ—ଓଙ୍କାର-ନାଦ । ଏହି ଶ୍ରୁତିର ଶେଷ ଶ୍ଳୋକଟି ଭାରି ସୁନ୍ଦର—

ସର୍ବଭୂତାଧିବାସଞ୍ଚ ଯଦ୍ଭୂତେଷୁ ବସତ୍ୟପି ।
ସର୍ବାନୁଗ୍ରାହକତ୍ୱେନ ତଦସ୍ମ୍ୟହଂ ବାସୁଦେବଃ ତଦସ୍ମ୍ୟହଂ ବାସୁଦେବଃ ॥

ଅଥ ହଂସପରମହଂସ ନିର୍ଣ୍ଣୟଂ ବ୍ୟାଖ୍ୟାସ୍ୟାମଃ । ବ୍ରହ୍ମଚାରିଣେ ଶାନ୍ତାୟ ଦାନ୍ତାୟ ଗୁରୁଭକ୍ତାୟ ହଂସ-ହଂସେତି ସଦା ଧ୍ୟାୟନ୍ ସର୍ବେଷୁ ଦେହେଷୁ ବ୍ୟାପ୍ୟ ବର୍ତ୍ତତେ ଯଥା ହ୍ୟଗ୍ନିଃ କାଷ୍ଠେଷୁ ତିଳେଷୁ ତୈଳମିବ ତଂ ବିଦିତ୍ୱା ମୃତ୍ୟୁ ମତ୍ୟେତି ।

ଅନନ୍ତର ଶାନ୍ତ ଦାନ୍ତ ଗୁରୁଭକ୍ତ ବ୍ରହ୍ମଚାରୀ ନିକଟରେ ଏହି ହଂସ ପରମହଂସ ନିର୍ଣ୍ଣୟ ବ୍ୟାଖ୍ୟା କରିବ । ହଂସ ହଂସ—ଏହା ସର୍ବଦା ଚିନ୍ତା କରୁ କରୁ ସମସ୍ତ ଦେହ ବ୍ୟାପି କାଷ୍ଠରେ ଅଗ୍ନି ପରି—ତିଳରେ ତୈଳ ପରି—ଯେ ଅବସ୍ଥିତ ଅଛନ୍ତି, ତାହାଙ୍କୁ ବିଦିତ ହୋଇ ମୃତ୍ୟୁକୁ ଜୟ କରିବାକୁ ସମର୍ଥ ହୁଏ ।

ଶିଷ୍ୟ—କିଏ ଅଛନ୍ତି ?

ଗୁରୁ—ନାଦବ୍ରହ୍ମ । ଅନୁଗୀତାପର୍ବରେ କଥିତ ହୋଇଅଛି—"ବାକ୍ୟ ଦୁଇପ୍ରକାର—ବ୍ୟକ୍ତ ଓ ଅବ୍ୟକ୍ତ, ତନ୍ମଧ୍ୟରେ ବ୍ୟକ୍ତ ବାକ୍ୟ ହିଁ ପ୍ରାଣର ଅଧୀନ, ଅବ୍ୟକ୍ତ ବାକ୍ୟ ଜାଗ୍ରତ-ସ୍ୱପ୍ନ ଆଦି ସମୁଦାୟ ଅବସ୍ଥାରେ ମନୁଷ୍ୟର ଅନ୍ତରରେ "ହଂସ" ମନ୍ତ୍ର ରୂପରେ ବିଦ୍ୟମାନ ଥାଏ । ସେଥିପାଇଁ ଅବ୍ୟକ୍ତ ବାକ୍ୟକୁ ବ୍ୟକ୍ତ ବାକ୍ୟ ଅପେକ୍ଷା ଶ୍ରେଷ୍ଠ ବୋଲି ପରିଗଣିତ କରଯାଏ ।" ୨୦ ଅଧ୍ୟାୟ ।

ଅଥୋ ନାଦମାଧାରାଦ୍ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତଂ ଶୁଦ୍ଧ ସ୍ଫଟିକ-ସଙ୍କାଶଂ ସ ବୈ ବ୍ରହ୍ମ ପରମାତ୍ମା ଉଚ୍ୟତେ ।

ମଙ୍ଗଳମୟ ନାଦ ମୂଳାଧାରରୁ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ଶୁଦ୍ଧ ସ୍ଫଟିକ ସଦୃଶ—ତାହାହିଁ ବ୍ରହ୍ମ—ତାହାହିଁ ପରମାତ୍ମା ।

ଶିଷ୍ୟ—ତା ହେଲେ ନାଦ ଧ୍ୱନିମାତ୍ର ନୁହନ୍ତି, ତାଙ୍କର ଆକୃତି ଶୁଦ୍ଧ ସ୍ଫଟିକ ମଣି ପରି ଏବଂ ସ୍ଥାନ ସୁଷୁମ୍ନାନ୍ତର୍ଗତ ମୂଳାଧାର ପଦ୍ମରୁ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ଅର୍ଥାତ୍ ସହସ୍ରାରଦଳ କମଳ ପର୍ଯ୍ୟନ୍ତ । ଏହି ହେଉଛନ୍ତି ବ୍ରହ୍ମ, ଏହି ମଧ୍ୟ ପରମାତ୍ମା ।

ଗୁରୁ—ହଁ, ସେହି ଚନ୍ଦ୍ରନାଦ—ଶବ୍ଦବ୍ରହ୍ମ ନାଦ ତାଙ୍କଠାରେ ଏକୀଭୂତ ହୋଇଯାନ୍ତି । ହଂସର ଆରାଧନାଦ୍ୱାରା ପରମପଦ ପ୍ରାପ୍ତି ହୁଏ । ସେଥିପାଇଁ "ହଂସାତ୍ମା" ଅର୍ଥାତ୍ ସର୍ବଦା ହଂସ ହଂସ ଶବ୍ଦ କରି କରି ଗମନାଗମନ କରନ୍ତି ବୋଲି ହଂସାତ୍ମା ଅର୍ଥାତ୍ ଜୀବାତ୍ମା ବୋଲି ବୁଝାଯାଏ । ହଂସମନ୍ତ୍ର-ଜପଦ୍ୱାରା ନାଦପ୍ରାପ୍ତି ହୁଏ, ସେଥିପାଇଁ ହଂସମନ୍ତ୍ରର ପ୍ରୟୋଗ କହୁଛନ୍ତି—

ହଂସ ଋଷି ଅବ୍ୟକ୍ତା ଗାୟତ୍ରୀ ଛନ୍ଦଃ ପରମହଂସ ଦେବତା ଅହଂ ବୀଜ ସ ଶକ୍ତିଃ—ସୋଽହମ୍ ଏହା କୀଳକ, ଦିବାରାତ୍ରିରେ ୨୧୬୦୦ ଏକୋଇଶି ହଜାର ଛଅଶହ ଥର ଶ୍ୱାସ ପ୍ରଶ୍ୱାସରେ ଏହି ଅଜପା ହଂସମନ୍ତ୍ର ସ୍ୱତଃ ଜପ ହୋଇଥାଏ । ଅଙ୍ଗନ୍ୟାସ ଆଦି କରି ହୃଦୟରେ ଅଷ୍ଟାଦଶ ପଦ୍ମରେ ହଂସକୁ ଧ୍ୟାନ କରିବାକୁ ହେବ ।

ଅଗ୍ନୀଷୋମୌ ପକ୍ଷାବୋଙ୍କାରଃ ଶିରୋବିନ୍ଦୁସ୍ତୁ ନେତ୍ରଂ ମୁଖଂ ରୁଦ୍ରୋ ରୁଦ୍ରାଣୀ ଚରଣୌ, ବାହୂ କାଳଶ୍ଚାଗ୍ନିଶ୍ଚୋଭେ ପାର୍ଶ୍ୱେ ଭବତଃ । ପଶ୍ୟତ୍ୟନାଗାରଶ୍ଚ ଶିଷ୍ଟୋଭୟପାର୍ଶ୍ୱେ ଭବତଃ ।

ହଂସ ଏହି ପ୍ରକାର—

ପରମହଂସୋ ଭାନୁକୋଟି ପ୍ରତୀକାଶଃ ଯେନେଦଂ ବ୍ୟାପ୍ତମ୍ ।

ପରମହଂସ କୋଟିସୂର୍ଯ୍ୟ ପରି ପ୍ରଭାସମ୍ପନ୍ନ—ପରମହଂସଙ୍କ ଦ୍ୱାରା ନିଖିଳ ଜଗତ ବ୍ୟାପ୍ତ ।

ଶିଷ୍ୟ—ହଂସ ପରମହଂସ କାହାକୁ ଲକ୍ଷ୍ୟ କରି କୁହା-ଯାଉଛି ?

ଗୁରୁ—ହଂସ ପ୍ରାଣ ଏବଂ ପରମହଂସ ଓଙ୍କାର ।

ବ୍ରହ୍ମାଦି-ସ୍ଥାବରାନ୍ତାନାଂ ସର୍ବେଷାଂ ପ୍ରାଣିନାଂ ଖଳୁ ।
ପ୍ରାଣଃ ପ୍ରଣବ ଏବାୟଂ ତସ୍ମାତ୍ ପ୍ରଣବ ଈରିତଃ ॥
ଶିବପୁରାଣ ବାୟବ୍ୟସଂହିତା ।

ବ୍ରହ୍ମଠାରୁ ସମସ୍ତ ସ୍ଥାବରାନ୍ତ ପ୍ରାଣୀଗଣଙ୍କର ପ୍ରାଣ ପ୍ରଣବ, ସେଥିପାଇଁ ପ୍ରଣବ ବୋଲି କଥିତ ହୁଅନ୍ତି । ଅପର ପ୍ରଣବ ପ୍ରାଣ ଜୀବାତ୍ମା ହଂସ ଏବଂ ପରପ୍ରଣବ ଓଙ୍କାର ମହାପ୍ରାଣ ପରମହଂସ ।

ଶ୍ରୀମଦ୍ଭାଗବତରେ ଅଛି—

ବେଦଃ ପ୍ରଣବ ଏବାଗ୍ରେ ଧର୍ମୋଽହଂ ବୃଷରୂପଧୃକ୍ ।
ଉପାସତେ ତପୋନିଷ୍ଠା ହଂସ ମାଂ ମୁକ୍ତକିଲ୍ବିଷାଃ ॥
୧୧ । ୧୭ । ୧୧

ସତ୍ୟଯୁଗରେ ଚତୁଷ୍ପାତ୍ ବେଦାଦି ପ୍ରଣବହିଁ ମନୋବୃଷସ୍ଥ ମୁଁ —ବିଗତପାପ ତପସ୍ୟାପରାୟଣଗଣ ହଂସ ପ୍ରଣବରୂପ ପରବ୍ରହ୍ମ ମତେ ଉପାସନା କରୁଥିଲେ ।

ସେହି ପ୍ରାଣ ଜୀବାତ୍ମା ହଂସକୁ ବ୍ୟାପି ମହାପ୍ରାଣ ପରମାତ୍ମା ପରମହଂସ ସର୍ବଦା ଅବସ୍ଥାନ କରୁଛନ୍ତି ।

ସେହି ହଂସରେ ଅଷ୍ଟପ୍ରକାର ବୃତ୍ତି ହୁଏ । ହୃଦୟସ୍ଥ ଅଷ୍ଟଦଳ ମଧ୍ୟରେ ଯେତେବେଳେ ପୂର୍ବଦଳରେ ବୃତ୍ତି ହୁଏ, ଅର୍ଥାତ୍ ବ୍ୟାପାର ବା ସ୍ଥିତି ହୁଏ, ସେତେବେଳେ ପୁଣ୍ୟରେ ମତି ରହେ, ଅଗ୍ନିଦଳରେ ନିଦ୍ରା ଆଳସ୍ୟ ପ୍ରଭୃତି ହୁଏ, ଦକ୍ଷିଣଦଳରେ କ୍ରୂର କାର୍ଯ୍ୟରେ ମନ ପ୍ରବୃତ୍ତ ହୁଏ, ନୈଋତରେ ପାପକାର୍ଯ୍ୟ ବୁଦ୍ଧି, ପଶ୍ଚିମରେ କ୍ରୀଡ଼ା, ବାୟୁଦଳରେ ଗମନ ଆଦିରେ ବୁଦ୍ଧି, ଉତ୍ତରରେ ରତିପ୍ରୀତି,

ଈଶାନରେ ଦ୍ରବ୍ୟ ଗ୍ରହଣ, ମଧ୍ୟରେ ବୈରାଗ୍ୟ, କେଶରରେ ଜାଗ୍ରତ ଅବସ୍ଥା, କର୍ଣ୍ଣିକାରେ ସ୍ୱପ୍ନ, ଲିଙ୍ଗରେ ସୁଷୁପ୍ତି, ପଦ୍ମତ୍ୟାଗରେ ତୁରୀୟ । ଯେତେବେଳେ ହଂସମନ୍ତ୍ର ପ୍ରଣବ ନାଦରେ ଲୀନ ହୁଏ, ସେତେବେଳେ ତୁରୀୟାତୀତ ଉନ୍ମନୀ ଅବସ୍ଥା ଲାଭ ହୁଏ । ଅଜପା ବନ୍ଦ ହୋଇଥାଏ । ଏହାରି ନାମ ଅଜପା—ଜପର ଉପସଂହାର ।

ଏ ସମସ୍ତ ହଂସବଶରେ ହୁଏ । ମନ ଓ ହଂସ ବର୍ଣ୍ଣର କରା-ଯାଉଛି । ସେହି ହଂସମନ୍ତ୍ର କୋଟିଏ ଥର ଜପ କଲେ ନାଦ ଅନୁଭବ କରିହୁଏ । ଏହିପରି ସମସ୍ତ ହଂସବଶରେ ନାଦ ଦଶ ପ୍ରକାର ହୋଇଥାଏ । ଚିଣି ପ୍ରଥମ, ଚିଞ୍ଚିଣୀ ଦ୍ୱିତୀୟ, ଘଣ୍ଟାନାଦ ତୃତୀୟ, ଶଙ୍ଖନାଦ ଚତୁର୍ଥ, ତନ୍ତ୍ରୀନାଦ ପଞ୍ଚମ, ତାଳନାଦ ଷଷ୍ଠ, ବେଣୁନାଦ ସପ୍ତମ, ମୃଦଙ୍ଗନାଦ ଅଷ୍ଟମ, ଭେରୀନାଦ ନବମ ଏବଂ ଦଶମ ମେଘନାଦ । ନବମ ପରିତ୍ୟାଗ ପୂର୍ବକ ଦଶମ ଅଭ୍ୟାସ କରିବ ।

ପ୍ରଥମେ ଚିନ୍ ଶବ୍ଦରେ ଶରୀର ଚିନ୍ ଚିନ୍ ହୁଏ, ଦ୍ୱିତୀୟ ଚିଞ୍ଚିଣୀ ନାଦରେ ଶରୀର ଭଙ୍ଗା ହୁଏ (ଅଳସ ଭାଙ୍ଗିବା); ତୃତୀୟ ଘଣ୍ଟାନାଦରେ ଶରୀର ତାପଯୁକ୍ତ ହୁଏ (ଝାଳ ବୁହେ), ଚତୁର୍ଥ ଶଙ୍ଖନାଦରେ ମସ୍ତକ କମ୍ପିତ ହୁଏ, ପଞ୍ଚମ ତନ୍ତ୍ରୀନାଦରେ ତାଳୁରୁ ଜଳକ୍ଷରଣ ହୁଏ, ଷଷ୍ଠ କରତାଳ ନାଦରେ ତାଳୁକ୍ଷରିତ ଅମୃତ ପାନ ହୁଏ, ସପ୍ତମ ବେଣୁନାଦରେ ଗୋପନୀୟ ବିଷୟରେ ଜ୍ଞାନ ହୋଇଥାଏ, ଅଷ୍ଟମ ମୃଦଙ୍ଗନାଦରେ ପରବାକ୍ ଶ୍ରୁତିଗୋଚର ହୁଏ, ନବମ ଭେରୀନାଦରେ ଅଗୋଚର ଦେହ ଜ୍ୟୋତିର୍ମୟ ଏବଂ ଚକ୍ଷୁ ଅମଳ ହୁଏ । ଦଶମ ମେଘନାଦରେ ପରମବ୍ରହ୍ମ ଲାଭ ହୋଇଥାଏ । ବ୍ରହ୍ମର ଆବିର୍ଭାବ ହେଲେ ମନ ସେଥିରେ ବିଶେଷ ଭାବରେ ଲୀନ ହୋଇଯାଏ; ସଙ୍କଳ୍ପ, ବିକଳ୍ପ ପୁଣ୍ୟ ପାପ ଦଗ୍ଧ ହୋଇଗଲେ ସଦା-ଶିବ ଶକ୍ତ୍ୟାତ୍ମା ସର୍ବତ୍ର ଅବସ୍ଥିତ ସ୍ୱୟଂ ଜ୍ୟୋତିସ୍ୱରୂପ ଶୁଦ୍ଧ ବୁଦ୍ଧ ନିତ୍ୟ

ନିରଞ୍ଜନ ଶାନ୍ତଭାବ ପ୍ରକାଶିତ ହୋଇଥାଏ—ଏହାହିଁ ବେଦ ପ୍ରବଚନ ଅର୍ଥାତ୍ ବେଦାର୍ଥଜ୍ଞାନ ।

ଶିଷ୍ୟ—ହଂସୋପନିଷଦ୍‌ରେ ଦଶବିଧ ନାଦ କଥା ଏବଂ ନାଦର ଆବିର୍ଭାବ ହେଲେ କି କି ଲକ୍ଷଣ ପ୍ରକାଶ ପାଏ କହିଛନ୍ତି । ମେଘନାଦ ହିଁ ଶେଷନାଦ ବୋଲି ଏଥିରେ କୁହା ଯାଇଅଛି ।

ଗୁରୁ—ଏ ସମ୍ବନ୍ଧରେ ମତାନ୍ତର ଅଛି, କ୍ରମେ ସବୁ କହୁଛି ।

ଶିଷ୍ୟ—ମତ ନ୍ତରର କାରଣ ?

ଗୁରୁ—ସବୁ ଶରୀର ତ ଏକ ଭାବରେ ଗଠିତ ନୁହେଁ । ମୂଳ ଉପାଦାନ ସତ୍ତ୍ୱ ରଜଃ ତମ ଗୁଣର ତାରତମ୍ୟରେ ନାଦର ତାରତମ୍ୟ ହୋଇଥାଏ ।

ହଂସ ମନ୍ତ୍ରର ଅହଂବୀଜ କାରଣ ଅଥବା ଅଙ୍କୁର, ସ ଶକ୍ତି ଅର୍ଥାତ୍ ପ୍ରକୃତି । ସୋଽହମ୍ କୀଳକ ଅର୍ଥାତ୍ ପଶୁବନ୍ଧନର ଖୁଣ୍ଟ ।

ଅହମ୍ ସମସ୍ତଙ୍କର ବୀଜ କାରଣ, ସ ପ୍ରକୃତି, ସ ପ୍ରକୃତିରେ ଅହଂ ରୋପିତ ହୁଏ । ଅହଂ ପଶୁକୁ ବନ୍ଧନ କରିବା ପାଇଁ ଖୁଣ୍ଟ ହେଲା ସୋଽହମ୍ ।

ଏଥିରେ ଲେଖାଅଛି—ଗୁହ୍ୟ ଦେଶକୁ ରୋଧ ପୂର୍ବକ ମୂଳାଧାରରୁ ବାୟୁକୁ ଉତ୍ତୋଳନ କରି ତିନଥର ସ୍ୱାଧିଷ୍ଠାନ ପ୍ରଦକ୍ଷିଣ କରି ମଣିପୁରକୁ ଯାଇ ଅନାହତ ଅତିକ୍ରମ ପରେ ବିଶୁଦ୍ଧଚକ୍ରରେ ପ୍ରାଣ ନିରୋଧ କରି ଆଜ୍ଞାଚକ୍ରରେ ପୁନଃ ପୁନଃ ଧ୍ୟାନପୂର୍ବକ ବ୍ରହ୍ମରନ୍ଧ୍ର ଧ୍ୟାନ କରୁ କରୁ ତ୍ରିମାତ୍ର "ଅହମ୍"—ଏହିପରି ସର୍ବଦା ଧ୍ୟାନ କରିବ । ଅହମ୍‌କୁ କେହି କେହି ଅଜପା ମନ୍ତ୍ର ବୋଲି କୁହନ୍ତି ।

"ବେଦରେ ନିର୍ଦ୍ଦେଶ ଅଛି ଯେ, ସର୍ବାଗ୍ରେ ଆତ୍ମାର "ଅହମ୍" ମୁଁ ଏହି ନାମ ହୋଇଥିଲା, ସେଥିପାଇଁ କାହାକୁ ଯଦି ପଚରାଯାଏ— "ତୁମେ କିଏ ?" ସେ ଆଗ "ଅହଂ" (ମୁଁ) ଏହା କହି ପରେ ନିଜର ପରିଚିତ ନାମ କୁହେ ।" ସିଦ୍ଧଯୋଗଃ

ଶିଷ୍ୟ—ହଂସ ମନ୍ତ୍ରର ବୀଜ ଅହଂ, ଶକ୍ତି ପ୍ରକୃତି ସ ଏବଂ କୀଳକ "ସୋଽହମ୍"—କୀଳକର ଅର୍ଥ ପଶୁବନ୍ଧନର ଖୁଣ୍ଟ—ଏହାର ସ୍ୱରୂପ କଣ ?

ଗୁରୁ—ମହାଭାରତରେ କଥିତ ଅଛି—"ଅନନ୍ତର ସେହି ସୃଷ୍ଟି-ସ୍ଥିତି-ପ୍ରଳୟ-କର୍ତ୍ତା ନିତ୍ୟ ଅନାଦି ପରମ ଦେବତା ସ୍ୱୟମ୍ଭୂ ମାନସନାମକ ଗୋଟିଏ ତେଜୋମୟ ପଦ୍ମ ସୃଷ୍ଟି କଲେ । ସେହି ପଦ୍ମରୁ ବେଦର ନିଦାନ ବ୍ରହ୍ମାଙ୍କର ଉତ୍ପତ୍ତି ହେଲା । ଭଗବାନ୍ ବ୍ରହ୍ମା ଉତ୍ପନ୍ନ ହେବାମାତ୍ରେ "ସୋଽହମ୍" ଏହି ଶବ୍ଦ ଉଚ୍ଚାରଣ କରିଥିଲେ ବୋଲି ତାହାଙ୍କୁ ଅହଙ୍କାର ନାମରେ ନିର୍ଦ୍ଦିଷ୍ଟ କରାଯାଏ । ସେତେବେଳେ ଆକାଶ ପ୍ରଭୃତି ପଞ୍ଚଭୂତ ଦ୍ୱାରହିଁ ବ୍ରହ୍ମାଙ୍କର ମୂର୍ତ୍ତି ନିର୍ମିତ ହୋଇଥିଲା । ପର୍ବତଗୁଡ଼ିକ ତାଙ୍କର ଅସ୍ଥି, ମେଦିନୀ ମେଦ ଓ ମାଂସ, ସମୁଦ୍ର-ଚତୁଷ୍ଟୟ ରୁଧିର, ଆକାଶ ଉଦର, ସମୀରଣ ନିଃଶ୍ୱାସ, ତେଜଃ ଅଗ୍ନି, ସ୍ରୋତସ୍ୱିନୀଗଣ ଶିରା ଏବଂ ଚନ୍ଦ୍ର ସୂର୍ଯ୍ୟ ତାଙ୍କର ନେତ୍ରଦ୍ୱୟ ରୂପରେ ପରିଣତ ହେଲା ଏବଂ ମସ୍ତକ ଆକାଶମଣ୍ଡଳରେ, ପଦଦ୍ୱୟ ଭୂମଣ୍ଡଳରେ ଓ ହସ୍ତସମୁଦାୟ ଦିଙ୍ମଣ୍ଡଳରେ ଅବସ୍ଥାନ କରିବାକୁ ଲାଗିଲେ । ସିଦ୍ଧଗଣ ମଧ୍ୟ ଏହି ମହାତ୍ମାଙ୍କୁ ଜାଣିବାକୁ ସମର୍ଥ ନୁହନ୍ତି । ହେ ବ୍ରହ୍ମନ୍ ! ଏହିସବୁ ମୁଁ ତୁମ ନିକଟରେ ସୃଷ୍ଟି-ନିର୍ମାତାଙ୍କ ବିଷୟରେ କହିଲି । ଯେ ମହାତ୍ମା ଭୂତଗଣଙ୍କୁ ଉତ୍ପାଦନ କରିଥିଲେ ସେହି ଭଗବାନ୍ ଅନନ୍ତ ନାମରେ ପ୍ରସିଦ୍ଧ ।"

(ଶାନ୍ତିପର୍ବ ୧୮୪ ଅଧ୍ୟାୟ)

"ସ୍ଥାବର-ଜଙ୍ଗମାତ୍ମକ ସମସ୍ତ ପଦାର୍ଥର ଅଧିପତି ନିଷ୍କଳ ନିରୁପାଧିକ ପରମାତ୍ମା ନବଦ୍ୱାରଯୁକ୍ତ ପୁର ମଧ୍ୟରେ ପ୍ରବେଶ କରି ହଂସରୂପରେ ନିର୍ଦ୍ଦିଷ୍ଟ ହୁଅନ୍ତି ।" ଶାନ୍ତିପର୍ବ ୨୩୯ ଅଧ୍ୟାୟ (ଅବ୍ୟକ୍ତ ବାଣୀ ଓ ହଂସ) ବୁଝିଲ ?

ଶିଷ୍ୟ—ହଁ, ହଠାତ୍ ଖଣ୍ଡରେ ଅହଂପର୍ଗୁ ବନ୍ଧା ହୋଇଥାଏ ।

ଗୁରୁ—ଅହଂ, ସୋଽହମ୍, ହଂସ, ଓଁ—ଏ ସବୁଗୁଡ଼ିକ ଅନନ୍ତ ଅର୍ଥାତ୍ ନାଦରୁ ଉତ୍ପନ୍ନ ।

ଶିଷ୍ୟ—ଅନନ୍ତ ଶବ୍ଦର ଅର୍ଥ ନାଦ ?

ଗୁରୁ—ହଁ, ଯେଉଁ ଶକ୍ତିଦ୍ୱାରା ଗ୍ରହ ତାରକା ଆଦି ବିଧୃତ ରହିଅଛି, ତାହାର ନାମ ଶେଷନାଗ ବା ଅନନ୍ତ । "ନାଗ" ବନ୍ଧନରଜ୍ଜୁର ରୂପକ ମାତ୍ର—ଯେପରି ନାଗପାଶ ।

ନମସ୍ତେ ସର୍ପେଭ୍ୟଃ ଯେ କେ ଚ ପୃଥିବୀ ମନୁ ।
ଯେ ଗୃନ୍ତରୀକ୍ଷେ ଯେ ଦିବି ॥

ଏହିସବୁ ଶ୍ରୁତିରେ ମଧ୍ୟ ସର୍ପ କଣ ତାହା ଜଣାଯାଏ । ଶେଷନାଗ ସେହିପରି ବ୍ରହ୍ମର ଧାରଣଶକ୍ତି ବୋଲି କଥିତ ହୋଇଅଛି ।

ମଣିଭ୍ରାଜତ୍‌ଫଣାସହସ୍ରବିଧୃତବିଶ୍ୱମ୍ଭରମଣ୍ଡଳାନନ୍ତାୟ ନାଗରାଜାୟ ନମଃ ।

ଅନନ୍ତଙ୍କର ଏହି ନମସ୍କାରରୁ ତାଙ୍କର ସ୍ୱରୂପ ଉପଲବ୍ଧି କରି ହେଉଛି । ବସ୍ତୁତଃ ତାଙ୍କର ସହସ୍ର ଫଣାରେ ଯେଉଁ ଭ୍ରାଜତ୍ ମଣିଗୁଡ଼ିକ ରହିଅଛି, ତାହାହିଁ ପୂର୍ବୋକ୍ତ ସ୍ୱୟଂପ୍ରଭ ଜ୍ୟୋତିଷ୍କକୁ ନେଇ—ଯାହାଦ୍ୱାରା ଏହି ଆକାଶ ନିରୁଦ୍ଧ ।

ଅତଏବ ସତ୍ୟଲୋକ ଆଶ୍ରୟ କରି ଯେଉଁ ଶକ୍ତି ଏହି ସବୁ ଧାରଣ କରିଅଛି, ତାହାହିଁ ଅନନ୍ତ । ଯେଉଁ ପ୍ରାଚୀନ ମନୀଷୀ ପ୍ରତ୍ୟକ୍ଷ କରି ଏହି ଉପଦେଶ କରିଥିଲେ, ତାଙ୍କର ସର୍ପରୂପକ ଗ୍ରହଣ କରିବାର ଆହୁରି କାରଣ ଅଛି । ସର୍ପର ଗତି ଯେପରି ତରଙ୍ଗାୟିତ, ସେହିପରି ସମସ୍ତ କିମ୍ବା ତରଙ୍ଗାୟିତ ଅର୍ଥାତ୍ ସ୍ଫୁରଣ-ସଂହାରାତ୍ମକ ବା ଉଚ୍ଚାବଚ । ସତ୍ୟଲୋକରୁ ତରଙ୍ଗାୟିତ କିମ୍ବା ନିୟତ ପ୍ରବାହିତ

ହୋଇ ସର୍ବଲୋକ ଧାରଣ କରି ରଖିଅଛି, ସେଇଥିପାଇଁ ସର୍ପ ହିଁ ତାର ସୁନ୍ଦର ରୂପକ ।

ଅଭିମାନର ମଧ୍ୟ ଦୁଇପ୍ରକାର ନିତ୍ୟପ୍ରବାହ କଥା କୁହାଯାଇ-ଅଛି, ଗୋଟିଏ ଅନ୍ତଃସ୍ରୋତ ଆଉ ଗୋଟିଏ ବହିଃସ୍ରୋତ । ଶେଷ-ନାଗର ଅପର ନାମ ସଙ୍କର୍ଷଣ । ସଙ୍କର୍ଷଣ ଦ୍ରଷ୍ଟା ଓ ଦୃଶ୍ୟର ଆଭିମାନିକ ଆକର୍ଷଣ ବୋଲି ଲକ୍ଷିତ ହୁଅନ୍ତି ।

ସାଂଖ୍ୟତତ୍ତ୍ୱାଲୋକ ୩୫୦ । ୩୫୧ ପୃଷ୍ଠା

ଶିଷ୍ୟ—ଏଥିରେ ଅନନ୍ତ ଶବ୍ଦର ଅର୍ଥ ଯେ ନାଦ ତାହା ସୁସ୍ପଷ୍ଟ କୁହାଯାଇନାହିଁ ।

ଗୁରୁ—ପୂର୍ବରେ ସାଂଖ୍ୟତତ୍ତ୍ୱାଲୋକରେ ଶବ୍ଦରୁ ଜଗତର ସୃଷ୍ଟି ବୋଲି କୁହାଯାଇଅଛି । ଶବ୍ଦରୁ ସୃଷ୍ଟି ହୋଇଅଛି, ଶବ୍ଦ ହିଁ ଧାରଣ କରିଅଛନ୍ତି—ଏହା ବିଶେଷ ଭାବରେ ପୂର୍ବରୁ କହିଅଛି ।

ସଲିଳ ଏକୋଦ୍ରଷ୍ଟାଽଦ୍ୱୈତୋ ଭବତି ।
ବହ୍ୟୀ ହ ପ୍ରାଜାପତ୍ୟା ଦେବାଶ୍ଚାସୁରାଶ୍ଚ । (ଶ୍ରୁତି)
ଏକାର୍ଣ୍ଣବଂ ବିଶୁଦ୍ଧା ଶକ୍ତି ।

ସଲିଳ ଏକାର୍ଣ୍ଣବ ସମସ୍ତ ହିଁ ପର ପ୍ରଣବ ଓଙ୍କାର—ଏବଂ ଅନନ୍ତ—ଶବ୍ଦବ୍ରହ୍ମ ଅପର ପ୍ରଣବ । ସଙ୍କର୍ଷଣଙ୍କର କଥା ପରେ ବିଶେଷ ଭାବରେ ଆଲୋଚନା କରିବି ।

ଶିଷ୍ୟ—ଶବ୍ଦ ଅନନ୍ତ ଏ କଥା ଶ୍ରୀଭଗବାନ୍ ଶଙ୍କରାଚାର୍ଯ୍ୟ କହିଛନ୍ତି, ତାହା ସ୍ମରଣ ଅଛି ।

ଗୁରୁ—ହଂସ କଥା ଶ୍ରବଣ କର—

ଶିବପୁରାଣରେ କଥିତ ହୋଇଅଛି ଯେ ବ୍ରହ୍ମା ବିଷ୍ଣୁ, ଉଭୟଙ୍କ ମଧ୍ୟରେ ବିବାଦ ହୋଇଥିଲା, ଦୁହେଁଯାକ 'ମୁଁ ସୃଷ୍ଟି-ସଂହାର-କର୍ତ୍ତା' ଏ କଥା କହିଲେ । ତହୁଁ ଯୁଦ୍ଧ ହେଲା । ଏହି

ସମୟରେ ଦୁଇଜଣଙ୍କ ମଧ୍ୟରେ ଏକ ଜ୍ୟୋତିର୍ମୟ ଲିଙ୍ଗ ଆବିର୍ଭୂତ ହେଲେ । ଦୁଇଜଣଯାକ ତାହା କଣ ନିର୍ଣ୍ଣୟ କରି ନ ପାରି ବ୍ରହ୍ମା ହଂସ ରୂପରେ ଊର୍ଦ୍ଧ୍ୱକୁ ଉଡ଼ିଗଲେ ଏବଂ ବିଷ୍ଣୁ, ଶ୍ୱେତ ବରାହ ରୂପରେ ନିମ୍ନଭାଗକୁ ଗମନ କରି ଶହ ସହସ୍ର ବର୍ଷ ଅଧୋଭାଗରେ ଅବତରଣ କରି ମଧ୍ୟ ଲିଙ୍ଗର ମୂଳ ପ୍ରାପ୍ତ ହେଲେ ନାହିଁ । ବ୍ରହ୍ମା ମଧ୍ୟ ତାଙ୍କର ସୀମା ନିର୍ଣ୍ଣୟରେ ଅକ୍ଷମ ହେଲେ ।

ବ୍ରହ୍ମୋବାଚ

ହଂସସ୍ତ୍ୱାହଂ ତଦା ଜାତଃ ସୁନ୍ଦରଃ ପକ୍ଷସଂଯୁତଃ ।
ତଦାଭୃତି ମାମାହୁର୍ହଂସ-ହଂସ-ବିରାଡ଼ିତି ॥
ହଂସ-ହଂସେତି ଯୋ ବ୍ରୂୟାତ୍ ସୋହଂ ସୋହଂ ଭବିଷ୍ୟତି ॥୭୭ ॥

ଶିବପୁରାଣ ୨ୟ ଅଧ୍ୟାୟ

ମୁଁ ମଧ୍ୟ ପକ୍ଷସଂଯୁକ୍ତ ଦିବ୍ୟ ହଂସରୂପ ଧାରଣ କଲି, ତଦବଧି ଲୋକମାନେ ମତେ ବିରାଟ୍ ହଂସ ହଂସ କହିଥାନ୍ତି । ଯେଉଁ ବ୍ୟକ୍ତି ହଂସ ହଂସ ବୋଲି ଜପକରେ, ସେ ଅବଶ୍ୟ ମୋ ପରି ହେବ ।

ଜଗତର ପ୍ରତି ଅଣୁ ପରମାଣୁଠାରୁ ଗଗନସ୍ପର୍ଶୀ ହିମାଳୟ ଓ ସ୍ଥାବର ଜଙ୍ଗମାତ୍ମକ ଯାହାକିଛି ପଦାର୍ଥ ନିଚୟ, ଏହି ପ୍ରକୃତି-ପୁରୁଷାତ୍ମକ ହଂସଦ୍ୱାରା ନିର୍ମିତ ହୋଇଅଛି ଏବଂ ହଂସ ହଂସ ଏହି ସ୍ପନ୍ଦନରେ ଅବସ୍ଥିତ । ଭିତରେ ବାହାରେ ହଂସ ହଂସ ସ୍ପନ୍ଦନ ଚାଲିଅଛି । ଯେଉଁ ମୁହୂର୍ତ୍ତରେ ଏ ସ୍ପନ୍ଦନ ନିବୃତ୍ତ ହୋଇଯିବ ତତ୍‌କ୍ଷଣାତ୍ ତାହାର ଆଉ ଚିହ୍ନ ରହିବ ନାହିଁ ।

ହଂସୌ ତହ ସମୁଦ୍ଭୂତୌ ପୁଂସ୍ତ୍ରିୟୌ ତହ ସମ୍ମତୌ ।
ହଂ ତହ ପୁରୁଷଃ ପ୍ରୋକ୍ତଃ ସକାରଃ ପ୍ରକୃତିଃ ସ୍ମୃତା ।
ତାବିମୌ ସକଳଂ ବିଶ୍ୱଂ ବ୍ୟାପ୍ତୌ ତ କୃତକୋଽନଳମ୍ ॥

ବିଶ୍ୱସାର

ସେହି ପର ପ୍ରଣବରୁ ପୁରୁଷ ପ୍ରକୃତି ଉତ୍ପନ୍ନ ହେଲେ । "ହଂ" ପୁରୁଷ, "ସ" କାର ପ୍ରକୃତି ବୋଲି କଥିତା ହୁଅନ୍ତି । ଭସ୍ମ ଯେପରି ଅଗ୍ନିରେ ବ୍ୟାପ୍ତ ହୋଇଅଛି, ଏହି ହଂସ ସେହିପରି ବିଶ୍ୱକୁ ଆଚ୍ଛନ୍ନ କରି ଅବସ୍ଥିତ ।

ଶିଷ୍ୟ—ବିଷ୍ଣୁ ବରାହ ରୂପ ଧାରଣ କଲେ, ବରାହ କଣ ?

ଗୁରୁ—ବର+ଆ+ହନ୍ ଖେ ଡ଼ । ବର ଶ୍ରେଷ୍ଠ, ଆ ଅନନ୍ତ, ହନ୍ ଏଠାରେ ଗତି ଅର୍ଥରେ ପ୍ରୟୋଗ ହୋଇଅଛି । ଶ୍ରେଷ୍ଠ ଅନନ୍ତ ଗତି ହେଲେ ସୋହଂ ।

ଶିଷ୍ୟ—ଜ୍ୟୋତିର୍ମୟ ଲିଙ୍ଗଟି କଣ ?

ଗୁରୁ—ଓଁକାର—ଏହି ହଂସହିଁ ସ୍ଥୂଳ ପଦାର୍ଥସମୂହ କରିଛନ୍ତି ଏବଂ ସୂକ୍ଷ୍ମ ରୂପରେ ଏହି ହଂସହିଁ ସମସ୍ତ ଧାରଣ କରିଅଛନ୍ତି ।

ଶିଷ୍ୟ—ଶ୍ରୁତିସବୁ ଏ ହଂସ କଥା କଣ କହିଛନ୍ତି ?

ଗୁରୁ—ଅନ୍ୟ ସବୁ ଶ୍ରୁତି କଥା ପରେ କହିବି, କଠ ଶ୍ରୁତିର ଅନ୍ତର୍ଗତ "ହଂସବତୀ ଋକ୍" ନାମକ ପ୍ରସିଦ୍ଧ ମନ୍ତ୍ର କଥା ଶ୍ରବଣ କର ।

ହଂସଃ ଶୁଚିଷଦ୍ ବସୁରନ୍ତରିକ୍ଷସଦ୍
ହୋତା ବେଦିଷଦତିଥିର୍ଦୁରୋଣସତ୍
ନୃଷଦ୍ୱରସଦୃତସଦ୍‌ବ୍ୟୋମସଦ୍
ଅବ୍‌ଜା ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍ ॥ ୨ । ୨ । ୨
(ଋଗ୍‌ବେଦ ୪ । ୪୦ । ୫)

ସେହି ହଂସ ସ୍ୱର୍ଗରେ ଅବସ୍ଥାନ କରନ୍ତି ବୋଲି "ଶୁଚିଷତ୍", ସର୍ବଲୋକକୁ ବାସ କରାନ୍ତି ବୋଲି "ବସୁ", ବାୟୁରୂପରେ ଅନ୍ତରିକ୍ଷରେ ବିଚରଣ କରନ୍ତି ବୋଲି "ଅନ୍ତରିକ୍ଷସତ୍", ସ୍ୱୟଂ ଅଗ୍ନି-ସ୍ୱରୂପ ବୋଲି "ହୋତା" "ଅଗ୍ନିର୍ବୈ ହୋତା", ଅଥବା ବିଷୟସମୂହ ଭୋଗ କରନ୍ତି ସେଥିପାଇଁ "ହୋତା", ପୃଥ୍ୱୀରୂପ ବେଦିରେ ବାସ କରନ୍ତି ସେଥିପାଇଁ "ବେଦିଷତ୍", ସେ ସୋମରୂପରେ କଳସୀରେ

ଅବସ୍ଥିତ, ସେ ମନୁଷ୍ୟରେ ସ୍ଥିତ, ସେ ସମସ୍ତ ଶ୍ରେଷ୍ଠ ପଦାର୍ଥରେ ଅବସ୍ଥାନ କରନ୍ତି, ସେ ଜଳରେ ଶଂଖ-ମତ୍ସ୍ୟ ଆଦି ରୂପରେ, ପୃଥିବୀରେ ବ୍ରୀହି-ଯବ ଆଦି ରୂପରେ, ପଞ୍ଚାଙ୍ଗରୂପରେ, ପର୍ବତରୁ ନଦୀ ରୂପରେ ସମୁତ୍ପନ୍ନ ହୁଅନ୍ତି, ସ୍ୱୟଂ ସତ୍ୟସ୍ୱରୂପ ଏବଂ ମହାନ୍ ଏହା ହିଁ ନଚିକେତାର ଜିଜ୍ଞାସିତ ଆତ୍ମା ।

ଶ୍ୱେତାଶ୍ୱତର-ଶ୍ରୁତିରେ କଥିତ ଅଛି—

ସର୍ବାଜୀବେ ସର୍ବସଂସ୍ଥେ ବୃହନ୍ତେ
ଅସ୍ମିନ୍ ହଂସୋ ଭ୍ରାମ୍ୟତେ ବ୍ରହ୍ମଚକ୍ରେ ।
ପୃଥଗାତ୍ମାନଂ ପ୍ରେରିତାରଞ୍ଚ ମତ୍ୱା
ଜୁଷ୍ଟସ୍ତତସ୍ତେନାମୃତତ୍ୱମେତି ॥ ୧ । ୬

ହଂସ ଜୀବାତ୍ମା ଆପଣାକୁ ପରମାତ୍ମାଙ୍କଠାରୁ ପୃଥକ୍ ମନେ କରି ସକଳ ଜୀବଙ୍କର ଉତ୍ପତ୍ତି ଏବଂ ବିଲୟ ସ୍ଥାନ ଏହିପରି ବୃହତ୍ ବ୍ରହ୍ମଚକ୍ରରେ ସଂସାରରେ ଅଥବା ସ୍ଥୂଳଦେହରେ ପୁନଃ ପୁନଃ ଭ୍ରମଣ କରୁଥାଏ, ପୁଣି ସେହି ହଂସ ପରମେଶ୍ୱରଙ୍କ ସହିତ ଅଭିନ୍ନ ଭାବରେ ସେବିତ ହୋଇ ଅମୃତତ୍ୱ ଲାଭ କରିଥାଏ ।

ଶିଷ୍ୟ—ଏଠାରେ ଜୀବାତ୍ମାକୁ ହଂସ ବୋଲି କୁହାଯାଇ-ଅଛି ।

ଗୁରୁ—ହଁ ।

ନବଦ୍ୱାରେ ପୁରେ ଦେହୀ ହଂସୋ ଲେଳାୟତେ ବହିଃ ।
ବଶୀ ସର୍ବସ୍ୟ ଲୋକସ୍ୟ ସ୍ଥାବରସ୍ୟ ଚରସ୍ୟ ଚ ॥ ୩ । ୧୮

ସ୍ଥାବର ଓ ଜଙ୍ଗମ ସମସ୍ତ ଲୋକର ନିୟନ୍ତା ହଂସଦେହୀ ଜୀବାତ୍ମା ନବଦ୍ୱାରଯୁକ୍ତ ଶରୀରରେ ଅବସ୍ଥିତ ହୋଇ ବାରମ୍ବାର ବାହାରକୁ ଯାଏ ।

ଶିଷ୍ୟ—ସକାରେଣ ବହିର୍ଯାତି ହଂକାରେଣ ବିଶେତ୍ ପୁନଃ —ଏଇଆ ତ ?

ଗୁରୁ—ହଁ—ଆହୁରି ଶୁଣ ।

ଏକୋ ହଂସୋ ଭୁବନସ୍ୟାସ୍ୟ ମଧ୍ୟେ
ସ ଏବାଗ୍ନିଃ ସଲିଲେ ସନ୍ନିବିଷ୍ଟଃ ।
ତମେବ ବିଦିତ୍ୱାଽତି ମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ॥ ୬ । ୧୫

ଏହି ଜଗତ ମଧ୍ୟରେ ଏକମାତ୍ର ହଂସ ଓଙ୍କାର ବିରାଜମାନ । ସେ ଅଗ୍ନି ଅର୍ଥାତ୍ ଅକାର, ସେହି ଜଳରେ ଅଛନ୍ତି । ଜୀବ ତାହାଙ୍କୁ ଜାଣିଲେ ମୃତ୍ୟୁକୁ ଅତିକ୍ରମ କରେ । ମୁକ୍ତିଲାଭର ଆଉ ଦ୍ୱିତୀୟ ପଥ ନାହିଁ । ଏଠାରେ ସଲିଳ ଏହି ପଦଦ୍ୱାରା ସ୍ଥାବର-ଜଙ୍ଗମାତ୍ମକ ସମସ୍ତ ପଦାର୍ଥ ଉପଲକ୍ଷିତ ହୋଇଅଛି । ସେ ସର୍ବତ୍ର ଅବସ୍ଥିତ ।

ହଂସେତି ପ୍ରକୃତିର୍ଜ୍ଞେୟା ଓଙ୍କାରଃ ପ୍ରକୃତେର୍ଗୁଣଃ ।
ସକାରେଣ ବହିର୍ଯାତି ହଂକାରେଣ ବିଶେତ୍ ପୁନଃ ।
ହଂସେତି ପରମୋ ମନ୍ତ୍ରୋ ଜୀବୋ ଜପତି ସର୍ବଦା ॥

ନିରୁତ୍ତରତନ୍ତ୍ର ୪ ପଟଳ

ଅଜପା ଦ୍ୱିବିଧା ଦେବି ବ୍ୟକ୍ତା-ଗୁପ୍ତାକ୍ରମେଣ ଚ ।
ବ୍ୟକ୍ତା ଚ ଦ୍ୱିବିଧା ପ୍ରୋକ୍ତା ଶବ୍ଦଜ୍ୟୋତିଃସ୍ୱରୂପିଣୀ ॥
ଜ୍ୟୋତିରୂପା ଚ ସା ଦେବୀ ହୃଦସ୍ଥାନେ ପ୍ରତିଷ୍ଠିତା ।
ଠକାରରୂପା ଗୁପ୍ତା ଚ ଶିବଶକ୍ତିଃ ପ୍ରକୀର୍ତ୍ତିତା ॥

ହଂସ ପ୍ରକୃତି, ଓଙ୍କାର ପ୍ରକୃତିର ଗୁଣ, 'ସ'କାର ଦ୍ୱାରା ପ୍ରାଣ ବହିର୍ଦ୍ଦେଶକୁ ଗମନ କରେ ଏବଂ "ହଂ"କାର ଦ୍ୱାରା ପୁନର୍ବାର ପ୍ରବିଷ୍ଟ ହୋଇଥାଏ, ଜୀବ ହଂସ ଏହି ପରମ ମନ୍ତ୍ର ସତତ ଜପ କରେ ।

ହେ ଦେବ, ବ୍ୟକ୍ତା ଓ ଗୁପ୍ତାହମେ ଅଜପା ଦ୍ୱିପ୍ରକାର । ବ୍ୟକ୍ତା ଶବ୍ଦ ଓ ଜ୍ୟୋତିରୂପ ଦ୍ୱିବିଧା । ଜ୍ୟୋତିରୂପା ସେହି ଦେହର ହୃଦୟରେ ଅବସ୍ଥିତା ଓ ଠକାରରୂପା ଗୁପ୍ତା ମହାଧ୍ୱନି ଶିବଶକ୍ତି ବୋଲି କଥିତ ହୁଅନ୍ତି ।

"ଠ"କାରର ଅର୍ଥ—ଶିବ, ମହାଦେବ, ମହାଧ୍ୱନି, ମନ୍ଦ୍ର-ମଣ୍ଡଳ, ଶୂନ୍ୟସ୍ଥାନ, ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ । ନାଦବିନ୍ଦୁ-ଶ୍ରୁତି-କଥିତ ପରମହଂସ କଥା ଶ୍ରବଣ କର ।

ଓଁ ଅକାରୋ ଦକ୍ଷିଣଃ ପକ୍ଷ ଉକାରସ୍ତୂତ୍ତରଃ ସ୍ମୃତଃ ।
ମକାରଂ ପୁଚ୍ଛମିତ୍ୟାହୁରର୍ଦ୍ଧମାତ୍ରା ତୁ ମସ୍ତକମ୍ ॥ ୧
ପାଦାଦ୍ୟକଂ ଗୁଣାସ୍ତସ୍ୟ ଶରୀରଂ ତତ୍ତ୍ୱମୁଚ୍ୟତେ ।
ଧର୍ମୋଽସ୍ୟ ଦକ୍ଷିଣଂ ଚକ୍ଷୁରଧର୍ମୋଽଥ ପରଃ ସ୍ମୃତଃ ॥ ୨

ଓଁ—ଅକାର ଦକ୍ଷିଣ ପକ୍ଷ, ଉକାର ବାମପକ୍ଷ, ମକାରପୁଚ୍ଛ ଓ ଅର୍ଦ୍ଧମାତ୍ରା ମସ୍ତକ, ଗୁଣସମୂହ ତାଙ୍କର ଚରଣାଦି, ତତ୍ତ୍ୱ ଶରୀର, ଧର୍ମ ଏହାର ଦକ୍ଷିଣ ଚକ୍ଷୁ, ଅଧର୍ମ ବାମଚକ୍ଷୁ । ତାଙ୍କର ପଦଦ୍ୱୟରେ ଭୂର୍ଲୋକ, ଜାନୁରେ ଭୁବର୍ଲୋକ, କଟିଦେଶରେ ସ୍ୱର୍ଲୋକ, ନାଭି-ଦେଶରେ ମହର୍ଲୋକ, ହୃଦୟରେ ଜନଲୋକ, କଣ୍ଠରେ ତପୋଲୋକ, ଭ୍ରୂ ଓ ଲଲାଟ ମଧ୍ୟରେ ସତ୍ୟଲୋକ ଅବସ୍ଥିତ । ଏ ସହସ୍ରବର୍ଣ୍ଣ ମନ୍ତ୍ର ପ୍ରଦର୍ଶନ କରିଅଛନ୍ତି । ହଂସଯୋଗବଚକ୍ଷଣ ଅର୍ଥାତ୍ ହଂସମନ୍ତ୍ର ଅଭ୍ୟାସଦ୍ୱାରା ଯେଉଁମାନେ ସ୍ଥୂଳ ଓ ସୂକ୍ଷ୍ମଦେହର ଅଜ୍ଞାତ ପ୍ରଣବନାଦ-ଲାଭରେ ସମର୍ଥ ହୋଇଅଛନ୍ତି, ସେମାନେ ଏଥିରେ ଉତ୍ତମରୂପେ ଆରୋହଣ କରିଛନ୍ତି ।

ଏହାଙ୍କର ଘୋଷିଣୀ, ଵଦ୍ୟା, ପତଙ୍ଗିନୀ, ବାୟୁବେଗିନୀ, ନାମଧେୟା, ଐନ୍ଦ୍ରୀ, ବୈଷ୍ଣବୀ, ଶାଙ୍କରୀ, ମହତୀ, ଧୃତି, ନାରୀ, ପର ମାତ୍ରା ବ୍ରାହ୍ମୀ—ଏହି ଦ୍ୱାଦଶଟି ମାତ୍ରା ।

ସାଧକର ପ୍ରାଣ ପ୍ରଥମ ମାତ୍ରା ସନ୍ନିତ ବହିର୍ଗତ ହେଲେ ପରେ ସେ ଭାରତର ସାର୍ବଭୌମ ରାଜା ହୁଅନ୍ତି । ଏହିପରି ଦ୍ୱିତୀୟରେ ମାହାତ୍ମ୍ୟବାନ୍ ଯକ୍ଷ, ତୃତୀୟରେ ବିଦ୍ୟାଧର, ଚତୁର୍ଥୀରେ ଗନ୍ଧର୍ବ, ପଞ୍ଚମୀ ମାତ୍ରାରେ ସୋମଲୋକରେ ଦେବଗଣଙ୍କ ସାହାଯ୍ୟରେ ପୂଜା-ଲାଭ, ଷଷ୍ଠୀରେ ଇନ୍ଦ୍ରସାଯୁଜ୍ୟ, ସପ୍ତମୀରେ ବୈଷ୍ଣବପଦ, ଅଷ୍ଟମୀରେ ରୁଦ୍ରସାମୀପ୍ୟଲାଭ, ନବମୀରେ ମହର୍ଲୋକ, ଦଶମୀରେ ଜନଲୋକ, ଏକାଦଶୀରେ ତପୋଲୋକ ଏବଂ ଦ୍ୱାଦଶୀମାତ୍ରାରେ ଦେହ ତ୍ୟାଗ କଲେ ଶାଶ୍ୱତ ବ୍ରହ୍ମଲାଭ ହୁଏ ।

ପରମହଂସ କଥା ଶୁଣିଲ ତ ?

ଶିଷ୍ୟ—ଧନ୍ୟ ହେଲି ପ୍ରଭୁ । ଏହି ମାତ୍ରାର ଧ୍ୟାନ ସମୟରେ ନାଦ ଥାନ୍ତି ?

ଗୁରୁ—ନିଶ୍ଚୟ ଅକାର ଓ ଉକାରରେ ସାମାନ୍ୟ ଭାବରେ, ତୃତୀୟ ମାତ୍ରା ମକାରଠାରୁ ବିଶେଷ ଭାବରେ ନାଦ ଆରମ୍ଭ ହୁଏ ।

ତା ପରେ ଧ୍ୟାନବିନ୍ଦୁ-ଶ୍ରୁତିରେ କଥିତ ହଂସ କଥା ଶୁଣ ।

ମେଢ୍ରର ଊର୍ଦ୍ଧ୍ୱରେ ନାଭି ତଳେ ପକ୍ଷୀ ଅଣ୍ଡା ପରି ଗୋଟିଏ କନ୍ଦ ଅଛି । ତାହା ଦେହରୁ ୭୨୦୦୦ ହଜାର ନାଡ଼ି ଉତ୍ପନ୍ନା ହୋଇଅଛି, ତାହା ମଧ୍ୟରେ ଇଡ଼ା, ପିଙ୍ଗଳା, ସୁଷୁମ୍ନା, ଗାନ୍ଧାରୀ, ହସ୍ତିଜିହ୍ୱା, ପୂଷା, ଯଶସ୍ୱିନୀ, ଅଲମ୍ବୁଷା, କୁହୂ, ଶଙ୍ଖିନୀ—ଏହି ଦଶଟି ପ୍ରଧାନା ପ୍ରାଣବାହିନୀ ନାଡ଼ି । ଏମାନଙ୍କ ମଧ୍ୟରେ ସୋମ ସୂର୍ଯ୍ୟ ଅଗ୍ନିରୂପିଣୀ ମେରୁର ବାମ ଦକ୍ଷିଣ ମଧ୍ୟରେ ଅବସ୍ଥିତା ଇଡ଼ା ପିଙ୍ଗଳା ସୁଷୁମ୍ନାନାମ୍ନୀ ନାଡ଼ିତ୍ରୟ ପ୍ରାଣମାର୍ଗ ବୋଲି କଥିତ ହୁଏ । ପ୍ରାଣ ଅପାନ ସମାନ ଉଦାନ ବ୍ୟାନ ଅନ୍ତର୍ବାୟୁ ଏବଂ ନାଗ କୂର୍ମ କୃକର ଦେବଦତ୍ତ ଧନଞ୍ଜୟ ବହିଃସ୍ଥ ବାୟୁପଞ୍ଚକ । ଏହି ବାୟୁଗୁଡ଼ି

ହଜାର ନାଡ଼ିରେ ଜ୍ୟୋତିର୍ମୟ ନାଦ ଅବସ୍ଥିତ—ପ୍ରାଣ ଅପାନ ବଶରେ ବାମ ଦକ୍ଷିଣ ମାର୍ଗଦ୍ୱାରା ଊର୍ଦ୍ଧ୍ୱକୁ ଏବଂ ଅଧୋଭାଗକୁ ଧାବିତ ହେଉଛନ୍ତି—ଚଞ୍ଚଳତ୍ୱ ହେତୁ ଦୃଷ୍ଟିଗୋଚର ହେଉନାହିଁ । ଭୁଜଦଣ୍ଡ ଦ୍ୱାରା ପ୍ରେରିତ କନ୍ଦୁକ ଯେପରି ଊର୍ଦ୍ଧ୍ୱକୁ ଗମିତ ହୁଏ ତଦ୍ରୂପ ପ୍ରାଣ ଓ ଅପାନଦ୍ୱାରା ସମ୍ୟକ୍ ପ୍ରେରିତ ଜୀବ ବିଶ୍ରାମ ଲାଭରେ ସମର୍ଥ ହୁଏ ନାହିଁ । ପ୍ରାଣ ସେହି ଜ୍ୟୋତିର୍ମୟ ନାଦରୂପ ଜୀବବିନ୍ଦୁକୁ ଅପାନରୁ ଆକର୍ଷଣ କରେ, ପୁଣି ଅପାନ ମଧ୍ୟ ପ୍ରାଣଠାରୁ ତାହାକୁ ଆକର୍ଷଣ କରିଥାଏ । ରଜ୍ଜୁବଦ୍ଧ ପକ୍ଷୀଦ୍ୱୟଙ୍କ ପରି ଯେ ଏହା ଜାଣନ୍ତି ସେହି ଯୋଗବିତ୍ ।

ହକାରେଣ ବହିର୍ଯାତି ସକାରେଣ ବିଶେତ୍ ପୁନଃ ॥ ୬୨ ।
ହଂସ-ହଂସେତ୍ୟମୁଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ।
ଶତାନି ଷଟ୍ ଦିବାରାତ୍ରଂ ସହସ୍ରାଣ୍ୟେକ ବିଂଶତିଃ ॥ ୬୩ ॥
ଏତତ୍ ସଂଖ୍ୟାନ୍ୱିତଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ।
ଅଜପା ନାମ ଗାୟତ୍ରୀ ଯୋଗିନାଂ ମୋକ୍ଷଦା ସଦା ॥ ୬୪ ॥
ଅସ୍ୟାଃ ସଂକଳ୍ପମାତ୍ରେଣ ନରଃ ପାପୈଃ ପ୍ରମୁଚ୍ୟତେ ।
ଅନୟା ସଦୃଶୀ ବିଦ୍ୟା ଅନୟା ସଦୃଶୋ ଜପଃ ॥ ୬୫ ॥
ଅନୟା ସଦୃଶଂ ପୁଣ୍ୟଂ ନ ଭୂତଂ ନ ଭବିଷ୍ୟତି ॥

ହକାରଦ୍ୱାରା ବହିର୍ଗତ ହୁଏ, ପୁନର୍ବାର ସକାରଦ୍ୱାରା ଦେହ ମଧ୍ୟରେ ପ୍ରବିଷ୍ଟ ହୋଇଥାଏ । ଜୀବ ହଂସ ହଂସ ଏହି ମନ୍ତ୍ର ଦିବାରାତ୍ରରେ ୨୧୬୦୦ ଏକୋଇଶ ହଜାର ଛଅଶତ ଥର ସବୁ ସମୟରେ ଜପକରେ । ଏହା ଯୋଗିଗଣଙ୍କର ସଦା ମୋକ୍ଷଦାୟିନୀ, ଅଜପାନାମକ ଗାୟତ୍ରୀ, ଏହାର ସଂକଳ୍ପ ମାତ୍ରକେ ନର ପାପରୁ ମୁକ୍ତ ହୋଇଥାଏ । ଏହା ସଦୃଶ ବିଦ୍ୟା, ଏହା ସମାନ ଜପ, ଏହା ତୁଲ୍ୟ ପବିତ୍ର ହୋଇ ନାହିଁ ବା ହେବ ନାହିଁ ।

ଶିଷ୍ୟ—ହଂସ ମନ୍ତ୍ରର ଅପାର ମହିମା !

ଗୁରୁ—ଯେଉଁମାନେ ହଂସ ମନ୍ତ୍ରରେ ଅବସ୍ଥାନ କରନ୍ତି, ସେମାନେ ସତ୍ୟଯୁଗରେ ଅବସ୍ଥିତ ।

ବ୍ରହ୍ମବିଦ୍ୟ ଶ୍ରୁତି କହିଛନ୍ତି:—

ଅନାହତ ଧ୍ୱନିଯୁକ୍ତଂ ହଂସଂ ଯୋ ବେଦ୍ ହୃଦ୍‌ଗତମ୍ ॥ ୨୦ ॥
ସ୍ୱପ୍ରକାଶ ଚିଦାନନ୍ଦଂ ସ ହଂସ ଇତି ଗୀୟତେ ॥

ଅନାହତ-ଧ୍ୱନିଯୁକ୍ତ ସ୍ୱପ୍ରକାଶ ଚୈତନ୍ୟମୟ ଆନନ୍ଦସ୍ୱରୂପ ହୃଦୟସ୍ଥିତ ହଂସକୁ ଯେ ଅବଗତ ଅଛନ୍ତି, ସେ ହଂସ ବୋଲି କଥିତ ହୁଅନ୍ତି । ରେଚକ ପୂରକ ତ୍ୟାଗ କରି କୁମ୍ଭକରେ ସ୍ଥିତ ସୁବୁଦ୍ଧି ଯୋଗୀ ନାଭିକନ୍ଦରେ ପ୍ରାଣ ଓ ଅପାନକୁ ସମ ଏକୀଭୂତ କରି ସମାହିତ ହୋଇ ସହସ୍ରାରଗଳିତ ସୁଧାପାନପୂର୍ବକ:—

ଦୀପାକାରଂ ମହାଦେବଂ ଜ୍ୱଳନ୍ତଂ ନାଭିମଧ୍ୟମେ ।
ଅଭିଷିଚ୍ୟାମୃତେନୈବ ହଂସ-ହଂସେତି ଯୋ ଜପେତ୍ ॥ ୨୩ ॥

ନାଭି ମଧ୍ୟରେ ଦୀପଶିଖାତୁଲ୍ୟ ଦୀପ୍ତିଯୁକ୍ତ ମହାଦେବଙ୍କୁ ସହସ୍ରାର ଗଳିତ ସୁଧାରେ ଅଭିଷିକ୍ତ କରି ଯେ ସାଦରେ "ହଂସ ହଂସ" ଜପ କରନ୍ତି, ତାଙ୍କର ଜଗତରେ ଜରା ମରଣ ରୋଗ ଆଦି ହୁଏ ନାହିଁ ; ଅଣିମାଦି ବିଭୂତିର ସିଦ୍ଧିପାଇଁ ପ୍ରତିଦିନ ଏହିପରି କରିବ ।

ଈଶ୍ୱରତ୍ୱମବାପ୍ନୋତି ସଦାଭ୍ୟାସରତଃ ପୁମାନ୍ ।

ସଦା ଅଭ୍ୟାସପରାୟଣ ଯୋଗୀ ଈଶ୍ୱରତ୍ୱ ପ୍ରାପ୍ତ ହୁଅନ୍ତି ।

ହଂସବିଦ୍ୟା ଛଡ଼ା ଜଗତରେ ଆଉ ଅନ୍ୟ ନିତ୍ୟତ୍ୱ ସାଧନ ନାହିଁ । ଯେ ଏହି ହଂସାଖ୍ୟ ମହାବିଦ୍ୟା ଦାନ କରନ୍ତି, ପରମ ପ୍ରଜ୍ଞା ସହିତ ତାଙ୍କର ଦାସତ୍ୱ କରିବ, ଶୁଭ ଅଶୁଭ ଅଥବା ଅନ୍ୟ ଯାହାକିଛି କହିବେ, ଶିଷ୍ୟ ସନ୍ତୁଷ୍ଟ ଚିତ୍ତରେ ଅବିଚାରରେ ତାହା କରିବ ।

ହଂସ-ହଂସେତି ଯୋ ବ୍ରୂଯ୍ୟାଦ୍ଧଂସୋ ବ୍ରହ୍ମା ହରିଃ ଶିବଃ ।
ଗୁରୁ ବକ୍ତ୍ରାତ୍ତୁ ଲଭ୍ୟେତ ପ୍ରତ୍ୟକ୍ଷଂ ସର୍ବତୋମୁଖମ୍ ॥ ୩୪ ॥

ହଂସ ହଂସ ଯେ କହନ୍ତି, ହଂସ ବ୍ରହ୍ମା, ହଂସ ହରି ଓ ଶିବ ଗୁରୁ ମୁଖରେ ପ୍ରତ୍ୟକ୍ଷ ସର୍ବତୋମୁଖ, ସର୍ବଦିଗଭିମୁଖ ହଂସ ମନ୍ତ୍ର ଲାଭ କରିବାକୁ ହୁଏ ।

ସର୍ବଦା ଯୋଗଧ୍ୟାନ କରି ଜ୍ଞାନରେ ତନ୍ମୟ ରହିବ ।
ଜ୍ଞାନ'ନ୍ତୁ ସ୍ୱରୂପଂ ପରମଂ ହଂସମନ୍ତ୍ରଂ ସମୁଚ୍ଚରେତ୍ ॥ ୫୯ ॥
ପ୍ରାଣିନାଂ ଦେହମଧ୍ୟେ ତୁ ସ୍ଥିତୋ ହଂସଃ ସଦାଚ୍ୟୁତଃ ।
ହଂସ ଏବ ପରଂ ସତ୍ୟଂ ହଂସ ଏବ ତୁ ଶକ୍ତିକମ୍ ॥ ୬୦ ॥
ହଂସ ଏବ ପରଂ ବାକ୍ୟଂ ହଂସ ଏବ ତୁ ବାଦକମ୍ ।
ହଂସ ଏବ ପରୋ ରୁଦ୍ରୋ ହଂସ ଏବ ପରାତ୍ ପରମ୍ ॥ ୬୧ ॥
ସର୍ବଦେବସ୍ୟ ମଧ୍ୟସ୍ଥୋ ହଂସ ଏବ ମହେଶ୍ୱରଃ ॥

ଜ୍ଞାନସ୍ୱରୂପ ପରମ ହଂସମନ୍ତ୍ର ଉଚ୍ଚାରଣ କରିବ । ପ୍ରାଣୀଗଣଙ୍କର ଦେହ ମଧ୍ୟରେ ଅଚ୍ୟୁତ ହଂସ ସର୍ବଦା ଅବସ୍ଥାନ କରୁଅଛନ୍ତି । ହଂସହିଁ ପରମ ସତ୍ୟ ଏବଂ ହଂସହିଁ ଶକ୍ତି, ହଂସହିଁ ପରବାକ୍ୟ ଓ ହଂସହିଁ ବକ୍ତା, ହଂସହିଁ ପରମ ରୁଦ୍ର, ହଂସହିଁ ପରାତ୍ପର—ସର୍ବଦେବଙ୍କର ମଧ୍ୟସ୍ଥିତ ହଂସହିଁ ମହେଶ୍ୱର । ଏହି ଉପନିଷଦରେ ଏହିପରି ଭାବରେ ହଂସର ଗୁଣ କୀର୍ତ୍ତିତ ହୋଇଅଛି । ଅକାର ଆଦି ବର୍ଣ୍ଣଗୁଡ଼ିକ ହଂସଠାରୁ ସମ୍ଭୂତ ଏକଥା ମଧ୍ୟ କହିଛନ୍ତି ।

ସଦା ସମାଧିଂ କୁର୍ବୀତ ହଂସମନ୍ତ୍ର ମନୁସ୍ମରନ୍ ।
ନିର୍ମଳ ସ୍ଫଟିକାକାରଂ ଦିବ୍ୟରୂପମନୁତ୍ତମମ୍ ॥ ୬୫ ॥

ନିର୍ମଳ ସ୍ଫଟିକ ମଣିତୁଲ୍ୟ ଜ୍ୟୋତିର୍ମୟ ସର୍ବୋତ୍କୃଷ୍ଟ ହଂସମନ୍ତ୍ର ପୁନଃ ପୁନଃ ସ୍ମରଣପୂର୍ବକ ସମାଧିସ୍ଥ ହେବ ।

ନିରଞ୍ଜନ ଦେବ ପ୍ରାଣୀଗଣଙ୍କର ଦେହ ଆଶ୍ରୟ କରି ହଂସ ହଂସ ଏହି ବାକ୍ୟ କହିଥାନ୍ତି, ତାହା ପ୍ରାଣ ଅପାନର ଗତି "ଅଜପା" ନାମରେ ଅଭିହିତ ହୁଏ । ପ୍ରତ୍ୟହ ୨୧୦୦୦ ଥର ସବୁ ସମୟରେ ଉଚ୍ଚାରଣ କରୁ କରୁ ଘଠକାଶ ହଂସ ସୋହମ୍ ବୋଲି ଅଭିହିତ ହୁଅନ୍ତି । ୭୮

ଶିଷ୍ୟ--ଜୀବଗଣଙ୍କର ଦେହ ଆଶ୍ରୟ କରି ପରମାତ୍ମା ହଂସ ମନ୍ତ୍ର ଉଚ୍ଚାରଣ କରନ୍ତି ?

ଗୁରୁ—ନିଶ୍ଚୟ । ଶ୍ରୁତିର "ସ୍ପନ୍ଦନ ହିଁ ପ୍ରାଣର ସ୍ପନ୍ଦନ; ଅତଏବ ପ୍ରତି ପ୍ରାଣ ସ୍ପନ୍ଦନରେ ଚୈତନ୍ୟର ହିଁ ରମଣ ବା କ୍ରୀଡ଼ା ଦ୍ୟୋତିତ ହୁଏ ।"

ଶିଷ୍ୟ—ହଂସମନ୍ତ୍ର ଆଶ୍ରୟ କରି ପାରିଲେ ହିଁ ଜୀବ ନିର୍ଭୟ ହୋଇଥାଏ ।

ଗୁରୁ—ହିଁ, ହଂସ ହେଲା ଅନ୍ତର୍ମୁଖି ସ୍ରୋତ, ହଂସ ହିଁ ସୋହଂ ଓଁ ହୋଇ ସୁଷୁମ୍ନାରେ ନାଦରୂପରେ ଲୀଳା କରନ୍ତି । "ସୋହଂ" "ସୋହଂ" ସ୍ୱତ ଉତ୍ଥିତ ଏହି ନାଦ ଯୋଗୀଙ୍କୁ ଅପରିସୀମ ଆନନ୍ଦ ଦାନ କରିଥାନ୍ତି ।

ଯୋଗଚୂଡ଼ାମଣି-ଶ୍ରୁତିରେ ଅଛି:—

ହକାରେଣ ବହିର୍ଯାତି ସକାରେଣ ବିଶେତ୍ ପୁନଃ ॥ ୩୧
ହଂସ-ହଂସେତ୍ୟମୁଂ ମନ୍ତ୍ରଂ ଜୀବୋ ଜପତି ସର୍ବ୍ବଦା ।
ଷଟ୍ ଶତାନି ଦିବାରାତ୍ରୌ ସହସ୍ରାଣ୍ୟେକବିଂଶତିଃ ॥ ୩୨
ଏତତ୍‌ସଂଖ୍ୟାନ୍ୱିତଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ।
ଅଜପା ନାମ ଗାୟତ୍ରୀ ଯୋଗିନାଂ ମୋକ୍ଷଦା ସଦା ॥ ୩୩
ଅସ୍ୟାଃ ସଙ୍କଳ୍ପମାତ୍ରେଣ ସର୍ବ୍ବପାପୈଃ ପ୍ରମୁଚ୍ୟତେ ।
ଅନୟା ସଦୃଶୀ ବିଦ୍ୟା ଅନୟା ସଦୃଶୋ ଜପଃ ॥ ୩୪

ଅନୟା ସଦୃଶଂ ଜ୍ଞାନଂ ନ ଭୂତଂ ନ ଭବିଷ୍ୟତି ।
କୁଣ୍ଡଲିନ୍ୟା ସମୁଦ୍ଭୂତା ଗାୟତ୍ରୀ ପ୍ରାଣଧାରିଣୀ ॥ ୩୫
ପ୍ରାଣବିଦ୍ୟା ମହାବିଦ୍ୟା ଯସ୍ତାଂ ବେତ୍ତି ସ ବେଦବିତ୍ ।
କନ୍ଦୋର୍ଦ୍ଧ୍ୱେ କୁଣ୍ଡଲୀଶକ୍ତିରଷ୍ଟଧା କୁଣ୍ଡଲାକୃତିଃ ॥ ୩୬
ବ୍ରହ୍ମଦ୍ୱାର ମୁଖଂ ନିତ୍ୟଂ ମୁଖେନାଚ୍ଛାଦ୍ୟ ତିଷ୍ଠତି ।
ଯେନ ଦ୍ୱାରେଣ ଗନ୍ତବ୍ୟଂ ବ୍ରହ୍ମଦ୍ୱାରମନାମୟମ୍ ॥ ୩୭
ମୁଖେନାଚ୍ଛାଦ୍ୟ ତଦ୍ଦ୍ୱାରଂ ପ୍ରସୁପ୍ତା ପରମେଶ୍ୱରୀ ।

ଶିଷ୍ୟ—ହଂସ କଥା ପୂର୍ବ ପୂର୍ବ ଶ୍ରୁତି ଏହିପରି କହିଛନ୍ତି ।

ଗୁରୁ—ଏହି ଶ୍ରୁତିକଥିତ ମାଙ୍କ କଥା ଶୁଣ । କୁଣ୍ଡଳିନୀଠାରୁ ପ୍ରାଣଧାରିଣୀ ଅଜପା ଗାୟତ୍ରୀ ସମୁଦ୍ଭୂତା । ପ୍ରାଣବିଦ୍ୟା ମହାବିଦ୍ୟା । ସେ ବିଦ୍ୟା ଯେ ଅବଗତ ଅଛନ୍ତି, ସେହି ଯେ ପ୍ରକୃତ ବେଦବେତ୍ତା । କନ୍ଦର ଊର୍ଦ୍ଧ୍ୱରେ କୁଣ୍ଡଳୀଶକ୍ତି ଅଷ୍ଟପ୍ରକାର କୁଣ୍ଡଳାକୃତିବିଶିଷ୍ଟା, ମୁଖଦ୍ୱାରା ବ୍ରହ୍ମଦ୍ୱାରମୁଖ ଆଚ୍ଛାଦନ କରି ଅବସ୍ଥିତା । ଯେଉଁ ଦ୍ୱାରରେ ଅନାମୟ ଗନ୍ତବ୍ୟ ବ୍ରହ୍ମଦ୍ୱାର, ପରମେଶ୍ୱରୀ ମୁଖଦ୍ୱାରା ସେହି ଦ୍ୱାର ଆଚ୍ଛନ୍ନ କରି ନିଦ୍ରିତା ଅଛନ୍ତି ।

ଶିଷ୍ୟ—ଶ୍ରୀ ଗୁରୁଦେବଙ୍କ କୃପାରୁ ତ ସେ ଜାଗ୍ରତ ହୁଅନ୍ତି ?

ଗୁରୁ—ହଁ । ଆହୁରି ଶୁଣ:—

ଜାଗ୍ରନ୍ନେତ୍ରଦ୍ୱୟୋର୍ମଧ୍ୟେ ହଂସ ଏବ ପ୍ରକାଶତେ ।
ସକାରଃ ଖେଚରୀ ପ୍ରୋକ୍ତସ୍ତ୍ୱଂ-ପଦଂ ଚେତି ନିଶ୍ଚିତମ୍ ॥ ୬୨
ହକାରଃ ପରମେଶଃ ସ୍ୟାତ୍ତତ୍ପଦଂ ଚେତି ନିଶ୍ଚିତମ୍ ।
ସକାରେ ଧ୍ୟାୟତେ ଜନ୍ତୁର୍ହକାରେ ହି ଭବେଦ୍ ଧ୍ରୁବମ୍ ॥ ୬୩

ଜାଗ୍ରତ୍ ଅବସ୍ଥାରେ ନେତ୍ରଦ୍ୱୟ ମଧ୍ୟରେ ହଂସ ପ୍ରକାଶିତ ହୁଅନ୍ତି । "ସ" କାର ଖେଚରୀ—ଆକାଶଗାମିନୀ ବୋଲି କଥିତା ହୁଅନ୍ତି । ସେ ନିଶ୍ଚିତ ତ୍ୱଂପଦବାଚ୍ୟ । "ହ" କାର ପରମେଶ୍ୱର—

ସେ ନିଶ୍ଚୟ ତତ୍ପଦବାଚ୍ୟ । ଯେଉଁ ଜୀବ ସକାର ଧ୍ୟାନ କରନ୍ତି, ସେ ନିଶ୍ଚୟ ହକାର ହୁଅନ୍ତି ।

ଶିଷ୍ୟ—ଦେଖୁଛି ହଂସ ହିଁ ସବୁ ।

ଗୁରୁ—ଯୋଗଶିଖ-ଶ୍ରୁତିରେ ଅଛି—

ହକାରେଣ ବହିର୍ଯାତି ସକାରେଣ ବିଶେତ୍ ପୁନଃ ॥ ୧୩୦

ହଂସ-ହଂସେତି ମନ୍ତ୍ରୋଽୟଂ ସର୍ବୈର୍ଜୀବୈଶ୍ଚ ଜପ୍ୟତେ ।

ଗୁରୁ ବାକ୍ୟାତ୍ ସୁଷୁମ୍ନାୟାଂ ବିପରୀତୋ ଭବେତ୍ ଜପଃ ॥ ୧୩୧

ସୋଽହଂ ସୋଽହମିତି ପ୍ରୋକ୍ତୋ ମନ୍ତ୍ରଯୋଗଃ ସ ଉଚ୍ୟତେ ।

ପ୍ରତୀତିର୍ମନ୍ତ୍ର ଯୋଗାଚ୍ଚ ଜାୟତେ ପଶ୍ଚିମେ ପଥି ॥ ୧୩୨

ହକାରେଣ ତୁ ସୂର୍ଯ୍ୟଃ ସ୍ୟାତ୍ ସକାରେଣେନ୍ଦୁରୁଚ୍ୟତେ ।

ସୂର୍ଯ୍ୟାଚନ୍ଦ୍ରମସୋରୈକ୍ୟଂ ହଠ ଇତ୍ୟଭିଧୀୟତେ ॥ ୧୩୩ (୧ମ ଅଃ)

ହଂସ ମନ୍ତ୍ର ଜୀବ ସବୁବେଳେ ଜପ କରେ, ଗୁରୁବାକ୍ୟ ଅର୍ଥାତ୍ ଗୁରୁଦତ୍ତ ମନ୍ତ୍ର ପ୍ରଭାବରେ ପ୍ରାଣ ସୁଷୁମ୍ନାରେ ପ୍ରବେଶ କଲେ ସୋଽହଂ ସୋଽହଂ—ଏହି ବିପରୀତ ଜପ ହୁଏ । ଏହାର ନାମ ମନ୍ତ୍ରଯୋଗ । ମନ୍ତ୍ରଯୋଗର ପ୍ରତୀତି ପଶ୍ଚିମ ମାର୍ଗରେ ଅର୍ଥାତ୍ ମେରୁଦଣ୍ଡସ୍ଥିତ ସୁଷୁମ୍ନାରେ ହୋଇଥାଏ । ହକାର ସୂର୍ଯ୍ୟ, ସକାର ଚନ୍ଦ୍ର, ସୂର୍ଯ୍ୟ-ଚନ୍ଦ୍ରଙ୍କର ଏକତାର ନାମ ହଠ । ହଠଯୋଗ ଦ୍ୱାରା ସର୍ବଦୋଷ-ସମ୍ଭୂତ ଜଡ଼ତା ନଷ୍ଟ ହୁଏ, ଯେହେତୁ କ୍ଷେତ୍ରଜ୍ଞ ପରମାତ୍ମାଙ୍କର ଐକ୍ୟ ହୋଇଥାଏ । ସେମାନଙ୍କର ଐକ୍ୟ ହେଲେ ଚିତ୍ତ ବିଲୀନ ହୋଇଯାଏ ।

ପବନଃ ସ୍ଥୈର୍ଯ୍ୟମାପ୍ନୋତି ଲୟଯୋଗୋଦୟେ ସତି । ୧୩୪

ଲୟାତ୍ ସଂପ୍ରାପ୍ୟତେ ସୌଖ୍ୟଂ ସ୍ୱାତ୍ମାନନ୍ଦଂ ପରଂପଦମ୍ ॥

ଲୟଯୋଗ ଉଦୟ ହେଲେ ପ୍ରାଣବାୟୁ ସ୍ଥିର ହୁଏ, ଲୟ ଯୋଗରୁ ସୁଖାଧାର ପ୍ରଣବ—ଆତ୍ମାନନ୍ଦଜନିତ ଭୂମାସୁଖ—ପରମପଦ ଲାଭ ହୋଇଥାଏ ।

ଶିଷ୍ୟ—ନାଦପ୍ରାପ୍ତି ହିଁ ତ ଲୟଯୋଗର ଉଦୟ ।

ଗୁରୁ—ହିଁ । ଏହି ଉପନିଷଦର ଷଷ୍ଠ ଅଧ୍ୟାୟରେ କଥିତ ହୋଇଅଛି, ପ୍ରାଣ ଅପାନ ବଶରେ ଜୀବ ଊର୍ଦ୍ଧ୍ୱକୁ ଏବଂ ଅଧୋଧାବିତ ହୁଏ । ବାମ ଏବଂ ଦକ୍ଷିଣ ପଥରେ ପ୍ରାଣ ଏବଂ ଅପାନ ବଶରେ ଜୀବ ଅଧଃ ଏବଂ ଊର୍ଦ୍ଧ୍ୱକୁ ଧାବିତ ହୁଏ, ଚଞ୍ଚଳତ୍ୱ ହେତୁ ଦୃଷ୍ଟ ହୁଏ ନାହିଁ । ହସ୍ତଦ୍ୱାରା ପ୍ରକ୍ଷିପ୍ତ କନ୍ଦୁକ ଯେପରି ଊର୍ଦ୍ଧ୍ୱଦେଶକୁ ଗମିତ ହୁଏ, ସେହିପରି ପ୍ରାଣ ଓ ଅପାନ ଦ୍ୱାରା ପ୍ରେରିତ ଜୀବ ବିଶ୍ରାମ ନେବାପାଇଁ ସମର୍ଥ ହୁଏ ନାହିଁ । ଅପାନ ପ୍ରାଣକୁ ଆକର୍ଷଣ କରେ ଏବଂ ପ୍ରାଣ ଅପାନକୁ ଆକର୍ଷଣ କରିଥାଏ ।

ହକାରେଣ ବହିର୍ଯାତି ସକାରେଣ ବିଶେତ୍ ପୁନଃ ॥ ୫୩

ହଂସ-ହଂସେତ୍ୟମୁଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ।

ତଦ୍ୱିଦ୍ୱାନକ୍ଷରଂ ନିତ୍ୟଂ ଯୋ ଜାନାତି ସ ଯୋ ବିତ୍ ॥ ୫୪

ହଂସ ହଂସ ଏହି ମନ୍ତ୍ର ଜୀବ ସର୍ବଦା ଜପ କରେ । ଯେଉଁ ଜ୍ଞାନୀ ସେହି ନିତ୍ୟ ଅକ୍ଷରକୁ ଜାଣନ୍ତି—ସେ ଯୋଗବିତ୍ । ଏକା କଥା ବହୁତଥର କହୁଛି ।

ଶିଷ୍ୟ—ମୁଁ ଆଗ୍ରହର ସହିତ ତାହା ଶୁଣୁଅଛି; ବାରମ୍ବାର ଶ୍ରବଣ ବ୍ୟତୀତ ବସ୍ତୁର ଯଥାର୍ଥ ନିର୍ଣ୍ଣୟ ହୁଏ ନାହିଁ, ଏହା ମୁଁ ଆପଣଙ୍କ ଶ୍ରୀମୁଖରୁ ଶୁଣିଅଛି । ଏକା କଥା ହେଲେ ମଧ୍ୟ କିଛି ନା କିଛି ନୂତନତ୍ୱ ଅଛି ଦେଖୁଛି ।

ଗୁରୁ—ପାଶୁପତ ବ୍ରହ୍ମଶ୍ରୁତି ଏହି—

ପରମାତ୍ମସ୍ୱରୂପୋ ହଂସଃ । ଅନ୍ତର୍ବହିଷ୍ଟରତି ହଂସଃ । ଅନ୍ତର୍ଗତୋଽନବକାଶାନ୍ତର୍ଗତସୁପର୍ଣସ୍ୱରୂପୋ ହଂସଃ । ମନୋ ଯଜ୍ଞସ୍ୟ ହଂସୋ ଯଜ୍ଞସୂତ୍ରମ୍ । ପ୍ରଣବଃ ବ୍ରହ୍ମସୂତ୍ରଂ ବ୍ରହ୍ମଯଜ୍ଞମୟଂ । ପ୍ରଣବାନ୍ତର୍ବର୍ତ୍ତୀ ହଂସୋ ବ୍ରହ୍ମସୂତ୍ରମ୍ । ହଂସପ୍ରଣବୟୋରଭେଦଃ । ହଂସସ୍ୟ

ପ୍ରାର୍ଥନାସ୍ତୁ କାଳାଃ । ଅନ୍ତର୍ବହିଷ୍ଟୋ ଜ୍ୟୋତିଃସ୍ୱରୂପୋ ହଂସଃ । ପ୍ରଣବହଂସାନ୍ତର୍ଧାନପ୍ରକୃତିଂ ବିନା ନ ମୁକ୍ତିଃ ।

ଅନ୍ତଃପ୍ରଣବନାଦାଖ୍ୟୋ ହଂସଃ ପ୍ରତ୍ୟଗ୍‌ବୋଧକଃ ।

ପରବ୍ରହ୍ମୋପନିଷତ୍—ପ୍ରଣବହଂସଃ ପରଂବ୍ରହ୍ମ । ନ ପ୍ରାଣହଂସଃ । ପ୍ରଣବୋ ଜୀବଃ । ଅପବର୍ଗସ୍ୟ ଯତେଃ ଶିଖାଯଜ୍ଞୋପବୀତମୂଳଂ ପ୍ରଣବମେକମେବ ବଦନ୍ତି । ହଂସଃ ଶିଖା । ପ୍ରଣବ ଉପବୀତମ୍ । ନାଦଃ ସନ୍ଧାନମ୍ । ପ୍ରଣବ-ହଂସୋନାଦସ୍ତ୍ରିବୃତ୍ ସୂତ୍ରଂ ସ୍ୱହୃଦି ଚୈତନ୍ୟେ ତିଷ୍ଠତି ତ୍ରିବିଧଂ ବ୍ରହ୍ମ । ତଦ୍‌ବହି ପ୍ରାପଞ୍ଚିକଶିଖୋପବୀତଂ ତ୍ୟଜେତ୍ ।

ସଶିଖଂ ବପନଂ କୃତ୍ୱା ବହିଃ ସୂତ୍ରଂ ତ୍ୟଜେଦ୍ ବୁଧଃ ।
ଯଦକ୍ଷରଂ ପରଂବ୍ରହ୍ମ ତତ୍ ସୂତ୍ରମିତି ଧାରୟେତ୍ ॥ ୧

ବହିଃପ୍ରପଞ୍ଚଶିଖୋପବୀତତ୍ୱମନାଦୃତ୍ୟ ପ୍ରଣବହଂସଶିଖୋପବୀତତ୍ୱମବଲମ୍ବ୍ୟ ମୋକ୍ଷସାଧନଂ କୁର୍ଯ୍ୟାଦିତ୍ୟାହ ଭଗବାନ୍ ଶୌନକ ଇତ୍ୟୁପନିଷତ୍ ॥

ଶିଷ୍ୟ—ଯେଉଁମାନେ ପରମହଂସ ସନ୍ନ୍ୟାସୀ ତାଙ୍କର କଥା ଏ ଶ୍ରୁତି କହିଛନ୍ତି ।

ଗୁରୁ—ହଁ, ତ୍ରିପୁରତାପିନୀ ଶ୍ରୁତିରେ "ହଂସଃ ଶୁଚିଷଦ୍‌ବସୁରନ୍ତରିକ୍ଷସଦ୍" ଏ ମନ୍ତ୍ରଟି ଅଛି । କଠ ଶ୍ରୁତିରୁ ଏହା ପୂର୍ବରୁ ବ୍ୟାଖ୍ୟା କରିଅଛି । ଆହୁରି ଅଛି—

ଅଥ ଗାୟତ୍ରୀ ସାବିତ୍ରୀ ସରସ୍ୱତ୍ୟଜପା ମାତୃକା ପ୍ରୋକ୍ତା ତସ୍ମା ସର୍ବମିଦଂ ବ୍ୟାପ୍ତମ୍ । ......

ଗାୟତ୍ରୀ ପ୍ରାତଃ ସାବିତ୍ରୀ ମଧ୍ୟନ୍ଦିନେ ସରସ୍ୱତୀ ସାୟମିତି ନିରନ୍ତରମଜପା । ହଂସ ଇତ୍ୟେବ ମାତୃକା । ପଞ୍ଚାଶଦ୍‌ବର୍ଣ୍ଣବିଗ୍ରହେଣାକାରାଦିକ୍ଷକାରାନ୍ତେନ ବ୍ୟାପ୍ତାନି ଭୁବନାନି ଶାସ୍ତ୍ରାଣି ଛନ୍ଦାଂସୀତ୍ୟେବଂ ଭଗବତୀ ସର୍ବଂ ବ୍ୟାପ୍ନୋତୀତ୍ୟେବ ତସ୍ୟୈ ବୈ ନମୋ ନମ

ଇତି । ତାନ୍ ଭଗବାନବ୍ରବୀଦେତୈର୍ମନ୍ତ୍ରୈର୍ନିତ୍ୟଂ ଦେବୀଂ ଯଃ ସ୍ତୌତି ସ ସର୍ବଂ ପଶ୍ୟତି ସୋଽମୃତତ୍ୱଞ୍ଚ ଗଚ୍ଛତି ଯ ଏବଂ ବେଦେତ୍ୟୁପନିଷତ୍ । ଗାୟତ୍ରୀ ସାବିତ୍ରୀ ସରସ୍ୱତୀ ଅଜପା ମାତୃକା ବୋଲି କଥିତା ହୁଅନ୍ତି, ତାଙ୍କଦ୍ୱାରା ଏହି ସମସ୍ତ ବ୍ୟାପ୍ତ ।

ଐଂ ବାଗୀଶ୍ୱରି ବିଦ୍ମହେ କ୍ଲୀଂ କାମେଶ୍ୱରି ଧୀମହି ସୌସ୍ତନ୍ନଃ ଶକ୍ତିଃ ପ୍ରଚୋଦୟାତ୍ ।

ଗୁରୁଦେବଙ୍କ ଉପଦେଶ ଅନୁସାରେ ଐଂ ବାଗୀଶ୍ୱରୀଙ୍କୁ ଜାଣିଛୁ, କ୍ଲୀଂ କାମେଶ୍ୱରୀଙ୍କୁ ଧ୍ୟାନ କରେ, ସୌଃ ସେହି ଶକ୍ତି ମତେ ମୋକ୍ଷ ପଥରେ ସୁଷୁମ୍ନାକୁ ପ୍ରେରଣ କରନ୍ତୁ । ପ୍ରାତଃକାଳରେ ଗାୟତ୍ରୀ, ମଧ୍ୟାହ୍ନରେ ସାବିତ୍ରୀ,ସାୟାହ୍ନରେ ସରସ୍ୱତୀ—ଏହି ନିରନ୍ତର ଅଜପା ହଂସ ହ୍ରୀଁ ମାତୃକା ପଞ୍ଚାଶଦ୍ ବର୍ଣ୍ଣ—ଅକାରାଦି କ୍ଷକାରାନ୍ତ ବର୍ଣ୍ଣମୟ ଦେହଦ୍ୱାରା ତ୍ରିଭୁବନ, ଶାସ୍ତ୍ରସମୂହ, ବେଦଚତୁଷ୍ଟୟ ବ୍ୟାପ୍ତ; ଏହିପରି ଐଶ୍ୱର୍ଯ୍ୟ-ଶାଳିନୀ ମହାଦେବୀ ସବୁକିଛି ବ୍ୟାପି ରହିଛନ୍ତି । ତାହାଙ୍କୁ ପୁନଃ ପୁନଃ ନମସ୍କାର କରୁଅଛୁ । ସେମାନଙ୍କୁ ଭଗବାନ କହିଥିଲେ—ଏହି ମନ୍ତ୍ରସମୂହ ଦ୍ୱାରା ନିତ୍ୟ ଦେବୀଙ୍କୁ ଯେ ସ୍ତବ କରନ୍ତି, ସେ ସମସ୍ତ ଦର୍ଶନ କରନ୍ତି, ସେ ଅମୃତତ୍ୱ ପ୍ରାପ୍ତ ହୁଅନ୍ତି ।

ଶିଷ୍ୟ—ଏକା ଜନକ ଶ୍ରୁତି ଉପଦେଶ ଦେଉଛନ୍ତି, ତାହା ଭିତରେ କିଛି ନା କିଛି ବିଶେଷ ଅଛି ।

ଗୁରୁ—ହଁ—ଲୟଯୋଗସଂହିତାରେ କଥିତ ଅଛି—

କୁଣ୍ଡଳିନ୍ୟାଃ ସମୁଦ୍ଭୂତା ଗାୟତ୍ରୀ ପ୍ରାଣଧାରିଣୀ ।
ପ୍ରାଣବିଦ୍ୟା ମହାବିଦ୍ୟା ଯସ୍ତାଂ ବେଦ ସ ବେଦବିତ୍ ॥ ୨୫

ଲୟଯୋଗବର୍ଣ୍ଣନ

ପ୍ରାଣଧାରିଣୀ ଗାୟତ୍ରୀ କୁଣ୍ଡଳିନୀଠାରୁ ସମୁତ୍ପନ୍ନା ହୋଇଛନ୍ତି । ଯେ ପ୍ରାଣବିଦ୍ୟା ରୂପକ ମହାବିଦ୍ୟା ଅବଗତ ଅଛନ୍ତି, ସେ ବେଦ-

ତତ୍ତ୍ୱବେତ୍ତା । ସୋହଂ ମନ୍ତ୍ର ଜପ କରି କରି ଅଜପା ଦେବୀଙ୍କୁ ହୃଦୟରେ ଭାବିବ । ମନ୍ତ୍ରରେ ମନର ଲୟ ହେଲେ, ମନ ଓ ପ୍ରାଣ ଉଭୟଙ୍କର ଲୟ ହେବ । ସେହି ଗାୟତ୍ରୀଙ୍କୁ ତ୍ରିକାଳରେ ତିନି ପ୍ରକାରରେ ଉପାସନା କରିବା କର୍ତ୍ତବ୍ୟ, ତନ୍ତ୍ରବେଦଗଣ ଏହାର ତ୍ରିବିଧ ଭେଦ କହିଛନ୍ତି । ପ୍ରଥମେ ମନ୍ତ୍ର-ପ୍ରାଣ-ସ୍ଥିରତ୍ୱ, ଦ୍ୱିତୀୟରେ ପ୍ରାଣ ଏବଂ ମନ୍ତ୍ରାର୍ଥର ସ୍ଥୈର୍ଯ୍ୟ ଉତ୍ପନ୍ନ ହୁଏ, ତୃତୀୟରେ ଭାବ ଏବଂ ମନର ସ୍ଥିତି କଥିତ ହୁଏ ।

ତତଃ ପଶ୍ୟନ୍ତି ତେ ଦେବଂ ପରମାତ୍ମାନମବ୍ୟୟମ୍ ॥

ଅନନ୍ତର ଜ୍ୟୋତିର୍ମୟ ଅକ୍ଷୟ ପରମାତ୍ମାଙ୍କୁ ଦର୍ଶନ କରିଥାଏ ।

ଶିଷ୍ୟ—ଯେପରି ପ୍ରଣବ ଅକାର ଉକାର ମକାର, ସେହିପରି ହଂସ ସୋହଂ ଓଁ ।

ଗୁରୁ—ଦକ୍ଷିଣାମୂର୍ତ୍ତିସଂହିତାରେ କଥିତ ହୋଇଅଛି—

ଅତୋ ବକ୍ଷ୍ୟେ ମହେଶାନି ପ୍ରତ୍ୟହଂ ପ୍ରଜପେନ୍ନରଃ ।
ମୋହବନ୍ଧଂ ନ ଜାନାତି ମୋକ୍ଷସ୍ତସ୍ୟ ନ ବିଦ୍ୟତେ ॥
ଶ୍ରୀଗୁରୋଃ କୃପୟା ଦେବି ଜ୍ଞାୟତେ ଜପ୍ୟତେ ଯଦା ।
ଉଚ୍ଛ୍ୱାସନିଃଶ୍ୱାସତୟା ତଦା ବନ୍ଧକ୍ଷୟୋ ଭବେତ୍ ॥
ଉଚ୍ଛ୍ୱାସୈରେବ ନିଃଶ୍ୱାସୈର୍ହଂସ ଇତ୍ୟକ୍ଷରଦ୍ୱୟମ୍ ।
ତସ୍ମାତ୍ ପ୍ରାଣସ୍ୟ ହଂସାଖ୍ୟ ଆତ୍ମାକାରେଣ ସଂସ୍ଥିତଃ ॥
ନାଭେରୁଚ୍ଛ୍ୱାସ-ନିଃଶ୍ୱାସାତ୍ ହୃଦୟାଗ୍ରେ ବ୍ୟବସ୍ଥିତଃ ।
ଷଷ୍ଟିଶ୍ୱାସୈଃ ଭବେତ୍ ପ୍ରାଣଃ ଷଟ୍ ପ୍ରାଣାଃ ନାଡ଼ିକାମତାଃ ॥
ଷଷ୍ଟିନାଡ଼୍ୟା ହ୍ୟହୋରାତ୍ରଂ ଜପସଂଖ୍ୟାକ୍ରମୋ ମତଃ ।
ଏକବିଂଶତିସାହସ୍ରଂ ଷଟ୍ଶତାଧିକମୀଶ୍ୱରି ॥
ଜପତେ ପ୍ରତ୍ୟହଂ ପ୍ରାଣୀ ସାନ୍ଦ୍ରାନନ୍ଦମୟୀଂ ପରାମ୍ ।
ଉତ୍ପତ୍ତିର୍ଜପମାରମ୍ଭୋ ମୃତ୍ୟୁସ୍ତସ୍ୟ ନିବେଦନମ୍ ॥

ବିନା ଜପେନ ଦେବେଶି ଜପୋ ଭବତି ମନ୍ତ୍ରିଣଃ ।
ଅଜପେୟଂ ତତଃ ପ୍ରୋକ୍ତା ଭବପାଶନିକୃନ୍ତନୀ ॥

ଶବ୍ଦକଳ୍ପଦ୍ରୁମଧୃତ

ତନ୍ତ୍ରସାରରେ ଏହି ଅଜପା ମନ୍ତ୍ରର ଦେବତା ଅର୍ଦ୍ଧନାରୀଶ୍ୱର ବୋଲି କଥିତ ହୋଇଅଛି ।

ବିୟଦର୍ଦ୍ଧେନ୍ଦୁଲଳିତଂ ତଦାଦ୍ୟଃ ସର୍ଗସଂଯୁତଃ ।
ଅଜପାଖ୍ୟୋ ମନୁଃ ପ୍ରୋକ୍ତୋ ଦ୍ୱ୍ୟକ୍ଷରଃ ସୁରପାଦପଃ ॥

ତନ୍ତ୍ରସାର

ଅନୁସ୍ୱାରଯୁକ୍ତ ହକାର ଓ ବିସର୍ଗଯୁକ୍ତ ସକାରର ନାମ ଅଜପା । ଦୁଇ ଅକ୍ଷର ସମନ୍ୱିତ ଏହି ମନ୍ତ୍ର କଳ୍ପତରୁପରି ସର୍ବାଭୀଷ୍ଟ-ଫଳପ୍ରଦ ।

ଶିଷ୍ୟ—ଧ୍ୟାନଟି କ'ଣ ?

ଗୁରୁ—

ଉଦ୍ୟଦ୍ଭାନୁସ୍ଫୁରତ୍ତଡ଼ିଦାକାର ମୂର୍ଦ୍ଧାମ୍ବିକେଶଂ ।
ପାଶାଭୀତିଂ ବରଦ-ପରଶୁଂ ସନ୍ଦଧାନଂ କରାବ୍‌ଜୈଃ ॥
ଦିବ୍ୟାକଳ୍ପୈର୍ନବମଣିମୟୈଃ ଶୋଭିତଂ ବିଶ୍ୱମୂଳଂ ।
ସୌମ୍ୟାଗ୍ନେୟଂ ବପୁରବତୁ ନ ଶ୍ଚନ୍ଦ୍ରଚୂଡ଼ଂ ତ୍ରିନେତ୍ରମ୍ ॥

ଏହି ଅଜପା ମନ୍ତ୍ରର ବ୍ରହ୍ମା ଋଷି ଗାୟତ୍ରୀ ଛନ୍ଦ, ଗିରିଜାପତି ଦେବତା, ହକାର ବୀଜ, ସକାର ଶକ୍ତି ମୋକ୍ଷାର୍ଥରେ ପ୍ରୟୋଗ ହୁଏ । ଏହି ମନ୍ତ୍ର ଜପରେ ସ୍ତ୍ରୀ ଓ ଶୂଦ୍ରମାନଙ୍କର ଅଧିକାର ନାହିଁ ।

ଶିଷ୍ୟ—ଶାସ୍ତ୍ରରେ ଏହି ନିଷେଧ ଅଛି ?

ଗୁରୁ—ହଁ ।

ପ୍ରଣବାଦ୍ୟଂ ନ ଦାତବ୍ୟଂ ମନ୍ତ୍ରଂ ଶୂଦ୍ରାୟ ସର୍ବଥା ।
ଆତ୍ମମନ୍ତ୍ରଂ ଗୁରୋର୍ମନ୍ତ୍ରଂ ମନ୍ତ୍ରଞ୍ଚାଜପସଜ୍ଞକମ୍ ॥

ସ୍ୱାହା-ପ୍ରଣବ-ସଂଯୁକ୍ତଂ ଶୂଦ୍ରେ ମନ୍ତ୍ରଂ ଦଦଦ୍ଦ୍ୱିଜଃ ।
ଶୂଦ୍ରୋ ନିରୟମାପ୍ନୋତି ବ୍ରାହ୍ମଣୋ ଯାତ୍ୟଧୋଗତିମ୍ ॥
ତନ୍ତ୍ରାନ୍ତର

ନୃସିଂହତାପନୀରେ କଥିତ ହୋଇଅଛି:—

ସାବିତ୍ରୀଂ ପ୍ରଣବଂ ଯଜୁର୍ଲକ୍ଷ୍ମୀଂ ସ୍ତ୍ରୀଶୂଦ୍ରୋ ଯଦି ଜାନୀୟାତ୍ ସ ମୃତୋଽଧୋଗଚ୍ଛତି ॥

"ପ୍ରଣବଘଟିତ ମନ୍ତ୍ର, ନଜର ମନ୍ତ୍ର, ଗୁରୁମନ୍ତ୍ର, ଏବଂ ଅଜପା ହଂସମନ୍ତ୍ର ଶୂଦ୍ରକୁ କୌଣସି ମତେ ପ୍ରଦାନ କରିବ ନାହିଁ । ସ୍ୱାହା ଓ ପ୍ରଣବସଂଯୁକ୍ତ ମନ୍ତ୍ର ଶୂଦ୍ରକୁ ପ୍ରଦାନ କଲେ ସେହି ବ୍ରାହ୍ମଣ ଅଧୋଗତ ହୁଏ ଏବଂ ଶୂଦ୍ର ନରକଗାମୀ ହୋଇଥାଏ । ବୈଦିକ ଗାୟତ୍ରୀ, ପ୍ରଣବ, ସ୍ୱାହାମନ୍ତ୍ର ଓ ଲକ୍ଷ୍ମୀମନ୍ତ୍ର (ଶ୍ରୀଂ) ପରିଜ୍ଞାନରେ ସ୍ତ୍ରୀ ଓ ଶୂଦ୍ରଙ୍କର ଅଧିକାର ନାହିଁ । ଯଦି ସେମାନେ ଏହିସବୁ ମନ୍ତ୍ର ଜାଣନ୍ତି ତେବେ ମୃତ୍ୟୁପରେ ଅଧୋଗାମୀ ହୁଅନ୍ତି ।" (ତନ୍ତ୍ରସାର)

ଶିଷ୍ୟ—କାହିଁକି ? ସ୍ତ୍ରୀ ଓ ଶୂଦ୍ର କଣ ଏପରି ଅପରାଧ କରନ୍ତି ଯେ ଯେଉଁଥିପାଇଁ ସେମାନଙ୍କୁ ଏ ସବୁ ମନ୍ତ୍ରଦାନ କରିବାକୁ ଶାସ୍ତ୍ରରେ ନିଷିଦ୍ଧ ହୋଇଅଛି ?

ଗୁରୁ—ଅପରାଧ ନ ଥିଲେ ସ୍ତ୍ରୀ ବା ଶୂଦ୍ର ଦେହପ୍ରାପ୍ତି ହୁଏ ନାହିଁ । ଆଚ୍ଛା ଆହୁରି ଶୁଣ—

ଶିଖାଂ ସୂତ୍ରଞ୍ଚ ଗାୟତ୍ରୀଂ ଗୃହଂ ଦାରାନ୍ କୁମାରକାନ୍ ।
ପରିତ୍ୟଜ୍ୟ ଜପନ୍ନେତଂ ପ୍ରଣବଂ ସାଙ୍ଗମୁତ୍ତମମ୍ ॥ ୨୫
ପ୍ରଣବକଳ୍ପ

ଶିଖା, ସୂତ୍ର, 'ଗାୟତ୍ରୀ, ଗୃହ, ଦାର, ପୁତ୍ର ଆଦି ପରିତ୍ୟାଗ ପୂର୍ବକ ଅଙ୍ଗର ସହିତ ଏହି ଉତ୍ତମ ମନ୍ତ୍ର ପ୍ରଣବ ଜପ କରିବ ।

ଗାୟତ୍ରୀମପି ସାବିତ୍ରୀଂ ଶିଖାଂ ସୂତ୍ରଞ୍ଚ କର୍ମ ଚ ॥ ୨୧
ତ୍ୟକ୍ତ୍ୱା ସନ୍ନ୍ୟସ୍ୟ ଜପେଦ୍ୟୋହଂ ମୋକ୍ଷବାଞ୍ଛା ଭବେଦ୍ ଯଦି ॥
ଓଁକାର ଗୀତା

ଯଦି ମୋକ୍ଷଲାଭ ପାଇଁ ଇଚ୍ଛା ଥାଏ, ତେବେ ଗାୟତ୍ରୀ, ସାବିତ୍ରୀ, ଶିଖା, ସୂତ୍ର ଓ କର୍ମ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ ପୂର୍ବକ ମୋତେ ଜପ କରିବ ।

ଶିଷ୍ୟ—ଓଁକାର ଜପର ଅଧିକାର ତ ସଂସାରତ୍ୟାଗ ପରେ ନିର୍ଦ୍ଦେଶ କଲେ !

ଗୁରୁ—ଯେ ମୁକ୍ତିଲାଭ କରିବାକୁ ଇଚ୍ଛୁକ, ସେଇ ହଂସମନ୍ତ୍ର ବା ପ୍ରଣବର ଅଧିକାରୀ, ଇତିପୂର୍ବରୁ ଏକଥା କହିଛି । ହଂସ-ମନ୍ତ୍ର ମୋକ୍ଷାର୍ଥରେ ପ୍ରୟୋଗ ହୋଇଥାଏ । ସ୍ତ୍ରୀ ଶୂଦ୍ର ତ ଦୂରର କଥା, ବ୍ରାହ୍ମଣ ଯଦି ମୋକ୍ଷାର୍ଥୀ ନ ହୁଏ, ତା ହେଲେ ସେ ମଧ୍ୟ ହଂସ ବା ଓଙ୍କାରର ଅଧିକାରୀ ନୁହେଁ ।

ଶିଷ୍ୟ—ତା ହେଲେ ଯେ କେହି ମୋକ୍ଷାର୍ଥୀ ହେବ, ସେ ହଂସାଦି ମନ୍ତ୍ରର ଅଧିକାରୀ ହେବେ ତ ?

ଗୁରୁ—ଯେ ସତ୍ୟକରେ ମୋକ୍ଷାର୍ଥୀ, ସେ ନୁହେଁ ।

ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ ଯତତି ସିଦ୍ଧୟେ ।

ସହସ୍ର ମନୁଷ୍ୟଙ୍କ ମଧ୍ୟରେ କେହି ଜଣେ ହୁଏତ ସିଦ୍ଧିଲାଭ ପାଇଁ ପ୍ରଯତ୍ନ କରେ ।

ପ୍ରାଣେ ଗତେ ଯଥା ଦେହୋ ସୁଖଂ ଦୁଃଖଂ ନ ବିନ୍ଦତି ।
ତଥା ଚେତ୍ ପ୍ରାଣଯୁକ୍ତେଽପି ସ କୈବଲ୍ୟାଶ୍ରମେବସେତ୍ ॥

ପ୍ରାଣ ଦେହତ୍ୟାଗ କରିଗଲେ ଯେପରି ଶରୀର ସୁଖ ଦୁଃଖ କିଛି ଅନୁଭବ କରିପାରେ ନାହିଁ, ସେହିପରି ଯଦି ପ୍ରାଣଯୁକ୍ତ ଅବସ୍ଥାରେ ହୁଏ ତାହା ହେଲେ ସେ ମୋକ୍ଷାଶ୍ରମର ଉପଯୁକ୍ତ ।

ଅଧିକାରୀ ନ ହୋଇ ଜପ କଲେ ବିପରୀତ ଫଳ ହେବ, ସେଥିପାଇଁ ଶାସ୍ତ୍ର ବାରମ୍ବାର ନିଷେଧ କରିଛନ୍ତି । କାମ-କ୍ରୋଧ ଆଦି ଅଛି । ଧନଜନଲାଭ ପାଇଁ ମଧ୍ୟ ଇଚ୍ଛା ଅଛି, ସେମାନଙ୍କ ପକ୍ଷରେ ହଂସ ପ୍ରଣବାଦି ମନ୍ତ୍ର ଜପ କରିବା କେବଳ ଆତ୍ମବଞ୍ଚନା କରିବା—ମହା ଅପରାଧ । ଏ ପ୍ରସଙ୍ଗରେ ମହାଭାରତର ଅନୁଗୀତା ପର୍ବରେ କଥିତ ଗୋଟିଏ ଆଖ୍ୟାୟିକା ତୁମକୁ କହୁଛି ଶୁଣ ।

"ଦେବତା, ଋଷି, ସର୍ପ ଓ ଅସୁରଗଣ ବ୍ରହ୍ମାଙ୍କ ନିକଟକୁ ଯାଇ ପ୍ରାର୍ଥନା ଜଣାଇଲେ, ଯେଉଁଥିରେ ଆମ୍ଭମାନଙ୍କର ଶ୍ରେୟଲାଭ ହେବ ସେହିପରି ଉପଦେଶ ଆମ୍ଭମାନଙ୍କୁ ଦିଅନ୍ତୁ । ପ୍ରଜାପତି ଓଁ ଏହି ଏକାକ୍ଷର ଶବ୍ଦ ଉଚ୍ଚାରଣ କଲେ । ତାହାର ଅର୍ଥ ପର୍ଯ୍ୟାଲୋଚନା କରୁ କରୁ ସର୍ପମାନଙ୍କ ମନରେ ଦଂଶନ ପ୍ରବୃତ୍ତି, ଅସୁରଗଣଙ୍କ ମନରେ ଦମ୍ଭଭାବ, ଦେବତାମାନଙ୍କ ହୃଦୟରେ ଦାନ ପ୍ରବୃତ୍ତି ଏବଂ ମହର୍ଷିଗଣଙ୍କର ଅନ୍ତରରେ ଦମଗୁଣର ସଞ୍ଚାର ହେଲା ।" ଏକ ସମୟରେ ଏକା ଉପଦେଷ୍ଟାଙ୍କ ମୁଖରୁ ଗୋଟିଏ ମାତ୍ର ଶବ୍ଦହିଁ ସେମାନଙ୍କର ପ୍ରକୃତିଗତ ଭାବକୁ ବର୍ଦ୍ଧିତ କରି ଦେଇଥିଲା । ଏହି ହେତୁ ତପସ୍ୟା ଶ୍ରଦ୍ଧା ବ୍ରହ୍ମଚର୍ଯ୍ୟ ଆଦି ସମ୍ପନ୍ନ ହୋଇ ସଗୁଣମନ୍ତ୍ରର ସାଧନ ପୂର୍ବକ ଇଷ୍ଟ ଦେବତାଙ୍କ ସାକ୍ଷାତ୍କାର ଲାଭ କରି ଜୀବନ୍ମୁକ୍ତି ଲାଭ ପରେ ସାଧକ ପ୍ରଣବର ପ୍ରକୃତ ଅଧିକାରୀ ହୋଇଥାଏ ।

ଶିଷ୍ୟ—ଅଧିକାରୀ ଭେଦର ସନ୍ଦେହ ଏତେ ଦିନରେ ଦୂର ହେଲା । ଚିତ୍ତଶୁଦ୍ଧି ନ ହେଲେ ପ୍ରଣବାଦି ମନ୍ତ୍ର ବିପରୀତ ଫଳ ପ୍ରଦାନ କରିଥାଏ, ସେଥିପାଇଁ ସଗୁଣ ମନ୍ତ୍ର ଦ୍ୱାରା ଇଷ୍ଟ-ସାକ୍ଷାତ୍କାର କରିବା ପାଇଁ ପ୍ରାଣପଣ କରିବାହିଁ ସାଧକଗଣଙ୍କର କର୍ତ୍ତବ୍ୟ ।

ଗୁରୁ—ହିଁ, ଇଷ୍ଟ ସାକ୍ଷାତ୍କାର ହେଲେ ମନ୍ତ୍ର ଇଷ୍ଟଙ୍କଠାରେ ଲୀନ ହୋଇଯାଏ, ସୁଷୁମ୍ନାଦ୍ୱାର ମୁକ୍ତ ହୋଇଯାଏ, ସ୍ୱତଃ ହିଁ ପ୍ରଣବ

ଧ୍ୱନି ଉତ୍ଥିତ ହୁଏ, ଅଧିକାର ଅନଧିକାର ଆଉ ରହେ ନାହିଁ। ହୃଦୟତନ୍ତ୍ରୀ ଆପଣା ମନକୁ ବାଜି ଉଠେ, ଜ୍ୟୋତିଃନାଦରେ ସାଧକ ନିଜକୁ ନିଜେ ଭୁଲିଯାଏ।

ଶିଷ୍ୟ— ତନ୍ତ୍ର ଅଜପା ସମ୍ବନ୍ଧରେ କଣ କହିଛନ୍ତି ?

ସ ହଂକାରଃ ପୁମାନ୍ ପ୍ରୋକ୍ତଃ ସ ଇତି ପ୍ରକୃତିଃ ସ୍ମୃତା।
ଅଜପେୟଂ ମତା ଶକ୍ତିସ୍ତଥା ଦକ୍ଷିଣବାମତଃ ॥
ବିନ୍ଦୁର୍ଦକ୍ଷିଣଭାଗସ୍ତୁ ବାମଭାଗୋ ବିସର୍ଗକଃ।
ତେନ ଦକ୍ଷିଣବାମାଖ୍ୟୌ ଭାଗୌ ପୁଂସ୍ତ୍ରୀବିଶେଷିତୌ ॥
ବିନ୍ଦୁଃ ପୁରୁଷ ଇତ୍ୟୁକ୍ତୋ ବିସର୍ଗଃ ପ୍ରକୃତିଃ ସ୍ମୃତା।
ପୁଂପ୍ରକୃତ୍ୟାତ୍ମକୋ ହଂସସ୍ତଦାତ୍ମକମିଦଂ ଜଗତ୍ ॥

ଅଧ୍ୟାତ୍ମ ମୁକ୍ତାବଳୀଧୃତ ପ୍ରପଞ୍ଚସାରତନ୍ତ୍ର ୪। ୧୭। ୧୯

"ଏହି ଅଜପା ମନ୍ତ୍ରର "ହଂ" ବର୍ଣ୍ଣକୁ ପୁରୁଷ ଓ "ସଃ" ବର୍ଣ୍ଣକୁ ପ୍ରକୃତି କୁହାଯାଏ ; ଏଇଥିପାଇଁ ଅଜପା ମନ୍ତ୍ରର ଅନ୍ୟ ନାମ ପୁଂ ପ୍ରକୃତ୍ୟାତ୍ମକ ମନ୍ତ୍ର, ଏହି ମନ୍ତ୍ରର ଗତି ଦକ୍ଷିଣରୁ ବାମଦିଗକୁ ହୁଏ, ସେତେବେଳେ ଏହାର ନାମ ହୁଏ "ସୋହଂ" ମନ୍ତ୍ର, ଏହାକୁ ଦକ୍ଷିଣ-ବାମ ମନ୍ତ୍ର ବୋଲି ମଧ୍ୟ କୁହାଯାଏ। ଏହି ଙ୍କାରାତ୍ମକ ହଂ ଶବ୍ଦ ଓ ବିକାଶାତ୍ମକ ସଃ ଶବ୍ଦ ଜଗତର ସର୍ବପ୍ରାଣୀଙ୍କ ଭିତରେ ଓ ସର୍ବ ବସ୍ତୁରେ ବିଦ୍ୟମାନ।" ଅଧ୍ୟାତ୍ମମୁକ୍ତାବଳୀ

ଉଚ୍ଛ୍ୱାସେ ଚୈବ ନିଶ୍ୱାସେ ହଂସ ଇତ୍ୟକ୍ଷରଦ୍ୱୟମ୍।
ତସ୍ମାତ୍ ପ୍ରାଣସ୍ତୁ ହଂସାତ୍ମା ଆତ୍ମାକାରେଣ ସଂସ୍ଥିତଃ ॥

ଧୃତ ପ୍ରାଣତୋଷିଣୀତନ୍ତ୍ର

ପ୍ରାଣର ଉର୍ଦ୍ଧ୍ୱଗମନ ଓ ନିର୍ଗମନ କାଳରେ ହଂ ସଃ ଏହି ଦୁଇଟି ଅକ୍ଷର ଧ୍ୱନିତ ହୁଏ, ସେଥିପାଇଁ ପ୍ରାଣହିଁ ହଂସ—ଶରୀର ମଧ୍ୟରେ ତାହା ଆତ୍ମାକାରରେ ଅବସ୍ଥିତ ଅଛନ୍ତି।

ପୁଂ ପ୍ରକୃତ୍ୟାତ୍ମକୌ ପ୍ରୋକ୍ତୌ ବନ୍ଦୁସର୍ଗୌ ମନୀଷିଭିଃ ।
ତାଭ୍ୟାଂ କ୍ରମାତ୍ ସମୁଦ୍ଭୂତୌ ବନ୍ଦୁସର୍ଗାବସାନକୌ ॥
ହଂସୌ ତୌ ପୁଂ ପ୍ରକୃତ୍ୟାଖ୍ୟୌ ହଂ ପୁମାନ୍ ପ୍ରକୃତିସ୍ତୁ ସଃ ।
ଅଜପା କଥିତା ତାଭ୍ୟାଂ ଜୀବୋ ଯାମୁପାସ୍ତେ ॥
ଅଧ୍ୟାତ୍ମମୁକ୍ତାବଳୀଧୃତ ନାରଦପଞ୍ଚରାତ୍ର (୫ । ୧୧ । ୧୯ । ୨୧)

ହଂସମନ୍ତ୍ରର ଅନ୍ତର୍ଗତ ହଂମନ୍ତ୍ରକୁ ପୁରୁଷ ଓ "ସ" କୁ ପ୍ରକୃତି ବୁଝାଯାଏ । ଏଇଥିପାଇଁ ହଂସମନ୍ତ୍ରର ଅପର ନାମ ପୁଂପ୍ରକୃତ୍ୟାତ୍ମକ ମନ୍ତ୍ର । ଏହାର ଅପର ନାମ ଅଜପା । ଜୀବ ଏହି ଅଜପାର ଆଶ୍ରୟ ବା ଅବଲମ୍ବନରେ ଅବସ୍ଥିତ । ଏହି ମନ୍ତ୍ର ଅଭ୍ୟାସ କରୁ କରୁ ମନକୁ ଜପ ବନ୍ଦ ହୋଇଯାଏ ଓ ସମାଧିର ଉଦୟ ହୁଏ ।"

(ଅଧ୍ୟାତ୍ମମୁକ୍ତାବଳୀ)

ସକାରେଣ ବହିର୍ଯାତି ହକାରେଣ ବିଶେତ୍ ପୁନଃ ।
ଷଟ୍ଶତାନି ଦିବାରାତ୍ରୌ ସହସ୍ରାଣ୍ୟେକବିଂଶତିଃ ।
ଅଜପା-ନାମ-ଗାୟତ୍ରୀଂ ଜୀବୋ ଜପତି ସର୍ବଦା ॥

(ଅଧ୍ୟାତ୍ମମୁକ୍ତାବଳୀ)

ସକାରରେ ବହିର୍ଗମନ କରେ, ହକାରରେ ପୁନଃ ପ୍ରବେଶ କରେ, ଏକୋଇଶ ହଜାର ଛଅଶହ ଏହି ଅଜପା ଗାୟତ୍ରୀ ଜୀବ ସର୍ବଦା ଜପ କରେ ।

ରାମପ୍ରସାଦ କହିଛନ୍ତି—

ମନ, କି କର ବସିଚ୍ଛେ ।
ଓରେ ହବା ଅବଶେଷ, ଅଜପାର ଶେଷ
କ୍ରମେତେ ନିଶ୍ୱାସ ଯାୟ ଫୁରାଇୟେ ॥
ହଂ ବର୍ଣ୍ଣେ ପୂରକେ ହୟ ସଃ ବର୍ଣ୍ଣେ ରେଚକେ ବୟ
ଅହର୍ନିଶ କରେ ଜପ ହଂସ ହଂସ ବଲିୟେ ॥

ଅଜପା ହଇଲେ ସଙ୍ଗ କୋଥା ରବେ ରସରଙ୍ଗ
ସକଲ ହଇବେ ଭକ୍ତ ଭବାମରେ ନା ଭାବଯେ ॥
ଚଲନେ ଦ୍ୱିଗୁନ କ୍ଷଯ଼ ତତୋଧିକ ନଦ୍ରାଯ଼ ହଯ଼
ଜନଯେ ରାମପ୍ରସାଦ କଯ଼ ତତୋଧିକ ସଂଗମସମଯେ ॥

ଆଚ୍ଛା; ଭୂତଶୁଦ୍ଧି-ତନ୍ତ୍ରୋକ୍ତ ଅଜପାର ଧ୍ୟାନ ଶ୍ରବଣ କର ।
ହଂସ୍ ନିତ୍ୟମନନ୍ତମଗୁଣଂ ସ୍ୱସ୍ୱବତୋ ନିର୍ଗତା ଶକ୍ତି ।
ସ୍ୱାଶ୍ରୟମର୍କକୋଟିରୁଚିରା ଧେଯ଼ା ଜଗନ୍ମୋହିନୀ ॥
ଅଧ୍ୟାତ୍ମମୁକ୍ତାବଳୀଧୃତ

ଅପ୍ରକାଶ୍ୟମିଦଂ ତତ୍ତ୍ୱଂ ପଶୋର୍ଗୋପ୍ୟଂ ସଦା ପ୍ରିୟେ ।
ହୃଦୟେ ମମ ଦେବେଶି ଅଜପା ସମ୍ପୁଟେ ସ୍ଥିତା ।
ସର୍ବ୍ବାସାଂ ନରନାରୀଣାଂ ସମ୍ପୁଟଂ ହଂସପକ୍ଷିଣମ୍ ॥
ଧୃତ ଭୂତଶୁଦ୍ଧି ତନ୍ତ୍ର, ୧୧ ପଟଳ

"ହେ ପାର୍ବ୍ବତି, ଏହି ଅଜପାତତ୍ତ୍ୱ କେବେ ହେଲେ ଅଦୀକ୍ଷିତ ବ୍ୟକ୍ତି ନିକଟରେ ପ୍ରକାଶ କରିବ ନାହିଁ । ଏହା ସର୍ବ୍ବଦା ମୋର ହୃଦୟ ମଧ୍ୟରେ ଅବସ୍ଥିତ । ସମସ୍ତ ନରନାରୀଙ୍କର ହୃଦୟକୋଠରିରେ ଏହି ହଂସପକ୍ଷୀ (ଅର୍ଥାତ୍ ଅଜପା) ବାସ କରୁଅଛି ।"

"ହେ ପାର୍ବ୍ବତି, ଏହି ଅଜପାତତ୍ତ୍ୱ ଅକଥ୍ୟ ଅର୍ଥାତ୍ ଅପ୍ରକାଶ୍ୟ ହେଲେ ମଧ୍ୟ ତୁମ ପ୍ରତି ମୋର ପ୍ରୀତିବଶତଃ ହିଁ ମୁଁ ତୁମକୁ କହୁଅଛି । ଏହି ହଂସ ବୀଜ ବିନ୍ଦୁସ୍ଥାନରେ ଅର୍ଥାତ୍ ଦ୍ୱିଦଳରେ ଅବସ୍ଥିତ; ବିନ୍ଦୁନାଦସମାଯୁକ୍ତ; ଅର୍ଥାତ୍ ଏହି ହଂସମନ୍ତ୍ର ଜପ କରୁ କରୁ ପ୍ରଥମେ ଶୁଭ୍ର ବିନ୍ଦୁବତ୍ ଜ୍ୟୋତିଃ ଓ ପରେ ଅନାହତ ନାଦ ଅନୁଭୂତ ହୁଏ । ଏହି ମନ୍ତ୍ରକୁ ବିପରୀତ ଭାବରେ ଅର୍ଥାତ୍ ସୋଽହଂ ଆକାରରେ ମଧ୍ୟ ଜପ କରାଯାଏ । ହକାରକୁ ପ୍ରାଣ ଏବଂ ସକାରକୁ ଜୀବ କୁହନ୍ତି । ସେଥିପାଇଁ ହଂସମନ୍ତ୍ରକୁ ଜୀବମନ୍ତ୍ର ମଧ୍ୟ କୁହନ୍ତି । ଏହି ମନ୍ତ୍ରର କେବଳ

ମାତ୍ର ଧାରଣା କରିବାକୁ ହୁଏ, ଜପ କରିବାକୁ ହୁଏ ନାହିଁ । ଏଇଥି-ପାଇଁ ଏହାର ନାମ ଅଜପା । ଏହାର ସଙ୍କୋଚାତ୍ମକ ହଂକାରକୁ ଶିବ ଓ ବିସ୍ତାରାତ୍ମକ ସକାରକୁ ଶକ୍ତି କହନ୍ତି । ସେଥିପାଇଁ ଅଜପା ମନ୍ତ୍ରର ଅପର ନାମ ଶିବଶକ୍ତିମନ୍ତ୍ର ।"

(ଅଧ୍ୟାତ୍ମମୁକ୍ତାବଳୀଧୃତ ଭୂତଶୁଦ୍ଧିତନ୍ତ୍ର ୩° ପଟଳ)

ଅଭିଷିଚ୍ୟାମୃତେନୈବ ହଂସ-ହଂସେତି ଯୋ ଜପେତ୍ ।
ଜରା-ମରଣ-ରୋଗାଦି ନ ତସ୍ୟ ଭୁବି ବିଦ୍ୟତେ ॥

ଧୃତ ସୂତସଂହିତା ୭ । ୭ । ୩୪

"ସହସ୍ରାରରୁ ବିଗଳିତ ଅମୃତଦ୍ୱାରା ଅଭିଷେକ କରି ଯେ ହଂସ ମନ୍ତ୍ର ଜପ କରନ୍ତି, ତାଙ୍କର ଜରାମରଣ ଓ ରୋଗ ଆଦି ହୁଏ ନାହିଁ ।" ତୁମେ କଣ ହଂସ କଥା ଆହୁରି ଶୁଣିବାକୁ ଚାହଁ ?

ଶିଷ୍ୟ—କହନ୍ତୁ ଦେବ, "ହଂସ" ମନ୍ତ୍ରର ମହିମା ଶୁଣି ତୃପ୍ତି ହେଉନାହିଁ, ଆହୁରି କୁହନ୍ତୁ ।

ଗୁରୁ—

ପ୍ରଣବାକ୍ସାଦ୍ଭବେତ୍ ହଂସୋ ହଂସ ସୋଽହଂପରେ ଭବେତ୍ ।
ସୋଽହଂ-ଜ୍ଞାନଂ ମହାଜ୍ଞାନଂ ଯୋଗିନାମପି ଦୁର୍ଲଭମ୍ ॥
ନିରନ୍ତରଂ ଭାବୟେଦ୍ ଯଃ ସ ଏବ ପରମୋ ଭବେତ୍ ।
ହଂ ପୁମାନ୍ ଶ୍ୱାସରୂପେଣ ଚନ୍ଦ୍ରେଣ ପ୍ରକୃତିସ୍ତୁ ସଃ ॥
ଏତଦ୍ ହଂସ ବାଜାନାସ୍ୟାତ୍ ସୂର୍ଯ୍ୟମଣ୍ଡଳଭେଦକଃ ॥

ଅଧ୍ୟାତ୍ମମୁକ୍ତାବଳୀଧୃତ ରୁଦ୍ର ଯାମଳତନ୍ତ୍ର ଇତ୍ୟାଦି

"ପ୍ରଣବରୁ ହଂସର ଉତ୍ପତ୍ତି ଏବଂ ବିପରୀତ କ୍ରମରେ ସେହି ସୋଽହଂ ମନ୍ତ୍ରରେ ପରିଣତ ହୁଏ । ସୋଽହଂ ଜ୍ଞାନ ଅର୍ଥାତ୍ ମୁଁ ସେହି ବ୍ରହ୍ମ ଏହି ଜ୍ଞାନହିଁ ଶ୍ରେଷ୍ଠ ଜ୍ଞାନ । ଏହା ଯୋଗୀଗଣଙ୍କ ପକ୍ଷରେ ମଧ୍ୟ ଦୁର୍ଲ୍ଲଭ । ଯେ ସର୍ବଦା ଏହିପରି ଭାବନାପରାୟଣ ହୁଅନ୍ତି ସେହି

ସେ ପରମ ଜ୍ଞାନୀ । ଊର୍ଦ୍ଧ୍ୱଗ ଶ୍ୱାସ ସହିତ ଯେଉଁ ଧ୍ୱନି ଉଠୁଥିତ ହୁଏ ତାହାହିଁ ହଂ, ତାହାର ନାମ ପୁରୁଷ ଏବଂ ଅଧୋଗାମୀ ପ୍ରଶ୍ୱାସ ସହିତ ଯେଉଁ ଧ୍ୱନି ବହିର୍ଗତ ହୁଏ ତାହାହିଁ ସଃ, ଏହାର ନାମ ପ୍ରକୃତି । ଏହାର ନାମହିଁ ହଂସମନ୍ତ୍ର, ଏହାର ସାହାଯ୍ୟରେ ଦ୍ୱିଦଳ ଭେଦ କରି ସହସ୍ରାରକୁ ଯାଇ ହୁଏ । ହଂସମନ୍ତ୍ର ଅଭ୍ୟାସ କରୁ କରୁ ଯେତେବେଳେ "ହ" ଓ "ସ" ଉଭୟେ ଲୁପ୍ତ ହୋଇଯାନ୍ତି, ସେତେବେଳେ ଯାହା ଅବଶିଷ୍ଟ ରହେ ତାହାହିଁ ପ୍ରଣବ । ଯେଉଁମାନେ ଏହି ମନ୍ତ୍ର ସ୍ୱାଧିଷ୍ଠାନରେ ମନଃସନ୍ନିବେଶ କରି ଅଭ୍ୟାସ କରନ୍ତି, ସେମାନେ ସୂର୍ଯ୍ୟମଧ୍ୟଗ, ସୂର୍ଯ୍ୟମଣ୍ଡଳଭେଦକ ହୁଅନ୍ତି । ହଂସହିଁ ସୂର୍ଯ୍ୟ ଏବଂ ସୋଽହଂ ଚନ୍ଦ୍ର । ଦେହ ମଧ୍ୟରେ ଏହିପରି ନିତ୍ୟ ହୁଏ ।"

ଶିଷ୍ୟ—ଭକ୍ତର କଣ "ସୋଽହଂ" ଜ୍ଞାନ ହୁଏ ?

ଗୁରୁ—ଶ୍ରୀ ଭଗବାନ୍ ଗୀତାରେ କହିଛନ୍ତି—

ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।

ଜୀବ ବ୍ରହ୍ମାଂଶ—ତା ହେଲେ ସୋଽହଂ ଜ୍ଞାନ ହେବାରେ ବାଧା କେଉଁଠି ? ଅଗ୍ନିକଣା କଣ ଅଗ୍ନି ନୁହେଁ ? ନାଦମୟୀ କୁଣ୍ଡଳିନୀଶକ୍ତି ଜାଗରିତା ହୋଇ "ସୋଽହଂ" "ସୋଽହଂ" ଗୀତ ଗାଇ ଗାଇ ବ୍ରହ୍ମାନନ୍ଦ-ପାରାବାରରେ ନିମଜ୍ଜିତା ହୁଅନ୍ତି ।

ଶିଷ୍ୟ—ଜୀବର ସ୍ୱରୂପ କଣ ?

ଗୁରୁ—ଶ୍ରୁତିକଣ—

ବାଳାଗ୍ରଶତଭାଗସ୍ୟ ଶତଧା କଳ୍ପିତସ୍ୟ ଚ ।
ଭାଗୋ ଜୀବଃ ସ ବିଜ୍ଞେୟଃ ସ ଚାନନ୍ତ୍ୟାୟ କଳ୍ପତେ ॥

ଶ୍ୱେତାଶ୍ୱତରୋପନିଷତ୍ ୫ । ୯

କେଶାଗ୍ରର ଶତଭାଗର ଏକ ଭାଗକୁ କଳ୍ପନାରେ ଶତଭାଗ କଲେ ଯେତିକି ସୂକ୍ଷ୍ମ ହୁଏ, ଜୀବ ସେହିପରି ଏବଂ ତାହା ଅନନ୍ତ ।

ଶିଷ୍ୟ—ଆଚ୍ଛା, ହଂସ କଥା କୁହନ୍ତୁ ।

ଗୁରୁ—ହଂସ-ହଂସେତି ଯୋ ବ୍ରୂୟାତ୍ ସର୍ବଦା ଶିବ ଏବ ସଃ ।
ସୂତସଂହିତ ୭ । ୭ । ୩୦

"ଯେ ସର୍ବଦା ହଂସମନ୍ତ୍ର ଜପ କରନ୍ତି, ସେ ସ୍ୱୟଂ ଶିବ ।"

ହଂସୌ ତୌ ପୁଂ ପ୍ରକୃତ୍ୟାଖ୍ୟୌ ହଂ ପୁମାନ୍ ପ୍ରକୃତିସ୍ତୁ ସଃ ।
ଅଜପା କଥିତା ତାଭ୍ୟାଂ ଜୀବୋ ଯାମୁପାସ୍ତେ ॥
ଧୃତସାରଦାତିଲକତନ୍ତ୍ର । ୨୫

ମହାନିର୍ବାଣତନ୍ତ୍ରରେ କଥିତ ହୋଇଅଛି—

ସନ୍ନ୍ୟାସପ୍ରଦାନାନନ୍ତରଂ ଗୁରୁଃ ଶିଷ୍ୟସ୍ୟ ଦକ୍ଷିଣେ କର୍ଣ୍ଣେ ବଦେତ୍
ତତ୍ତ୍ୱମସି ମହାପ୍ରାଜ୍ଞ ହଂସଃ ସୋଽହଂ ବିଭାବୟ ।
ନିର୍ମମୋ ନିରହଙ୍କାରଃ ସ୍ୱଭାବେନ ସୁଖଂଚର । ୮ । ୨୭୫

"ଗୁରୁ ଶିଷ୍ୟକୁ ସନ୍ନ୍ୟାସ ପ୍ରଦାନ କରି ତାହାର ଦକ୍ଷିଣ କର୍ଣ୍ଣରେ ହଂସମନ୍ତ୍ର ଦେବେ ଓ କହିବେ,—ଏହି ମନ୍ତ୍ର ବିପରୀତ ଭାବରେ ମଧ୍ୟ ଜପ କରିବ ଓ ଚିନ୍ତା କରିବ—ତୁମେ ହିଁ ସେହି ଆତ୍ମା ଏବଂ ଜଗତର ସର୍ବ ବିଷୟରେ ମମତାପରିଶୂନ୍ୟ ଏବଂ ଦେହାତ୍ମବୋଧରହିତ ହୋଇ ସ୍ୱ ସ୍ୱଭାବରେ ଅବସ୍ଥାନପୂର୍ବକ ପରମ ସୁଖରେ ବିଚରଣ କରିବ ।"

ମୂର୍ତ୍ତିଂ ହଂସାର୍ଦ୍ଧରେଣୈବ ବିନ୍ଦୁଭିନ୍ନେନ କଳ୍ପୟେତ୍ ।
ଅର୍ଦ୍ଧଚନ୍ଦ୍ରକୃତାଟୋପାଂ ସସ୍ୱନାଂ ଭୁବନପ୍ରଭାମ୍ ॥
ଧୃତ ସ୍ୱଚ୍ଛନ୍ଦତନ୍ତ୍ର ୧ । ୩୯

"ଏହି ହଂସମନ୍ତ୍ର ସଶବ୍ଦରେ ଜପ କରୁ କରୁ ସାଧକ ଶୁଭ୍ରଜ୍ୟୋତି ଦର୍ଶନ କରନ୍ତି ।" ଧୃତ ସ୍ୱଚ୍ଛନ୍ଦତନ୍ତ୍ର

ଶରୀରିଣାମଜସ୍ୟାନ୍ତଂ ହଂସତ୍ୱଂ ପାରଦର୍ଶନମ୍ ॥ ୫
ହଂସୋ ହଂସାକ୍ଷରଂ ଚୈତତ୍ କୂଟସ୍ଥଂ ଯତ୍ତଦକ୍ଷରମ୍ ।
ତଦ୍ବିଦ୍ୱାନକ୍ଷରଂ ପ୍ରାପ୍ୟ ଜହ୍ୟାନ୍ମରଣ-ଜନ୍ମନୀ ॥ ୬
ଉତ୍ତରଗୀତା

ଜୀବର ଅବଧିଭୂତ ପରବ୍ରହ୍ମସ୍ୱରୂପତତ୍ତ୍ୱ—ଜୀବର ପରମ ଜ୍ଞାନ ବ୍ରହ୍ମ, ହଂସାକ୍ଷର ଏବଂ ପ୍ରଣବର ସାକ୍ଷୀଭୂତ ଯାହା ଅକ୍ଷର ବୋଲି କଥିତ ହୁଏ । ସେହି ସ୍ୱରୂପ ଜ୍ଞାତ ହୋଇ—ସେହି ଅକ୍ଷର ବସ୍ତୁ ଲାଭ କରି—ଜନନମରଣପ୍ରବାହରୂପ ସଂସାର ତ୍ୟାଗ କରିବ ।

ଶିଷ୍ୟ—ଏହି ହଂସ ମନ୍ତ୍ର କିଏ ସମସ୍ତେ ଉପାସନା କରନ୍ତି ?

ଗୁରୁ—ଗୁରୁଦତ୍ତ ଇଷ୍ଟମନ୍ତ୍ର ଜପ କରୁ କରୁ କାହାରି ସ୍ୱତଃ ହଂସମନ୍ତ୍ର ଉପସ୍ଥିତ ହୁଏ—କପରି ଭାବରେ ହୁଏ, ତାହା ବୁଝି ପାରନ୍ତି ନାହିଁ । କୌଣସି ଶିଷ୍ୟକୁ ଗୁରୁ ହଂସମନ୍ତ୍ର ଦାନ କରନ୍ତି । କୁଣ୍ଡଳିନୀ ଜାଗରିତା ହୋଇ ଗୀତ ଗାଇ ଗାଇ ମସ୍ତକକୁ ଉଠି ଅଜସ୍ର "ସୋଽହଂ" "ସୋଽହଂ" ଧ୍ୱନି କରିବାରେ ଲାଗନ୍ତି । ସାଧକର ଏପରି ଶକ୍ତି ନାହିଁ ଯେ, ସେ ଶକ୍ତି ବନ୍ଦ କରିପାରିବ । ହଂସ ହଂସ ମନ୍ତ୍ର ଜପଦ୍ୱାରା ମଧ୍ୟ କାହାରି କାହାରି କୁଣ୍ଡଳିନୀ ଜାଗରିତା ହୁଅନ୍ତି ।

ଅଶିରସ୍କଂ ହକାରାନ୍ତମଶେଷାକାରସଂସ୍ଥିତମ୍ ।
ଅଜସ୍ରମ୍ ଉଚ୍ଚରନ୍ତଂ ସ୍ୱଂ ତମାତ୍ମାନମୁପାସ୍ମହେ ॥

ଅଧ୍ୟାତ୍ମମୁକ୍ତାବଳୀଧୃତ ଯୋଗବାଶିଷ୍ଠ ୫ । ୮ । ୧୩

"ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତ ଅନନ୍ତ ଆକାରରେ ପରମାତ୍ମାଙ୍କର ଅବସ୍ଥାନ, ଅଜସ୍ର ହଂସମନ୍ତ୍ର ଉଚ୍ଚାରଣ କରି ଆମେ ତାଙ୍କର ଉପାସନା କରୁ ।" ଅଧ୍ୟାତ୍ମମୁକ୍ତାବଳୀଧୃତ ଯୋଗବାଶିଷ୍ଠ

ଊର୍ଦ୍ଧ୍ୱଂ ପ୍ରାଣୋହ୍ୟଧୋ ଜୀବୋ ବିସର୍ଗାତ୍ମା ପରୋଚ୍ଚରେତ୍ ।
ଉତ୍ପତ୍ତିଦ୍ୱିତୟସ୍ଥାନେ ଭରଣାଦ୍ ଭରିତା ସ୍ଥିତିଃ ॥

ଧୃତ ବିଜ୍ଞାନଭୈରବତନ୍ତ୍ର

"ପ୍ରାଣବାୟୁ ଊର୍ଦ୍ଧ୍ୱକୁ ଓ ଅପାନ ବାୟୁ ନିମ୍ନକୁ ଗମନ କରୁଅଛି । ଏହି ଉଭୟ ବାୟୁର ଗମନାଗମନ ଦ୍ୱାରା ହକାର ଓ ସକାର ଶବ୍ଦ ସ୍ୱଭାବତଃ ଉତ୍ପନ୍ନ ହେଉଅଛି । ବିସର୍ଗହିଁ ଆତ୍ମା । ଏହି ଅକ୍ଷର-

ଗୁରୁଙ୍କର ସଂଯୋଗରେ ଯେଉଁ ହଂସମନ୍ତ୍ର ଉଦ୍ଧୃତ ହୁଏ, ତାହା ନିରନ୍ତର ଉଚ୍ଚାରଣ ଓ ଧାରଣା କରିବ । ଶବ୍ଦୋତ୍ପତ୍ତିର ହିଁ ସ୍ଥାନ ଓଁକାର ବା ଦ୍ୱିଦଳରେ ଧାରଣା ସ୍ଥିର ହେଲେ ସାଧକର ପୂର୍ଣ୍ଣ ବ୍ରହ୍ମଜ୍ଞାନ ଜନ୍ମିବ ।" ଧୃତ ବିଜ୍ଞାନଭୈରବତନ୍ତ୍ର

ଯୋ ଦଦାତି ମହାବିଦ୍ୟାଂ ହଂସାଖ୍ୟାଂ ପାରମେଶ୍ୱରୀମ୍
ତସ୍ୟ ଦାସ୍ୟଂ ସଦା କୁର୍ଯ୍ୟାତ୍ ଶ୍ରଦ୍ଧୟା ପରୟାସହ ॥
ଶୁଭମଶୁଭମନ୍ୟଦ୍ୱା ଯଦୁକ୍ତଂ ଗୁରୁଣା ଭୁବି ।
ତତ୍ କୁର୍ଯ୍ୟାଦବିଚାରେଣ ଶିଷ୍ୟଃ ସନ୍ତୋଷସଂଯୁତଃ ॥ ଇତ୍ୟାଦି

ଅଧ୍ୟାତ୍ମମୁକ୍ତାବଳୀଧୃତ ସୂତସଂହିତା ୭ । ୭। ୩୮

"ଯେଉଁ ଗୁରୁ ହଂସବିଦ୍ୟା ପ୍ରଦାନ କରନ୍ତି, ତାଙ୍କର ଦାସ ହୋଇ ରହିବା ଶିଷ୍ୟର କର୍ତ୍ତବ୍ୟ । ଗୁରୁ ଶିଷ୍ୟକୁ ଯେଉଁ ବାକ୍ୟ କହନ୍ତି, ତାହା ଶିଷ୍ୟର ଜ୍ଞାନ ଅନୁସାରେ ଶୁଭ ହେଉ ଅଥବା ଅନ୍ୟ କୌଣସି ପ୍ରକାର ହେଉ, ଶିଷ୍ୟ ତାହା ଅବିଚାରରେ ସନ୍ତୁଷ୍ଟ ଚିତ୍ତରେ ପ୍ରତିପାଳନ କରିବେ । ଗୁରୁଙ୍କ ନିକଟରୁ ହଂସବିଦ୍ୟା ଲଭ କରି ଗୁରୁଶୁଶ୍ରୂଷାପରାୟଣ ହୋଇ ହଂସବିଦ୍ୟାର ଅଭ୍ୟାସ ଓ ଆତ୍ମ-ଜ୍ଞାନର ବିଚାର ଦ୍ୱାରା ନିଜକୁ ସେହି ପରମବ୍ରହ୍ମ ବୋଲି ଦୃଢ଼ ଜ୍ଞାନ କରିବ ଏବଂ ଦେହ ସମ୍ବନ୍ଧ, ଜାତିକୁଳ ପ୍ରଭୃତିର ସମ୍ବନ୍ଧ, ବେଦ ଓ ଅନ୍ୟାନ୍ୟ ଶାସ୍ତ୍ର ଆଦି ସ୍ୱକୀୟ ପଦଧୂଳି ପରି ତ୍ୟାଗ କରିବ ।"

ଅଧ୍ୟାତ୍ମମୁକ୍ତାବଳୀଧୃତ ସୂତସଂହିତା

ଶିଷ୍ୟ—ସବୁ ଶାସ୍ତ୍ର ତ୍ୟାଗ କରିବାକୁ ହେବ ?

ଗୁରୁ—ହଁ, ବେଦାନ୍ ଶାସ୍ତ୍ରାଣି ଗ୍ରନ୍ଥାନ୍ ପାଦପାଂଶୁମିବ ତ୍ୟଜେତ୍ । ଏ ହେଲା ଚରମ କଥା । ସେହି ଜୀବନ୍ମୁକ୍ତ ପୁରୁଷ ଭୂଯସ୍ତାଖିତ ଓଙ୍କାରନାଦରେ ପୂର୍ଣ୍ଣ ହୋଇଥାନ୍ତି, ଅନ୍ୟ କିଛି ପାଠ କରିବାର ସାମର୍ଥ୍ୟ ପର୍ଯ୍ୟନ୍ତ ଆଉ ନ ଥାଏ ।

ସୋଽହଂ ହଂସେତି ପଶ୍ୟନ୍ତି ଜୀବନ୍ମୁକ୍ତଃ ସ ଉଚ୍ୟତେ ।
ଜୀବନ୍ମୁକ୍ତିଗୀତା

ଯେ ହଂସମନ୍ତ୍ର ଦ୍ୱାରା ସୋଽହଂ ଜ୍ଞାନ ଲାଭ କରିବାକୁ ସମର୍ଥ ହୁଅନ୍ତି ସେ ଜୀବନ୍ମୁକ୍ତ ।

ହଂସଃ ପରଂବ୍ରହ୍ମରୂପଃ । (ପ୍ରାଣତୋଷିଣୀତନ୍ତ୍ର)

ହଂସ ପରବ୍ରହ୍ମରୂପ ।

ଆତ୍ମନଃ ପରମଂ ବୀଜଂ ହଂସାଖ୍ୟଂ ସ୍ଫଟିକାମଳମ୍
ଗରୁଡ଼ପୁରାଣ ପୂର୍ବ ୧୯ । ୧୨

ଆତ୍ମାର ସ୍ଫଟିକୋପମ ନିର୍ମଳ ବୀଜ ହଂସ । ବେଶୀ କଣ କହିବି—

ହଂସବିଦ୍ୟାମବିଜ୍ଞାୟ ମୁକ୍ତୌ ଯତ୍ନଂ କରୋତି ଯଃ ।
ସ ନଭୋଭକ୍ଷଣେନୈବ କ୍ଷୁନ୍ନିବୃତ୍ତିଂ କରିଷ୍ୟତି ॥
ସୂତସଂହିତା ୭ । ୭। ୨୭

ହଂସମନ୍ତ୍ର ନ ଜାଣି ଯେ ମୁକ୍ତି ଇଚ୍ଛା କରନ୍ତି, ଆକାଶ ଭକ୍ଷଣ କରି କ୍ଷୁଧା ନିବୃତ୍ତି କଲା ପରି ତାଙ୍କର ସେ ଚେଷ୍ଟା ବୃଥା ହୁଏ ।

ଶିଷ୍ୟ—ମୁଁ ହଂସ ମନ୍ତ୍ରର ମହିମା ଶୁଣି କୃତାର୍ଥ ହେଲି ।

---

ଓଁ ୭ ଶ୍ରୀଶ୍ରୀଗୁରବେ ନମଃ

ଶ୍ରୀମତେ ରାମାନୁଜାୟ ନମଃ ଶ୍ରୀମତେ ରାମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ ।

# ଶ୍ରୀଶ୍ରୀନାଦଲୀଳାମୃତ

## ପଞ୍ଚମ ହିଲ୍ଲୋଳ

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ ।
ବସୁନ୍ଧରା-ବାରି-ବିମାନ ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ୱେନ ସଦୋଦିତାୟ
ପୂର୍ଣ୍ଣାୟ ଚିଦ୍‌ବିଳାସ-ବିଳାସାୟ ଓଁକାରାୟ ନମଃ ।
ଯୋ ଗୂଢ଼ଃ ସର୍ବଭୂତେଷୁ ସର୍ବଭୂତାନି ଶାସ୍ତି ଯଃ ।
ସର୍ବଭୂତ-ସ୍ୱରୂପୀ ତ ଓଁକାରଂ ତଂ ନମାମ୍ୟହମ୍ ॥

ଗୁରୁ—ମୈତ୍ରାୟଣୀ ଶ୍ରୁତିରେ କଥିତ ହୋଇଅଛି—

ଯୋଽୟମନ୍ତଃ ପୁରୁଷୋ ଯେନେଦମନ୍ନଂ ପଚ୍ୟତେ ଯଦିଦମଦ୍ୟତେ ତସ୍ୟୈବ ଘୋଷୋ ଭବତି ଯଦେତତ୍‌ କର୍ଣ୍ଣାବପିଧାୟ ଶୃଣୋତି ସ ଯଦୋତ୍କ୍ରମିଷ୍ୟନ୍‌ ଭବତି ନୈନଂ ଘୋଷଂ ଶୃଣୋତି ।

ଏହି ଦେହାଭ୍ୟନ୍ତରରେ ଏହି ଯେଉଁ ପୁରୁଷ, ଯେ ଅନ୍ନ ପାକ କରନ୍ତି, ଯାହା ସେ ଭୋଜନ କରନ୍ତି—ତାଙ୍କର ଘୋଷ ଯାହା କର୍ଣ୍ଣ ଆଚ୍ଛାଦନ କଲେ ଶ୍ରୁତିଗୋଚର ହୁଏ, ମୃତ୍ୟୁକାଳ ସମାଗତ ହେଲେ ତାହା ଆଉ ଶୁଣାଯାଏ ନାହିଁ ।

ଶିଷ୍ୟ—ଶ୍ରବଣର ଫଳ ସେ କିଛି କହିଲେ ନାହିଁ ।

ଗୁରୁ—ନା ତେଜୋବିନ୍ଦୁ ଉପନିଷଦରେ ଅଛି:—

(ପଞ୍ଚମ ଅଧ୍ୟାୟ)

ସର୍ବସଙ୍କଳ୍ପରହିତଃ ସର୍ବନାଦମୟଃ ଶିବଃ ।
ସର୍ବବର୍ଜିତଚିନ୍ମାତ୍ରଃ ସର୍ବାନନ୍ଦମୟଃ ପରଃ ॥ ୨ ॥
ସର୍ବତେଜଃପ୍ରକାଶାତ୍ମା ନାଦାନନ୍ଦମୟାତ୍ମକଃ ।
ସର୍ବାନୁଭବନିର୍ମୁକ୍ତଃ ସର୍ବଧ୍ୟାନବିବର୍ଜିତଃ ॥ ୩ ॥
ସର୍ବନାଦକଳାତୀତ ଏଷ ଆତ୍ମାହମବ୍ୟୟଃ ।
ଆତ୍ମାନାତ୍ମବିବେକାଦିଭେଦାଭେଦବିବର୍ଜିତଃ ॥ ୪ ।
ଶାନ୍ତାଶାନ୍ତାଦିହୀନାତ୍ମା ନାଦାନ୍ତଜ୍ୟୋତିରୂପକଃ ।
ମହାବାକ୍ୟାର୍ଥତୋ ଦୂରେ ବ୍ରହ୍ମାସ୍ମୀତ୍ୟତିଦୂରତଃ ॥ ୫ ॥
ତଚ୍ଛବ୍ଦବର୍ଜ୍ୟସ୍ତ୍ୱଂଶବ୍ଦହୀନୋ ବାକ୍ୟାର୍ଥବର୍ଜିତଃ ।
କ୍ଷରାକ୍ଷରବିହୀନୋ ଯୋ ନାଦାନ୍ତର୍ଜ୍ୟୋତିରେବ ସଃ ॥ ୬ ॥
ଅଖଣ୍ଡୈକରସୋ ବାହମାନନ୍ଦୋଽସ୍ମୀତିବର୍ଜିତଃ ।
ସର୍ବାତୀତସ୍ୱଭାବାତ୍ମା ନାଦାନ୍ତର୍ଜ୍ୟୋତିରେବ ସଃ ॥ ୭ ॥

* * * *

ସର୍ବନାଦାନ୍ତଗୋଽସି ତ୍ୱଂ କଳାକାଷ୍ଠାଦିବର୍ଜିତଃ ॥ ୭୧

ସମସ୍ତ ସଂକଳ୍ପରହିତ, ସବୁ ନାଦମୟ, ଶିବ, ସର୍ବବର୍ଜିତ, ଚିନ୍ମାତ୍ର, ସର୍ବ ଆନନ୍ଦମୟ, ପରପ୍ରଣବ, ସର୍ବତେଜ, ପ୍ରକାଶାତ୍ମା, ନାଦାନନ୍ଦମୟାତ୍ମକ, ସର୍ବଅନୁଭବନିର୍ମୁକ୍ତ, ସର୍ବଧ୍ୟାନ-ବିବର୍ଜିତ,

ସର୍ବନାଦକଳାଖଣ୍ଡ—ଏହି ଅବ୍ୟଯ୍ୟ ଆତ୍ମା ମୁଁ, ଆତ୍ମ-ଅନାତ୍ମ-ବିବେକ ଆଦି ଭେଦ-ଅଭେଦ-ବର୍ଜିତ । ଶାନ୍ତ ଅଶାନ୍ତ ଆଦି ବିହୀନ ଆତ୍ମା, ନାଦମଧ୍ୟଗତ ଜ୍ୟୋତିଃସ୍ୱରୂପ, ତତ୍ତ୍ୱମସି ପ୍ରଭୃତି ମହାବାକ୍ୟ-ଠାରୁ ଦୂରରେ, ବ୍ରହ୍ମାସ୍ମି ଏହି ମହାବାକ୍ୟଠାରୁ ଅତି ଦୂରରେ, ତତ୍‌ଶବ୍ଦବର୍ଜିତ, ତ୍ୱଂ ଶବ୍ଦହୀନ, ବାକ୍ୟାର୍ଥବର୍ଜିତ । କ୍ଷରଅକ୍ଷରବିହୀନ ନାଦ-ମଧ୍ୟଗତ ଜ୍ୟୋତିହିଁ ସେ ଅର୍ଥାତ୍ ଆତ୍ମା । ଅଖଣ୍ଡ ଏକରସ ବା—ଅହମ୍ ଆନନ୍ଦ ଅସ୍ମି—ମୁଁ ଆନନ୍ଦସ୍ୱରୂପ—ଏ ବୋଧବର୍ଜିତ, ସବୁକିଛିର ଅତୀତ ସ୍ୱଭାବ ଆତ୍ମା, ନାଦମଧ୍ୟଗତ ଜ୍ୟୋତି ହିଁ ସେ ।

ଶିଷ୍ୟ—ବ୍ରହ୍ମାସ୍ମି ତତ୍ ତ୍ୱଂ ହୀନ—ଏହାର ଅର୍ଥ କଣ ?

ଗୁରୁ—ଯେ ପର୍ଯ୍ୟନ୍ତ ବ୍ରହ୍ମାସ୍ମି ବା ତତ୍ତ୍ୱମସି ଇତ୍ୟାଦି ବିଗ୍ଭର ବା ବୋଧ ଥାଏ, ସେ ପର୍ଯ୍ୟନ୍ତ 'ମୁଁ' ବୋଧ ଯାଏ ନାହିଁ, ଯିନିବାଶ ଅହଂଜ୍ଞାନର ଲୋପ ହୋଇଗଲେ, "ମୁଁ ଅଛି" ଏ ଭାବ ମଧ୍ୟ ଦୂର ହୋଇଗଲେ, ତେବେ ଯାଇ ସ୍ୱ-ସ୍ୱରୂପ ଲାଭ ହୁଏ ।

ଶିଷ୍ୟ—ନାଦମଧ୍ୟଗତ ଜ୍ୟୋତି ଆତ୍ମା କହିଲେ, ସେତେ-ବେଳକୁ ନାଦ ଶ୍ରୁତ ଥାଏ ତ ?

ଗୁରୁ—ନା, ନାଦ ଶୁଣୁ ଶୁଣୁ ଜ୍ୟୋତିର ଆବିର୍ଭାବ ହେଲେ ଅହଂଜ୍ଞାନର ସମ୍ପୂର୍ଣ୍ଣ ଲୋପ ହୋଇଯାଏ । ସେତେବେଳେ କେବଳ ଜ୍ୟୋତି ହିଁ ରହେ । ସର୍ବନାଦକଳାଖଣ୍ଡ ଭାବରେ ସ୍ଥିତ ଲାଭ ହୁଏ—ସେତେବେଳେ ଦ୍ରଷ୍ଟା ଦର୍ଶନ ଦୃଶ୍ୟ, ଏହି ତ୍ରିପୁଟିର ଲୟ ହୋଇ-ଯାଏ । ଏହା ଅନିର୍ବଚନୀୟ ସ୍ଥିତି । "ଧ୍ୟାନସ୍ୟ ବିସ୍ମୃତିଃ ସମ୍ୟକ୍ ସମାଧିରଭିଧୀୟତେ"—ଏହାହିଁ ସମାଧି ।

"କଳାକାଷ୍ଠାଦିଶୂନ୍ୟ ତୁମେ ସମସ୍ତ ନାଦମଧ୍ୟଗତ ଜ୍ୟୋତିଃ-ସ୍ୱରୂପ ।"

ଶିଷ୍ୟ—ନାଦର କେତୋଟି ଭୂମି ?

ଗୁରୁ—ପ୍ରତ୍ୟାହାରଧାରଣାଧ୍ୟାନସମାଧେର୍ନାଦଭୂମିରୁଦାହୃତା ।
ପ୍ରତ୍ୟାହାର ଧାରଣା ଧ୍ୟାନ ସମାଧି ଏହି ଚାରୋଟି ନାଦର ଭୂମି ।

ଆଚ୍ଛା ଶୁଣ,—ନାଦବିନ୍ଦୁ ଶ୍ରୁତି କହୁଛନ୍ତି—
ତତଃ କାଲବଶାଦେବ ପ୍ରାରବ୍ଧେ ତୁ କ୍ଷୟଂ ଗତେ ॥ ୨୯
ବ୍ରହ୍ମପ୍ରଣବସନ୍ଧାନଂ ନାଦୋ ଜ୍ୟୋତିର୍ମୟଃ ଶିବଃ ।
ସ୍ୱୟମାବିର୍ଭବେଦାତ୍ମା ମେଘାପାୟେଽଂଶୁମାନିବ ॥ ୩୦
ସିଦ୍ଧାସନେ ସ୍ଥିତୋ ଯୋଗୀ ମୁଦ୍ରାଂ ସନ୍ଧାୟ ବୈଷ୍ଣବୀଂ ।
ଶୃଣୁୟାଦ୍ଦକ୍ଷିଣେ କର୍ଣ୍ଣେ ନାଦମନ୍ତର୍ଗତଂ ସଦା ॥ ୩୧
[ଅନ୍ତର୍ଲକ୍ଷ୍ୟଂ ବହିର୍ଦ୍ଦୃଷ୍ଟି ନିମେଷୋନ୍ମେଷବର୍ଜିତା ।
ଏଷା ସା ବୈଷ୍ଣବୀ ମୁଦ୍ରା ସର୍ବତନ୍ତ୍ରେଷୁ ଗୋପିତା ॥
ଶାଣ୍ଡିଲ୍ୟଶ୍ରୁତିଃ ୧୪]

ଅଭ୍ୟସ୍ୟମାନୋ ନାଦୋଽୟଂ ବାହ୍ୟମାବୃଣୁତେ ଧ୍ୱନିଃ ।
ପକ୍ଷାଦ୍ ବିପକ୍ଷମଖିଳଂ ଜିତ୍ୱା ତୁର୍ଯ୍ୟପଦଂ ବ୍ରଜେତ୍ ॥ ୩୨
ଶ୍ରୂୟତେ ପ୍ରଥମାଭ୍ୟାସେ ନାଦୋ ନାନାବିଧୋ ମହାନ୍ ।
ବର୍ଦ୍ଧମାନେ ତଥାଭ୍ୟାସେ ଶ୍ରୂୟତେ ସୂକ୍ଷ୍ମ-ସୂକ୍ଷ୍ମତଃ ॥ ୩୩

ଆଦୌ ଜଲଧି-ଜୀମୂତ-ଭେରୀ-ନିର୍ଝରସମ୍ଭବଃ ।
ମଧ୍ୟେ ମର୍ଦ୍ଦଳଶବ୍ଦାଭୌ ଘଣ୍ଟାକାହଳଜସ୍ତଥା ॥ ୩୪
ଅନ୍ତେ ତୁ କିଙ୍କିଣୀ-ବଂଶ-ବୀଣା-ଭ୍ରମର-ନିସ୍ୱନଃ ।
ଇତି ନାନାବିଧା ନାଦାଃ ଶ୍ରୂୟନ୍ତେ ସୂକ୍ଷ୍ମ ସୂକ୍ଷ୍ମତଃ ॥ ୩୫
ମହତି ଶ୍ରୂୟମାଣେ ତୁ ମହାଭେର୍ଯ୍ୟାଦିକଧ୍ୱନୌ ।
ତତ୍ର ସୂକ୍ଷ୍ମଂ ସୂକ୍ଷ୍ମତରଂ ନାଦମେବ ପରାମୃଶେତ୍ ॥ ୩୬

ଘନମୁତ୍ସୃଜ୍ୟ ବା ସୂକ୍ଷ୍ମେ ସୂକ୍ଷ୍ମମୁତ୍ସୃଜ୍ୟ ବା ଘନେ ।
ରମମାଣମପି କ୍ଷିପ୍ରଂ ମନୋ ନାନ୍ୟତ୍ର ଚାଳୟେତ୍ ॥ ୩୭
ଯତ୍ର କୁତ୍ରାପି ବା ନାଦେ ଲଗତି ପ୍ରଥମଂ ମନଃ ।
ତତ୍ର ତତ୍ର ସ୍ଥିରୀଭୂତ୍ୱା ତେନ ସାର୍ଦ୍ଧଂ ବିଲୀୟତେ ॥ ୩୮
ବିସ୍ମୃତ୍ୟ ସକଳଂ ବାହ୍ୟଂ ନାଦେ ଦୁଗ୍ଧାମ୍ବୁବନ୍ମନଃ ।
ଏକୀଭୂୟାଥ ସହସା ଚିଦାକାଶେ ବିଲୀୟତେ ॥ ୩୯
ଉଦାସୀନସ୍ତତୋ ଭୂତ୍ୱା ସଦାଭ୍ୟାସେନ ସଂଯମୀ ।
ଉନ୍ମନୀକାରକଂ ସଦ୍ୟୋ ନାଦମେବାବଧାରୟେତ୍ ॥ ୪୦
ସର୍ବଚିନ୍ତାଂ ସମୁତ୍ସୃଜ୍ୟ ସର୍ବଚେଷ୍ଟାବିବର୍ଜ୍ଜିତଃ ।
ନାଦମେବାନୁସନ୍ଧାନାନ୍ନାଦେ ଚିତ୍ତଂ ବିଲୀୟତେ ॥ ୪୧
ମକରନ୍ଦଂ ପିବନ୍ ଭୃଙ୍ଗୋ ଗନ୍ଧାନ୍ନାପେକ୍ଷତେ ଯଥା ।
ନାଦାସକ୍ତଂ ସଦା ଚିତ୍ତଂ ବିଷୟଂ ନହିକାଙ୍କ୍ଷତି ॥ ୪୨
ବଦ୍ଧଃ ସୁନାଦଗନ୍ଧେନ ସଦ୍ୟଃ ସନ୍ତ୍ୟକ୍ତ ଚାପଳଃ ।
ନାଦଗ୍ରହଣତଶ୍ଚିତ୍ତମନ୍ତରଙ୍ଗଭୁଜଙ୍ଗମଃ ॥ ୪୩
ବିସ୍ମୃତ୍ୟ ବିଶ୍ୱମେକାଗ୍ରଃ କୁତ୍ରଚିନ୍ନହି ଧାବତି ।
ମନୋମତ୍ତଗଜେନ୍ଦ୍ରସ୍ୟ ବିଷୟୋଦ୍ୟାନଚାରିଣଃ ॥ ୪୪
ନିୟାମନସମର୍ଥୋଽୟଂ ନିନାଦୋ ନିଶିତାଙ୍କୁଶଃ ।
ନାଦୋଽନ୍ତରଙ୍ଗସାରଙ୍ଗବନ୍ଧନେ ବାଗୁରାୟତେ ॥ ୪୫
ଅନ୍ତରଙ୍ଗସମୁଦ୍ରସ୍ୟ ରୋଧେ ବେଳାୟତେଽପି ବା ।
ବ୍ରହ୍ମପ୍ରଣବସଂଲଗ୍ନନାଦୋ ଜ୍ୟୋତିର୍ମୟାତ୍ମକଃ ॥ ୪୬
ମନସ୍ତତ୍ର ଲୟଂ ଯାତି ତଦ୍ୱିଷ୍ଣୋଃ ପରମଂ ପଦମ୍ ।
ତାବଦାକାଶସଂକଳ୍ପୋ ଯାବଚ୍ଛବ୍ଦଃ ପ୍ରବର୍ତ୍ତତେ ॥ ୪୭
ନିଃଶବ୍ଦଂ ତତ୍ ପରଂବ୍ରହ୍ମ ପରମାତ୍ମା ସମୀୟତେ ।
ନାଦୋ ଯାବନ୍ମନସ୍ତାବନ୍ନାଦାନ୍ତେଽପି ମନୋନ୍ମନୀ ॥ ୪୮

[ମାରୁତେ ମଧ୍ୟସଞ୍ଚାରେ ମନଃସ୍ଥୈର୍ଯ୍ୟଂ ପ୍ରଜାୟତେ ।
ଯୋ ମନଃ ସୁସ୍ଥିରୋ ଭବୋ ସୈବାବସ୍ଥା ମନୋନ୍ମନୀ ॥ ୧୦
ଶାଣ୍ଡିଲ୍ୟଶ୍ରୁତି]

ସଶବ୍ଦଶ୍ଚାକ୍ଷରେ କ୍ଷୀଣେ ନିଃଶବ୍ଦଂ ପରମଂ ପଦମ୍ ।
ସଦା ନାଦାନୁସନ୍ଧାନାତ୍ ସଂକ୍ଷୀଣା ବାସନା ତୁ ଯା ॥ ୪୯
ନିରଞ୍ଜନେ ବିଲୀୟେତେ ମନୋବାୟୂ ନ ସଂଶୟଃ ।
ନାଦକୋଟିସହସ୍ରାଣି ବିନ୍ଦୁକୋଟି ଶତାନି ଚ ॥ ୫୦
ସର୍ବେ ତତ୍ର ଲୟଂ ଯାନ୍ତି ବ୍ରହ୍ମ-ପ୍ରଣବ-ନାଦକେ ।
ସର୍ବାବସ୍ଥାବିନିର୍ମୁକ୍ତଃ ସର୍ବଚିନ୍ତାବିବର୍ଜିତଃ ॥ ୫୧
ମୃତବତ୍ତିଷ୍ଠତେ ଯୋଗୀ ସ ମୁକ୍ତୋ ନାତ୍ର ସଂଶୟଃ ।
ଶଙ୍ଖଦୁନ୍ଦୁଭିନାଦଞ୍ଚ ନ ଶୃଣୋତି କଦାଚନ ॥ ୫୨
କାଷ୍ଠବଜ୍ଜାୟତେ ଦେହ ଉନ୍ମନ୍ୟାବସ୍ଥୟା ଧ୍ରୁବମ୍ ।
ନ ଜାନାତି ଚ ଶୀତୋଷ୍ଣଂ ନ ଦୁଃଖଂ ନ ସୁଖଂ ତଥା ॥ ୫୩
ନ ମାନଂ ନାବମାନଞ୍ଚ ସନ୍ତ୍ୟକ୍ତ୍ୱା ତୁ ସମାଧିନା ।
ଅବସ୍ଥାତ୍ରୟମନ୍ୱେତି ନ ଚିତ୍ତଂ ଯୋଗିନଃ ସଦା ॥ ୫୪
ଜାଗ୍ରନ୍ନିଦ୍ରାବିନିର୍ମୁକ୍ତଃ ସ୍ୱରୂପାବସ୍ଥତାମିୟାତ୍ ॥ ୫୫

ଦୃଷ୍ଟିଃ ସ୍ଥିରା ଯସ୍ୟ ବିନା ସଦୃଶ୍ୟଂ
ବାୟୁଃ ସ୍ଥିରୋ ଯସ୍ୟ ବିନା ପ୍ରଯତ୍ନମ୍ ।
ଚିତ୍ତଂ ସ୍ଥିରଂ ଯସ୍ୟ ବିନାବଲମ୍ବଂ
ସ ବ୍ରହ୍ମତାରାନ୍ତରନାଦରୂପଃ ॥ ୫୬

ଅନନ୍ତର କାଳବଶରେ ପ୍ରାରବ୍ଧ କ୍ଷୟ ହୋଇଗଲେ ମେଘ ଅପସାରିତ ହେଲେ ସୂର୍ଯ୍ୟ ପରି ବ୍ରହ୍ମପ୍ରଣବ ସଂଲଗ୍ନ ଜ୍ୟୋତିର୍ମୟ କଲ୍ୟାଣନିଧାନ ନାଦ ଆତ୍ମା ସ୍ୱୟଂ ଆବିର୍ଭୂତ ହୁଅନ୍ତି । ଯୋଗୀ ସିଦ୍ଧାସନରେ ଉପବିଷ୍ଟ ହୋଇ ନାସାଗ୍ରରେ ଦୃଷ୍ଟି ସଂସ୍ଥାପନ ପୂର୍ବକ

ଦକ୍ଷିଣ କର୍ଣ୍ଣରେ ଅନ୍ତର୍ଗତ ନାଦ ସର୍ବଦା ଶ୍ରବଣ କରନ୍ତୁ । ପୁନଃ ପୁନଃ ନାଦ ଚିନ୍ତା କରୁ କରୁ ଏହି ନାଦ ବାହ୍ୟ ଶବ୍ଦକୁ ଆବରଣ କରେ । ଏକପକ୍ଷ ମଧ୍ୟରେ ସମସ୍ତ ବିକ୍ଷେପକୁ ଜୟ କରି ମନ ତୁର୍ଯ୍ୟ-ପଦକୁ ଗମନ କରିଥାଏ । ପ୍ରଥମ ଅଭ୍ୟାସ କାଳରେ ନାନାବିଧ ମହାନ୍ ନାଦ ଶ୍ରୁତିଗୋଚର ହୁଏ । ଅଭ୍ୟାସ ବୃଦ୍ଧିଶୀଳ ହେଲେ ସୂକ୍ଷ୍ମରୁ ସୂକ୍ଷ୍ମତର ନାଦ ଶ୍ରୁତିଗୋଚର ହୁଏ । ପ୍ରଥମେ, ଅର୍ଥାତ୍ ବାୟୁର ବ୍ରହ୍ମରନ୍ଧ୍ରକୁ ଗମନ ସମୟରେ ସମୁଦ୍ର ମେଘ ଭେରୀ (ଢ୍ରମ୍) ନିର୍ଝର (ଝରଣା) ଶବ୍ଦ ପରି ଏବଂ ମଧ୍ୟରେ, ଅର୍ଥାତ୍ ବ୍ରହ୍ମରନ୍ଧ୍ରରେ ବାୟୁର ସ୍ଥୈର୍ଯ୍ୟାବସ୍ଥା ହେଲେ, ମାଦଳ ଘଣ୍ଟା କାହାଳୀ ବଡ଼ ଢୋଲ ଶବ୍ଦ ପରି ଓ ଶେଷରେ ଅର୍ଥାତ୍ ବ୍ରହ୍ମରନ୍ଧ୍ରରେ ପ୍ରାଣବାୟୁ ସ୍ଥିରତା ଲାଭ କରି ପାରିଲେ, କିଙ୍କିଣୀ ଘୁଙ୍ଗୁର ବେଣୁ ବୀଣା (ତନ୍ତ୍ରୀ) ଭ୍ରମର ଧ୍ୱନି—ଏହିପରି ସୂକ୍ଷ୍ମରୁ ସୂକ୍ଷ୍ମତର ନାଦ ଶ୍ରୁତିଗୋଚର ହୋଇଥାଏ । ଭେରୀ ପ୍ରଭୃତି ମହାନ୍ ଶବ୍ଦ ଶ୍ରୂୟମାଣ ହେଲେ ସେହି ନାଦ ମଧ୍ୟରେ ସୂକ୍ଷ୍ମରୁ ଅତି ସୂକ୍ଷ୍ମ ନାଦକୁ ଚିନ୍ତା କରିବ (ସୂକ୍ଷ୍ମନାଦର ଚିରସ୍ଥାୟିତ୍ୱ ହେତୁ ସେଥିରେ ଆସକ୍ତ ଚିତ୍ତ ଚିରକାଳପାଇଁ ସ୍ଥିର ହୋଇଯିବ ।) ମେଘ ଭେରୀ ପ୍ରଭୃତି ଘନ ଅର୍ଥାତ୍ ମହାନ୍ ନାଦ ତ୍ୟାଗ କରି ସୂକ୍ଷ୍ମ ନାଦରେ, ସୂକ୍ଷ୍ମନାଦ ତ୍ୟାଗ କରି ଘନ ନାଦରେ ରମମାଣ କ୍ରୀଡ଼ାକାଂକ୍ଷୀ—କ୍ଷିପ୍ତ ରଜୋଗୁଣ ହେତୁ ଅତ୍ୟନ୍ତ ଚଞ୍ଚଳ ମନକୁ ବିଷୟାନ୍ତରକୁ ପ୍ରେରଣ କରିବ ନାହିଁ, ନାଦକୁହିଁ ଚିନ୍ତା କରିବ । ବିଷୟାନ୍ତର ଗମନ କଲେ ସମାଧିର ସମ୍ଭାବନା ନାହିଁ, କିନ୍ତୁ ଯେ କୌଣସି ନାଦରେ କ୍ରୀଡ଼ମାନ ହେଲେ ସମାହିତ ଅବଶ୍ୟହିଁ ହେବ । ଅଥବା ଯେ କୌଣସି ଘନ କିମ୍ବା ନାଦରେ କିମ୍ବା ସୂକ୍ଷ୍ମ ନାଦରେ ପ୍ରଥମେ ମନ ଲଗ୍ନ ହୁଏ—ସେହି ନାଦରେ ସୁସ୍ଥିର ହୋଇ ପୁଣି ସେହି ନାଦ ସହିତ ବିଲୀନ ହୋଇଯାଏ । ୨୯-୩୮

ସମସ୍ତ ବାହ୍ୟ ବିଷୟ ବିସ୍ମୃତ ହୋଇ ଦୁଗ୍ଧରେ ଜଳପରି ମନ ନାଦରେ ଏକୀଭୂତ ହୁଏ, ଅନନ୍ତର ସହସା ଚିଦାକାଶରେ ବିଲୀନ ହୋଇଯାଏ । ସେଥିପାଇଁ ଜିତେନ୍ଦ୍ରିୟ ଯୋଗୀ ସର୍ବଦା ନାଦାନୁସନ୍ଧାନ ହେତୁ ସମସ୍ତ ସମ୍ପର୍କଶୂନ୍ୟ ହୋଇ ସଦ୍ୟ ଉନ୍ମନୀ-କାରକ ନାଦକୁହିଁ ଚିନ୍ତା କରିବ । ସକଳ ଚିନ୍ତା ସର୍ବତୋଭାବରେ ପରିତ୍ୟାଗପୂର୍ବକ ସର୍ବଚେଷ୍ଟାବିବର୍ଜିତ ହୋଇ ନାଦକୁ ହିଁ ଅନୁସନ୍ଧାନ କରିବ । ନାଦରେ ଚିତ୍ତ ବିଲୀନ ହୋଇଥାଏ । ଯେପରି ଭ୍ରମର ମଧୁପାନ କଲାବେଳେ ଗନ୍ଧକୁ ଅପେକ୍ଷା କରେ ନାହିଁ, ସେହିପରି ସର୍ବଦା ନାଦରେ ଆସକ୍ତ ଚିତ୍ତ ସାଧକ ବିଷୟ ଆକାଙ୍କ୍ଷା କରେ ନାହିଁ । ଅନ୍ତରଙ୍ଗ ଚିତ୍ତରୂପକ ଭୁଜଙ୍ଗ ନାଦଗ୍ରହଣ ହେତୁ ସୁନାଦ ଗନ୍ଧ ଦ୍ୱାରା ବଦ୍ଧ ହୋଇ ତତ୍‌କ୍ଷଣାତ୍ ଉତ୍ତମରୂପେ ଚପଳତା ତ୍ୟାଗପୂର୍ବକ ବିଶ୍ୱଜଗତ୍ ବିସ୍ମୃତ ହୋଇ ଏକାଗ୍ର ହୋଇ କୌଣସି ସ୍ଥାନକୁ ଧାବିତ ହୁଏ ନାହିଁ । ବିଷୟ-ଉଦ୍ୟାନ-ବିହାରୀ ମନରୂପକ ମତ୍ତମାତଙ୍ଗର ଏହି ନିନାଦରୂପକ ଶାଣିତ ଅଙ୍କୁଶହିଁ ସଂଯମନ କରିବାକୁ ସମର୍ଥ ହୁଏ । ମନୋମୃଗର ବନ୍ଧନ ପାଇଁ ନାଦହିଁ ଜାଲପରି ହୁଏ, ଅଥବା ଚିତ୍ତରୂପକ ସମୁଦ୍ରକୁ ରୋଧ କରିବାକୁ ନାଦ ବେଳାଭୂମି ସ୍ୱରୂପ ହୋଇଥାଏ । ବ୍ରହ୍ମପ୍ରଣବ ସଂଲଗ୍ନ ଜ୍ୟୋତିର୍ମୟାତ୍ମକ ନାଦ, ମନ ସେହି ସ୍ଥାନରେ ଲୟ ହୁଏ, ତାହାହିଁ ବିଷ୍ଣୁଙ୍କର ପରମ ପଦ । ଯେ ପର୍ଯ୍ୟନ୍ତ ଅନାହତ ଧ୍ୱନି ଶ୍ରୁତିଗୋଚର ହୁଏ ସେ ପର୍ଯ୍ୟନ୍ତ ଆକାଶର ସମ୍ୟକ୍ କଳ୍ପନା ହୋଇଥାଏ ; ନିଃଶବ୍ଦ ସେହି ପରବ୍ରହ୍ମ ପରମାତ୍ମା ବୋଲି କଥିତ ହୁଅନ୍ତି । ଯେତେବେଳଯାଏ ନାଦ ଅଛି ମନ ମଧ୍ୟ ସେତିକବେଳଯାଏ, ନାଦାନ୍ତରେ ମନର ଉନ୍ମନୀ ଅବସ୍ଥା ହୁଏ । ସଶବ୍ଦ ଅକ୍ଷର କ୍ଷୟ ହୋଇଗଲେ ନିଃଶବ୍ଦ ପରମପଦ । ସର୍ବଦା ନାଦାନୁଚିନ୍ତନ ଦ୍ୱାରା ବାସନା କ୍ଷୀଣ ହୋଇଯାଏ, ମନ ଓ ବାୟୁ

ନିରଞ୍ଜନଙ୍କଠାରେ ବିଲୀନ ହୁଏ, କୋଟି ସହସ୍ର ପ୍ରକାର ନାଦ ଏବଂ ଶତକୋଟି ପ୍ରକାର ବିନ୍ଦୁ ଅର୍ଥାତ୍ ଜ୍ୟୋତି (ବିନ୍ଦୁତ ଅନେନ) ବ୍ରହ୍ମପ୍ରଣବ ନାଦରେ ଲୟ ହୋଇଯାଏ । ସମସ୍ତ ଅବସ୍ଥା—ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ମୂର୍ଚ୍ଛା ମରଣ ଲକ୍ଷଣ ପଞ୍ଚ ବ୍ୟୁତ୍‌ଥାନ ଅବସ୍ଥା—ଏ ସବୁରୁ ବିଶେଷଭାବରେ ମୁକ୍ତ, ସମସ୍ତ ଚିନ୍ତାବିବର୍ଜିତ ଯୋଗୀ ମୃତପରି ଅବସ୍ଥାନ କରନ୍ତି । ସେ ମୁକ୍ତ ଏଥିରେ ଏ ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ । ଉନ୍ମନୀ ଅବସ୍ଥାରେ ଦେହ ନିଶ୍ଚଳ କାଠପରି ହୋଇଯାଏ, ଶଙ୍ଖ ଦୁନ୍ଦୁଭି ଆଦି କୌଣସି ନାଦ ତାଙ୍କର କର୍ଣ୍ଣ-ଗୋଚର ହୁଏ ନାହିଁ । ସେ ଶୀତ ଉଷ୍ଣ ସୁଖ ଦୁଃଖ ଏବଂ ମାନ ଅପମାନ ଜାଣିପାରନ୍ତି ନାହିଁ । ସର୍ବଦା ଯୋଗିଗଣଙ୍କର ଚିତ୍ତ ସମାଧି ତ୍ୟାଗ କରି ଜାଗ୍ରତାଦି ଅବସ୍ଥାର ଅନୁବର୍ତ୍ତନ କରେ ନାହିଁ, ଜାଗ୍ରତ ଓ ନିଦ୍ରାରୁ ବିଶେଷଭାବରେ ମୁକ୍ତଚିତ୍ତ ସ୍ୱରୂପ ଅବସ୍ଥା ଲାଭ କରେ । କୌଣସି ଦୃଶ୍ୟ ବ୍ୟତିରେକରେ ଯାହାର ଦୃଷ୍ଟି ସ୍ଥିର, ବିନା ପ୍ରଯତ୍ନରେ ଯାହାର ବାୟୁ ସ୍ଥିର ବିନା ଅବଲମ୍ବନରେ ଯାହାର ଚିତ୍ତ ସ୍ଥିର, ସେ ବ୍ରହ୍ମ ପ୍ରଣବ ଅନ୍ତର୍ଗତ ନାଦ ସ୍ୱରୂପ ।

ଶିଷ୍ୟ—ପରମ ପଦ କିଏ !

ଗୁରୁ—ଭଗବାନ୍ ହିଁ ନିତ୍ୟନନ୍ଦା ପରମପଦ । ପଦର ଅର୍ଥ ଅନେକ କହୁଛନ୍ତି:—

ପଦଂ ସ୍ଥାନେ ପରିତ୍ରାଣେ ବ୍ୟବସାୟୋପଦେଶୟୋଃ ।
ବାକ୍ୟେ ବସ୍ତୁନି ଶବ୍ଦେ ଚ ପାଦ-ତଚ୍ଚିହ୍ନୟୋରପି ॥

ପଦ ଅର୍ଥ ସ୍ଥାନ, ପରିତ୍ରାଣ, ବ୍ୟବସାୟ (ଯତ୍ନ ଉଦ୍ୟମ ଅନୁଷ୍ଠାନ ଅଭିପ୍ରାୟ ନିଶ୍ଚୟ), ଉପଦେଶ, ବାକ୍ୟ, ବସ୍ତୁ, ଶବ୍ଦ, ଚରଣ ଓ ଚରଣ ଚିହ୍ନ । ପରମପଦ ଅର୍ଥରେ ପରମ ଶବ୍ଦ, ବାକ୍ୟ, ବସ୍ତୁ, ସ୍ଥାନ, ପରିତ୍ରାଣ—ଯାହା କୁହନା କାହିଁକି ଏକା ଅର୍ଥ ।

ଶିଷ୍ୟ--ବ୍ରହ୍ମପ୍ରଣବ ସଂଲଗ୍ନ କଣ କହିଲେ ?

ଗୁରୁ—ବ୍ରହ୍ମପ୍ରଣବ ସଂଲଗ୍ନ ଜ୍ୟୋତିର୍ମୟାତ୍ମକ ନାଦ—ମନ ସେଥିରେ ଲୟ ହୁଏ, ତାହାହିଁ ବିଷ୍ଣୁଙ୍କ ପଦ ।

ଶିଷ୍ୟ—ନାଦକୁ ତ ମଧ୍ୟ ବିଷ୍ଣୁଙ୍କର ପରମପଦ ବୋଲି କହିଲେ, ଏ ନାଦର ଲୟ ହୁଏ ?

ଗୁରୁ—ବ୍ରହ୍ମପ୍ରଣବନାଦର ଲୟ ହୁଏ ନାହିଁ, ମନର ଲୟ ହୁଏ, ମନର ଉନ୍ମନୀ ଅବସ୍ଥା ହେଲେ ନାଦ ଗ୍ରହଣ କିଏ କରିବ ? ବ୍ରହ୍ମପ୍ରଣବନାଦଠାରୁ ସହସ୍ର କୋଟି ପ୍ରକାର ନାଦ, ଶତକୋଟି ପ୍ରକାର ଜ୍ୟୋତି ଆବିର୍ଭୂତ ହୁଏ; ପୁଣି ବ୍ରହ୍ମପ୍ରଣବନାଦରେ ଲୟ ହୋଇଯାଏ, ଓଁକାର ନାଦ ହିଁ ଚରମ ନାଦ—ନାଦବ୍ରହ୍ମ । ଯେ କୌଣସି ନାଦରେ ମନ ଖେଳୁଥାଉ—ସେ ବ୍ରହ୍ମଙ୍କ ସହିତ ରମଣ କରେ । କ୍ରୀଡ଼ା ଅନ୍ତେ ଶାନ୍ତ ଅବସ୍ଥାରେ ସ୍ଥିତ ହୁଏ । ପରା ବାକ୍ ପରବ୍ରହ୍ମ ଏକା କଥା—ମାଣ୍ଡୁକ୍ୟଶ୍ରୁତି ଏହାକୁ ଚତୁର୍ଥ ଅବସ୍ଥା ବୋଲି କହିଛନ୍ତି ।

ଅନନ୍ତର ଧ୍ୟାନବିନ୍ଦୁ-ଶ୍ରୁତିକଥା ଶ୍ରବଣ କର—

ବୀଜାକ୍ଷରଂ ପରଂ ବିନ୍ଦୁଂ ନାଦଂ ତସ୍ୟୋପରିସ୍ଥିତଂ ॥
ସଶବ୍ଦଶ୍ଚାକ୍ଷରେ କ୍ଷୀଣେ ନିଃଶବ୍ଦଂ ପରମଂ ପଦମ୍ ॥ ୨
ଅନାହତଂ ତୁ ଯଚ୍ଛବ୍ଦଂ ତସ୍ୟ ଶବ୍ଦସ୍ୟ ଯତ୍ ପରମ୍ ।
ତତ୍ପରଂ ବିନ୍ଦତେ ଯସ୍ତୁ ସ ଯୋଗୀ ଛିନ୍ନସଂଶୟଃ ॥ ୩

ବୀଜ ଅକ୍ଷର ପରମ ବିନ୍ଦୁ ଅର୍ଥାତ୍ କୁଣ୍ଡଳିନୀ ଶବ୍ଦ ବ୍ରହ୍ମ ପରା ବାକ୍ ନାଦ; ତାହା ଉପରେ ସଶବ୍ଦ ଅକ୍ଷର ଅବସ୍ଥିତ—କ୍ଷରଣ-ରହିତ ନାଦ କ୍ଷୀଣ ଅର୍ଥାତ୍ ସୂକ୍ଷ୍ମ ହେଲେ, ନିଃଶବ୍ଦ ପରମ ପଦ । ଅନାହତ ଯେଉଁ ଶବ୍ଦ ସେହି ଶବ୍ଦର ଯାହା ପର ଅର୍ଥାତ୍ ନିସ୍ତବ୍ଧ

ପର୍ ବାକ୍—ସେହି ପରକୁ ଯେଉଁ ଯୋଗୀ ଅବଗତ ହୋଇପାରନ୍ତି, ସେ ସଂଶୟଶୂନ୍ୟ ହୁଅନ୍ତି ।

ବାଳାଗ୍ରଶତସାହସ୍ରଂ ତସ୍ୟ ଭାଗସ୍ୟ ଭାଗିନଃ ।
ତସ୍ୟ ଭାଗସ୍ୟ ଭାଗାର୍ଦ୍ଧଂ ତତ୍‌କ୍ଷୟେ ତୁ ନିରଞ୍ଜନମ୍ ॥ ୪

କେଶାଗ୍ରକୁ କୋଟିଏ ଭାଗ କଲେ ସେହି ଭାଗର ଭାଗଗୁଡ଼ିକ ସେହି ଭାଗର ଅର୍ଦ୍ଧଭାଗ । ତାହା କ୍ଷୟ ହେଲେ ନିରଞ୍ଜନ—ସର୍ବ ପ୍ରକାରରେ ପ୍ରକୃତିସଙ୍ଗବର୍ଜିତ ।

ତୈଳଧାରମିବାଚ୍ଛିନ୍ନଂ ଦୀର୍ଘଘଣ୍ଟାନିନାଦବତ୍ ।
ଅବାଚ୍ୟ ପ୍ରଣବସ୍ୟାଗ୍ରଂ ଯସ୍ତଂ ବେଦ ସ ବେଦବିତ୍ ॥ ୧୮

ତୈଳଧାର ପରି ଅଖଣ୍ଡିତ, ଦୀର୍ଘ ଘଣ୍ଟାଧ୍ୱନି ପରି ସନ୍ତତ, ଅକଥନୀୟ ପ୍ରଣବର ଅଗ୍ର-ଆଦି, ଯେ ତାହାଙ୍କୁ ଜାଣନ୍ତି ସେହି ପ୍ରକୃତ ବେଦତତ୍ତ୍ୱଜ୍ଞ ।

ଓଁକାରଧ୍ୱନିନାଦେନ ବାୟୋଃ ସଂହରଣାନ୍ତକମ୍ ।
ଯାବଦ୍ ବଳଂ ସମାଦଧ୍ୟାତ୍ ସମ୍ୟଙ୍‌ନାଦଲୟାବଧି ॥ ୨୩

ଓଁକାର୍ ଧ୍ୱନି ନାଦ ସହିତରେ ରେଚକ ପୂରକ ଆଦି କ୍ରମରେ ନିୟମିତ ବାୟୁର ଉପସଂହାର ପର୍ଯ୍ୟନ୍ତ, ଉତ୍ତମ ରୂପେ ନାଦ ଲୟ ହେବା ପର୍ଯ୍ୟନ୍ତ, ଯଥାଶକ୍ତି ସମ୍ୟକ୍ ଧାରଣ କରିବ ।

ତୈଳଧାରମିବାଚ୍ଛିନ୍ନଂ ଦୀର୍ଘଘଣ୍ଟାନିନାଦବତ୍ ।
ବିନ୍ଦୁନାଦକଳାତୀତଂ ଯସ୍ତଂ ବେଦ ସ ବେଦବିତ୍ ॥ ୩୬

ତୈଳଧାର ପରି ଅଚ୍ଛିନ୍ନ, ଦୀର୍ଘ ଘଣ୍ଟାନିନାଦ ପରି ଅଖଣ୍ଡ, ବିନ୍ଦୁନାଦ କଳାର ଅତୀତ, ଯେ ତାହାଙ୍କୁ ଜାଣନ୍ତି—ସେହି ଯଥାର୍ଥ ବେଦବେତ୍ତା ।

ଶିଷ୍ୟ— ନାଦବିନ୍ଦୁ କଳାର ଅତୀତ ନାଦ !

ଗୁରୁ—ନିପାଦ-ବଭୂତି-ମହାନାରାୟଣ ଶ୍ରୁତିରେ କଥିତ ହୋଇଅଛି—

ପରମମଙ୍ଗଳାନନ୍ତଦିବ୍ୟତେଜୋଭିର୍ଜ୍ଜ୍ୱଳନ୍ତମନିଶଂ ବାଙ୍ମନ-ଗୋଚରମନନ୍ତତେଜୋରାଶ୍ୟନ୍ତର୍ଗତମର୍ଧମାତ୍ରାତ୍ମକଂ ତୁରୀୟଂ ଧ୍ୱନ୍ୟା-ତ୍ମକଂ ତୁରୀୟାତୀତମବାଚ୍ୟଂ ନାଦବିନ୍ଦୁକଳାଧ୍ୟାତ୍ମସ୍ୱରୂପଂ ଚେତ୍ୟାଦ୍ୟ-ନନ୍ତାକାଶେଣାବସ୍ଥିତଂ ନିର୍ଗୁଣଂ ନିଷ୍କ୍ରିୟଂ ନିର୍ମଳଂ ନିରବଦ୍ୟଂ ନିରଞ୍ଜନଂ ନିରାକାରଂ ନିରାଶ୍ରୟଂ ନିରତିଶୟାଦ୍ୱୈତପରମାନନ୍ଦ-ଲକ୍ଷଣମାଦିନାରାୟଣଂ ଧ୍ୟାୟେଦିତ୍ୟୁପନିଷତ୍ । (୭ ଅଧ୍ୟାୟ)

ପରମ ମଙ୍ଗଳ, ଅନନ୍ତ ଅଲୌକିକ ତେଜପୁଞ୍ଜ ଦ୍ୱାରା ଅହର୍ନିଶି ଦୀପ୍ତ, ବାକ୍ୟର ଅଗୋଚର, ଅନନ୍ତ ତେଜୋରାଶିର ଅନ୍ତର୍ଗତ ଅର୍ଦ୍ଧମାତ୍ରାତ୍ମକ, ତୁରୀୟଧ୍ୱନ୍ୟାତ୍ମକ, ତୁରୀୟାତୀତ, ଅକଥନୀୟ ନାଦବିନ୍ଦୁ-କଳା, ଅଧ୍ୟାତ୍ମ ସ୍ୱରୂପ ଇତ୍ୟାଦି ଅନନ୍ତ ଆକାଶରେ ଅବସ୍ଥିତ, ନିର୍ଗୁଣ, ନିଷ୍କ୍ରିୟ, ନିର୍ମଳ, ନିର୍ଦ୍ଦୋଷ, ଉତ୍କୃଷ୍ଟ, ନିରଞ୍ଜନ, ନିରାକାର, ନିରାଶ୍ରୟ, ନିରତିଶୟ, ଅଦ୍ୱୈତ, ପରମ ଆନନ୍ଦ ଲକ୍ଷଣ ଆଦି ନାରାୟଣଙ୍କୁ ଧ୍ୟାନ କରିବ ।

ଶିଷ୍ୟ—ତୁରୀୟାତୀତ ନାଦବିନ୍ଦୁକଳା ଅଛି ?

ଗୁରୁ—ଶ୍ରୁତି ସେଇ କଥା କହିଲେ । ଏହି ନାଦବିନ୍ଦୁକଳାର ଅତୀତ ଗୋଟିଏ ତୈଳଧାରା ପରି ଅଖଣ୍ଡ ଏବଂ ଦୀର୍ଘ ଘଣ୍ଟାଧ୍ୱନି ପରି ସନ୍ତତ ନାଦ ପରି ପ୍ରଣବ ଓଁକାରରେ ଅଛି, ସେହି ନାଦ ଯେ ଅବଗତ ଅଛନ୍ତି ସେହି ଯଥାର୍ଥ ବେଦବିତ୍ । ସେ ନାଦ ବର୍ଣ୍ଣନା କରିବା ପାଇଁ ଭାଷା ବା ଶ୍ରବଣ କରିବା ପାଇଁ କର୍ଣ୍ଣ ପ୍ରାକୃତ-ଜୀବଙ୍କର ନାହିଁ । ପ୍ରକୃତିର ବାହୁପାଶରୁ ଚିରମୁକ୍ତହିଁ ତାହାର ଅଧିକାରୀ ।

ଭଗବାନ୍ ଶଙ୍କରାଚାର୍ଯ୍ୟ କହିଛନ୍ତି:—

ସ୍ଫୁରୁସ୍ଥିତଂ ସୋମକଳାବତଂସଂ
ବୀଣାଧରଂ ବ୍ୟକ୍ତଜଟାକଳାପମ୍ ॥
ଉପାସତେ କେଚନ ଯୋଗିନସ୍ତ-
ମୁପାତ୍ତନାଦାନୁଭବପ୍ରମୋଦମ୍ ॥ ୧୧ ଦକ୍ଷିଣାମୂର୍ତ୍ତିସ୍ତୋତ୍ର

ଯେ ମନୋହର ସ୍ୱରରେ ଅବସ୍ଥିତ, ଚନ୍ଦ୍ରକଳା ଯାହାଙ୍କର ଶିରୋଭୂଷଣ, ଯେ ବୀଣା ଧାରଣ କରିଛନ୍ତି, ଯାହାଙ୍କର ଜଟାକଳାପ ବିସ୍ତୃତ, ନାଦାନୁସନ୍ଧାନ ଯୋଗଦ୍ୱାରା ଆନନ୍ଦପ୍ରାପ୍ତ—ତାହାଙ୍କୁ କେହି କେହି (ଭାଗ୍ୟବାନ) ଯୋଗୀ ଉପାସନା କରିଥାନ୍ତି ।

ଶ୍ରୀମଦ୍ଭାଗବତରେ ବ୍ରହ୍ମାଙ୍କର ହୃଦୟାକାଶରେ ନାଦର ଆବିର୍ଭାବ କଥା ପୂର୍ବରେ କହିଛି । ଏହା ସେହି ନାଦବିନ୍ଦୁ-କଳାତୀତ ନାଦ ।

ଶିଷ୍ୟ—ଗୋମୁଖୀରୁ ଗଙ୍ଗାଧାର ଭୂତଳରେ ପତିତ ହୋଇ-ଅଛି । ହିମାଳୟରେ ଅବଶ୍ୟ କୌଣସି ଧାର ଅଛି, ନଚେତ୍ ଏହା କେଉଁଠାରୁ ଆସିଲା ? ତେବେ ଏ ଧାର ସେ ଧାର ନୁହେଁ, ସେହିପରି ଏ ନାଦ ସେ ନାଦ ନୁହେଁ—ତାହା ପ୍ରାକୃତ ଚଳନଶୂନ୍ୟ ନିସ୍ପନ୍ଦ ନାଦ । ଏଇଆ ତ ?

ଗୁରୁ—ହିଁ, ଅନନ୍ତର ଧ୍ୟାନବିନ୍ଦୁ-ଶ୍ରୁତି ଶ୍ରବଣ କର—

ଅମୂର୍ତ୍ତୌ ବର୍ତ୍ତତେ ନାଦୋ ବୀଣାଦଣ୍ଡସମୁତ୍ଥିତଃ ।
ଶଙ୍ଖନାଦାଦିଭିଶ୍ଚୈବ ମଧ୍ୟମେବ ଧ୍ୱନିର୍ଯଥା ॥ ୧୦୨
ବ୍ୟୋମରନ୍ଧ୍ରଗତୋ ନାଦୋ ମାୟୂରଂ ନାଦମେବ ତ ।
କପାଳକୁହରେ ମଧ୍ୟେ ଚତୁର୍ଦ୍ୱାରସ୍ୟ ମଧ୍ୟମେ ॥ ୧୦୩
ତଦାତ୍ମା ରାଜତେ ତତ୍ର ଯଥା ବ୍ୟୋମ୍ନି ଦିବାକରଃ ।
ସ୍ୱାତ୍ମାନଂ ପୁରୁଷଂ ପଶ୍ୟେନ୍ମନସ୍ତତ୍ର ଲୟଂ ଗତମ୍ ॥ ୧୦୪

ଉନ୍ମାନ ଜ୍ୟୋତିର୍ଗିନାଦନ୍ତୁ ବିନ୍ଦୁମାହେଶ୍ୱରଂ ପଦମ୍ ।
ଯ ଏବଂ ବେଦ ପୁରୁଷଃ ସ କୈବଲ୍ୟଂ ସମଶ୍ନୁତେ ॥ ୧୦୫

ମେରୁଦଣ୍ଡସ୍ଥିତା ପଦ୍ମସୂତ୍ରସଦୃଶୀ ଶୁଭ୍ରା ସୁଷୁମ୍ନା ମଧ୍ୟରେ ଅମୂର୍ତ୍ତି ଶଙ୍ଖନାଦ ପ୍ରଭୃତି ଶବ୍ଦ ପର ଓ ମଧ୍ୟମ "ମା" ଧ୍ୱନି ପର ନାଦ ଅବସ୍ଥିତ; ବ୍ୟୋମରନ୍ଧ୍ରଗତ ନାଦ ଏବଂ ମାୟୂରନାଦ ଓ କପାଳ-କୁହର ମଧ୍ୟରେ ଚତୁର୍ଦ୍ଦ୍ୱାରର ମଧ୍ୟମରେ ସେହି ଆତ୍ମା ଅଛି—ଯେପରି ଆକାଶରେ ଦିବାକର ଶୋଭା ପାନ୍ତି, ସେହିପରି ସେ ବିରାଜମାନ; ଭ୍ରୂଦ୍ୱୟ ମଧ୍ୟରେ ଏବଂ ବ୍ରହ୍ମରନ୍ଧ୍ରରେ ଶକ୍ତି ମଧ୍ୟ ଅବସ୍ଥାନ କରୁଛନ୍ତି । ସ୍ୱାତ୍ମପୁରୁଷଙ୍କୁ ଦର୍ଶନ କରିବ, ମନ ସେହି ସ୍ଥାନରେ ଲୟ ହୁଏ । ଉନ୍ମଗୁଡ଼ିକ ପର ନାଦ ଏବଂ ଜ୍ୟୋତିପରି ନାଦ, ବିନ୍ଦୁ ମହେଶ୍ୱର ପଦ—ଯେ ଏହି ରୂପରେ ଜାଣନ୍ତି, ସେ କୈବଲ୍ୟ ପ୍ରାପ୍ତ ହୁଅନ୍ତି ।

ଶିଷ୍ୟ—ମନ ଲୟ ନ ହେଲେ କୈବଲ୍ୟ ପ୍ରାପ୍ତି ହୁଏ ନାହିଁ ?

ଗୁରୁ—ମନହିଁ ସଂସାର ରଚନା କରେ । ଦ୍ରଷ୍ଟା ଓ ଦୃଶ୍ୟଭାବ ଯେ ପର୍ଯ୍ୟନ୍ତ ଥାଏ, ସେ ପର୍ଯ୍ୟନ୍ତ ମନୋନାଶ ହୁଏ ନାହିଁ । ସମାଧିରେ ମନ ଓ ବାୟୁ ପରମାକାଶରେ ପରମପଦରେ ଲୀନ ହୋଇଯାଏ ।

ତା ପରେ ଶୁଣ । ବ୍ରହ୍ମବିଦ୍ୟା-ଶ୍ରୁତିରେ ଅଛି:—

ଅନାହତଧ୍ୱନିଯୁକ୍ତଂ ହଂସଂ ଯୋ ବେଦ ହୃଦ୍‌ଗତମ୍ । ୨୦
ସ୍ୱପ୍ରକାଶଚିଦାନନ୍ଦଂ ସ ହଂସ ଇତି ଗୀୟତେ ॥

ଏହା ପୂର୍ବରୁ କହିଅଛି ।

ବ୍ରହ୍ମସ୍ଥାନେ ତୁ ନାଦଃ ସ୍ୟାଚ୍ଛାକିନ୍ୟାମୃତବର୍ଷିଣୀ ।
ଷଟ୍‌ଚକ୍ରମଣ୍ଡଳୋଦ୍ଧାରଂ ଜ୍ଞାନଦୀପଂ ପ୍ରକାଶୟେତ୍ ॥ ୭୭
ସର୍ବଭୂତସ୍ଥିତଂ ଦେବଂ ସର୍ବେଶଂ ନିତ୍ୟମର୍ଚ୍ଚୟେତ୍ ।
ଆତ୍ମରୂପଂ ତମାଲୋକ୍ୟ ଜ୍ଞାନରୂପଂ ନିରାମୟମ୍ ॥ ୭୭

ବ୍ରହ୍ମସ୍ଥାନରେ ଅମୃତବର୍ଷିଣୀ ଶାକମ୍ମୀ ନାଡ଼ିରେ ନାଦ ଅଛନ୍ତି, ସେ ଷଟ୍‌ଚକ୍ରମଣ୍ଡଳମୋଚନ ଜ୍ଞାନଦୀପ ପ୍ରକାଶ କରନ୍ତି, ସର୍ବଭୂତରେ ଅବସ୍ଥିତ, ଜ୍ୟୋତିର୍ମୟ, ସମସ୍ତଙ୍କର ଈଶ୍ୱର, ଆତ୍ମସ୍ୱରୂପ, ଜ୍ଞାନରୂପ, ନିରାମୟ (ସର୍ବଉପଦ୍ରବଶୂନ୍ୟ)—ତାହାଙ୍କୁ ଦେଖି ନିତ୍ୟ ଅର୍ଚ୍ଚନା କରିବ ।

ଦୃଶ୍ୟନ୍ତଂ ଦିବ୍ୟରୂପେଣ ସର୍ବବ୍ୟାପୀ ନିରଞ୍ଜନଃ ।
ହଂସ ହଂସ ବଦେଦ୍ ବାକ୍ୟଂ ପ୍ରାଣିନାଂ ଦେହମାଶ୍ରିତଃ ॥ ୭୮

ଜ୍ୟୋତିର୍ମୟ ରୂପରେ ଦୃଶ୍ୟମାନ ସର୍ବବ୍ୟାପୀ ନିରଞ୍ଜନ ପ୍ରାଣିଗଣଙ୍କର ଦେହ ଆଶ୍ରୟପୂର୍ବକ ହଂସ ହଂସ ଏହି ବାକ୍ୟ କହିଥାନ୍ତି ।

ଶିଷ୍ୟ—ଏହା ପୂର୍ବରୁ କହିଛନ୍ତି । ସର୍ବଗତ ନାଦବ୍ରହ୍ମହିଁ ପ୍ରାଣୀଦେହମଧ୍ୟଗତ ଜୀବ ହୋଇ ହଂସ ହଂସ ଏହି ବାକ୍ୟ ଉଚ୍ଚାରଣ କରନ୍ତି ।

ଗୁରୁ—ନାଦବ୍ରହ୍ମର ବହୁତ୍ୱ "ଖଣ୍ଡଭାବ" ମାତ୍ର ଆଧାର ଭେଦରେ ପ୍ରଶଂସିତ ହୁଏ । ଏକ ଅଖଣ୍ଡ ଅନନ୍ତକୋଟି ବ୍ରହ୍ମାଣ୍ଡବ୍ୟାପୀ ଓଙ୍କାର ନାଦହିଁ ଲୀଳା କରୁଛନ୍ତି, ଆଉ ସେହି ନାଦହିଁ ଘନୀଭୂତ ହୋଇ ଅନନ୍ତ ପଦାର୍ଥରେ ରୂପ ଧାରଣ କରିଛନ୍ତି । ମନେ ଅଛି ତ ?

ଶିଷ୍ୟ—ଆଜ୍ଞା ହଁ । ଶାକମ୍ମୀ ନାଡ଼ିର ସ୍ଥାନ କେଉଁଠାରେ ?

ଗୁରୁ—ନାଭିର ନିମ୍ନଦେଶସ୍ଥିତ ଆଧାରକନ୍ଦରୁ ଶଙ୍ଖିନୀ ନାଡ଼ି ଊର୍ଦ୍ଧ୍ୱଦେଶକୁ ଗମନ କରି ବାମ କର୍ଣ୍ଣର ପ୍ରାନ୍ତଦେଶ ପର୍ଯ୍ୟନ୍ତ ବିସ୍ତୃତା ।

ଯୋଗତତ୍ତ୍ୱଶ୍ରୁତି କହୁଛନ୍ତି:—

ଅକାରେ ରେଚିତଂ ପଦ୍ମମୁକାରେଣୈବ ଭିଦ୍ୟତେ ॥ ୧୩୮
ମକାରେ ଲଭତେ ନାଦମର୍ଦ୍ଧମାତ୍ରା ତୁ ନିଶ୍ଚଳା ।

ଶୁଦ୍ଧସ୍ଫଟିକସଙ୍କାଶଂ ନିଷ୍କଳଂ ପାପନାଶନମ୍ ॥ ୧୩୯
ଲଭତେ ଯୋଗଯୁକ୍ତାତ୍ମା ପୁରୁଷସ୍ତତ୍ ପରଂ ପଦମ୍ ॥

ଅକାରରେ ପଦ୍ମ ଊର୍ଦ୍ଧ୍ୱମୁଖ ହୁଏ, ଉକାରରେ ବିକସିତ, ମକାରରେ ନାଦ ଲାଭ ହୁଏ, ଅର୍ଦ୍ଧମାତ୍ରା ନିଷ୍କଳା; ବିଶୁଦ୍ଧ ସ୍ଫଟିକମଣି ପରି ନିଷ୍କଳ ନିରବୟବ ପାପବିନାଶକ ଯୋଗଯୁକ୍ତଚିତ୍ତ ପୁରୁଷ ସେହି ପରମପଦ ଲାଭ କରିଥାନ୍ତି ।

ହଂସଃ ସୋଽହମିତି ମନ୍ତ୍ରେଣୋଚ୍ଛ୍ୱାସନିଃଶ୍ୱାସବ୍ୟପଦେଶେନ ନାଦାନୁସନ୍ଧାନଂ କରୋତି ।

(ନାରଦପରିବ୍ରାଜକୋପନିଷତ୍)

ଉଚ୍ଛ୍ୱାସ ନିଃଶ୍ୱାସ ସଂଯୋଗରେ ହଂସ ସୋହଂ ମନ୍ତ୍ର ଦ୍ୱାରା ନାଦାନୁସନ୍ଧାନ କରିବ । ସୀତୋପନିଷଦରେ କଥିତ ହୋଇଅଛି—

ପ୍ରଥମା ଶବ୍ଦବ୍ରହ୍ମମୟୀ ସ୍ୱାଧ୍ୟାୟକାଲେ ପ୍ରସନ୍ନା ଉଦ୍ଭାବନକରୀ ସାତ୍ମିକା, ଦ୍ୱିତୀୟା ଭୂତଲେ ହଲାଗ୍ରେ ସମୁତ୍ପନ୍ନା, ତୃତୀୟା ଈକାରରୂପିଣୀ ଅବ୍ୟକ୍ତ ସ୍ୱରୂପା ଭବତୀତି ସୀତା ଇତ୍ୟୁଦାହରନ୍ତି ।

ନିତ୍ୟାଶକ୍ତି ସ୍ୱରୂପଂ ହରେର୍ମୁଖାନ୍ନାଦଃ । ତସ୍ମାନ୍ନାଦାଦ୍ ବିନ୍ଦୁଃ । ବିନ୍ଦୋରୋଙ୍କାରଃ । ଓଙ୍କାରାତ୍ ପରତୋ ରାମ ବୈଖାନସପର୍ବତଃ ॥

ଶିଷ୍ୟ—ନାଦର ବିଶେଷ କିଛି ପରିଚୟ ଦେଲେ ନାହିଁ । ଶବ୍ଦବ୍ରହ୍ମମୟୀ ବେଦାଦିରୂପା, ହଲାଗ୍ରେ ଅପ୍ରାକୃତ ଦିବ୍ୟରୂପଧାରିଣୀ ଏବଂ ଈକାରରୂପିଣୀ କିଁ ଅବ୍ୟକ୍ତା ପରା ବାକ୍ ତ ?

ଗୁରୁ—ହଁ, ଯୋଗଚୂଡ଼ାମଣି-ଶ୍ରୁତିରେ ଅଛି—

ଅନାହତ ସ୍ୱରୂପେଣ ଜ୍ଞାନନାମୂର୍ଦ୍ଧ୍ୱଗୋ ଭବେତ୍ ॥ ୭୮
ତୈଳଧାରମିବାଚ୍ଛିନ୍ନଂ ଦୀର୍ଘଘଣ୍ଟାନିନାଦବତ୍ ।
ପ୍ରଣବସ୍ୟ ଧ୍ୱନିସ୍ତଦ୍ୱତ୍ ତଦଗ୍ରଂ ବ୍ରହ୍ମ ଚୋଚ୍ୟତେ ॥ ୮୦

ଜ୍ୟୋତିର୍ମୟଂ ତଦଗ୍ରଂ ସ୍ୟାଦବାଚ୍ୟଂ ବୁଦ୍ଧି ସୂକ୍ଷ୍ମତଃ ।
ଦଦୃଶୁର୍ଯେ ମହାତ୍ମାନଃ ଯସ୍ତଂ ବେଦ ସ ବେଦବିତ୍ ॥ ୮୧

ପ୍ରଣବ ଜ୍ଞାନୀଗଣଙ୍କର ଊର୍ଦ୍ଧ୍ୱ ମୁଖ ହୁଅନ୍ତି, ଅଜ୍ଞାନରେ ଅଧୋମୁଖ, ଏହିପରି ପ୍ରଣବ ଅବସ୍ଥାନ କରନ୍ତି,—ତାଙ୍କୁ ଯେ ଜାଣନ୍ତି ସେ ବେଦବେତ୍ତା । ତୈଳଧାରା ପରି ଅଚ୍ଛିନ୍ନ, ଦୀର୍ଘ ଘଣ୍ଟାଧ୍ୱନିପରି ଅଖଣ୍ଡିତ, ଏହିପରି ପ୍ରଣବର ଧ୍ୱନି । ତାଙ୍କର ଅଗ୍ର ବ୍ରହ୍ମ ବୋଲି କଥିତ ହୁଅନ୍ତି; ତାଙ୍କର ଜ୍ୟୋତିର୍ମୟ ଅଗ୍ର ସୂକ୍ଷ୍ମ ବୁଦ୍ଧି ଦ୍ୱାରା ବୁଝା ଯାଇପାରେ ନାହିଁ । ଯେଉଁମାନେ ମହାତ୍ମା ସେହିମାନେ ତାଙ୍କର ଦର୍ଶନ କରନ୍ତି; ସେ ତାହା ଜାଣନ୍ତି, ସେ ବେଦବିତ୍ ।

ଶିଷ୍ୟ—ଧ୍ୟାନବିନ୍ଦୁ ଶ୍ରୁତିରେ ମଧ୍ୟ ନାଦ କଥା ଏହିପରି ବର୍ଣ୍ଣିତ ହୋଇଅଛି ।

ହଁ, ଏହି ଶ୍ରୁତି ଆହୁରି କହିଛନ୍ତି—

ଯଥେଷ୍ଟଧାରଣଂ ବାୟୋରନଳସ୍ୟ ପ୍ରଦୀପନଂ ।
ନାଦାଭିବ୍ୟକ୍ତିରାରୋଗ୍ୟଂ ଜାୟତେ ନାଡ଼ୀଶୋଧନାତ୍ ॥ ୯୯

ନାଡ଼ୀ ଶୋଧିତ ହେଲେ ଯଥେଷ୍ଟ ବାୟୁଧାରଣର ଶକ୍ତି, ଜଠରାଗ୍ନିର ଦୀପ୍ତି, ନାଦର ଅଭିବ୍ୟକ୍ତି ଏବଂ ଆରୋଗ୍ୟ ଲାଭ ହୋଇଥାଏ ।

ଶିଷ୍ୟ—ନାଡ଼ୀଶୋଧନ ହେଲେ ତେବେ ଯାଇ ନାଦର ପ୍ରକାଶ ହୁଏ ?

ଗୁରୁ—ହଁ,

ଗଗନଂ ପବନେ ପ୍ରାପ୍ତେ ଧ୍ୱନିରୁତ୍ପଦ୍ୟତେ ମହାନ୍ ।
ଘଣ୍ଟାଦୀନାଂ ପ୍ରବାଦ୍ୟାନାଂ ନାଦ ସିଦ୍ଧିରୁଦୀରିତା ॥ ୧୧୫

ପ୍ରାଣବାୟୁ ଆକାଶକୁ ଗମନ କଲେ ଘଣ୍ଟା ପ୍ରଭୃତି ବାଦ୍ୟ ପରି ମହାନ୍ ଧ୍ୱନି ଉତ୍ପନ୍ନ ହୁଏ, ତାହା ନାଦସିଦ୍ଧି ବୋଲି କଥିତ ହୋଇଥାଏ ।

ଯତ୍ର ସମାଧୌ ପରଂ ଜ୍ୟୋତିରନନ୍ତଂ ବିଶ୍ୱତୋମୁଖଂ ।
ତସ୍ମିନ୍ ଦୃଷ୍ଟେ କ୍ରିୟାକର୍ମ ଯାତାୟାତୋ ନ ବିଦ୍ୟତେ ॥ ୧୧୨

ସମାଧି କାଳରେ ଯେଉଁ ଅପରିସୀମ ସର୍ବତୋମୁଖ ଅତ୍ୟୁତ୍ତମ ଜ୍ୟୋତି ଆବିର୍ଭାବ ହୁଏ, ତାହା ଦର୍ଶନ କଲେ କ୍ରିୟା କର୍ମ ଯାତାୟାତ ରହେନାହିଁ ।

ଶିଷ୍ୟ—ନାଦ ଶୁଣୁ ଶୁଣୁ କଣ ଜ୍ୟୋତି ଦେଖାଯାଏ ?

ଗୁରୁ—ନାଦ ଯେତେ ସୂକ୍ଷ୍ମରୁ ସୂକ୍ଷ୍ମତର ସୂକ୍ଷ୍ମତମ ହେଉଥାନ୍ତି ଜ୍ୟୋତି ସେତିକି ପ୍ରକାଶମୟ ଓ ଅଚଞ୍ଚଳ ଦୃଷ୍ଟ ହୁଅନ୍ତି, ଶେଷରେ ଦ୍ରଷ୍ଟୃତ୍ୱଭାବ ଆଉ ରହେନାହିଁ । ସେ ଏହା ପୂର୍ବରୁ ମଧ୍ୟ କହିଛନ୍ତି—

ସମାଧୌ ପରମଂ ଜ୍ୟୋତିରନନ୍ତଂ ବିଶ୍ୱତୋମୁଖଂ । ୧୦
ତସ୍ମିନ୍ ଦୃଷ୍ଟେ ମହାଯୋଗେ ଯାତାୟାତୋ ନ ବିଦ୍ୟତେ ॥

ନାଦର ଦେହ ହେଲା ଜ୍ୟୋତି ଓ ବିନ୍ଦୁ । ହଠଯୋଗୀର ଧ୍ୟେୟ ଜ୍ୟୋତି ଓ ଲୟଯୋଗୀର ଧ୍ୟେୟ ବିନ୍ଦୁ । ଏହି ବିନ୍ଦୁ ଦର୍ଶନ ପାଇଁ ଚେଷ୍ଟା କରିବାକୁ ପଡ଼େ ନାହିଁ । ନାଦ ଶୁଣୁ ଶୁଣୁ ସୂକ୍ଷ୍ମାତିସୂକ୍ଷ୍ମ ବିନ୍ଦୁ ସ୍ୱୟଂ ଆବିର୍ଭୂତ ହୁଅନ୍ତି, ପୁସ୍ତକପାଠ ସମୟରେ ବା ଲେଖିବା ସମୟରେ ମଧ୍ୟ ସେ ବିନ୍ଦୁ ବାହାରେ ଦୃଷ୍ଟିଗୋଚର ହୁଏ—ଏତେ ସୂକ୍ଷ୍ମ ଯେ ତାହା ବର୍ଣ୍ଣନା କରି ହୁଏ ନାହିଁ, କିନ୍ତୁ ଦେଖାଯାଏ ।

ନିର୍ବାଣ-ଶ୍ରୁତିରେ କଥିତ ହୋଇଅଛି—ଶ୍ମଶାନେ ଅନାହତାଙ୍ଗୀ । ଶ୍ମଶାନ ଶବ୍ଦର ଅର୍ଥ ସୁଷୁମ୍ନା, ଅନାହତ ମନ୍ତ୍ର ।

ଅନାହତ ନାଦହିଁ ଯତିର ଶେଷ ସମ୍ବଳ, ସେଇ ଯତିକୁ ପରମପଦ ଦାନ କରନ୍ତି । ମଣ୍ଡଳ ବ୍ରାହ୍ମଣ ଶ୍ରୁତିରେ ଜ୍ୟୋତି ଆକାଶ ପ୍ରଭୃତି କଥିତ ହୋଇଅଛି ।

ଶିଷ୍ୟ—ଜ୍ୟୋତି କଥା କଣ କହିଛନ୍ତି ?

ଗୁରୁ—ଭୀଷଣ ସଂସାର-ସାଗରରୁ ଉତ୍ତୀର୍ଣ୍ଣ ହେବା ପାଇଁ ସୂକ୍ଷ୍ମମାର୍ଗ ଅବଲମ୍ବନ କର—

ସତ୍ତ୍ୱାଦିଗୁଣାନତିକ୍ରମ୍ୟ ତାରକମବଲୋକୟେତ୍ ଭ୍ରୂମଧ୍ୟେ ସଚ୍ଚିଦାନନ୍ଦ-ତେଜଃକୂଟରୂପଂ ତାରକଂ ବ୍ରହ୍ମ ।

ସତ୍ତ୍ୱାଦିଗୁଣ ଅତିକ୍ରମ କରି ତାରକ ଅବଲୋକନ କରିବ । ଭ୍ରୂମଧ୍ୟରେ ସଚ୍ଚିଦାନନ୍ଦ ତେଜ ଗିରିଶୃଙ୍ଗବତ୍ ନିଶ୍ଚଳ—ତାହାହିଁ ତାରକବ୍ରହ୍ମ । ମୂଳାଧାରରୁ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ସୂର୍ଯ୍ୟସଦୃଶ ପ୍ରଭା-ବିଶିଷ୍ଟା ତନ୍ମଧ୍ୟରେ ମୃଣାଳତନ୍ତୁସୂକ୍ଷ୍ମା ଜ୍ୟୋତିର୍ମୟୀ କୁଣ୍ଡଳିନୀ । ଯେଉଁ ସ୍ଥାନରେ ତମୋନିବୃତ୍ତି—ତାହା ଦର୍ଶନ କଲେ ସର୍ବପାପର ନିବୃତ୍ତି ହୋଇଥାଏ । ଅନ୍ତର୍ଲକ୍ଷ୍ୟ ସୁଷୁମ୍ନା ପ୍ରଭୃତି, ବହିର୍ଲକ୍ଷ୍ୟ ନାସାଗ୍ରରେ ଜ୍ୟୋତିଦର୍ଶନ । ମସ୍ତକ ଉପରେ ଦ୍ୱାଦଶ ଅଙ୍ଗୁଳି ପରିମାଣ ଜ୍ୟୋତିଦର୍ଶନରେ ଅମୃତତ୍ୱ ଲାଭ ହୁଏ । ମଧ୍ୟ ଲକ୍ଷ୍ୟ ଆକାଶ ଆଦି କଥା କହିଛନ୍ତି ।

ମୂର୍ତ୍ତାମୂର୍ତ୍ତ ଭେଦରେ ତାରକ ଦୁଇ ପ୍ରକାର—ଯାହା ଇନ୍ଦ୍ରିୟାନ୍ତ ତାହା ମୂର୍ତ୍ତ ତାରକ, ଯାହା ଭ୍ରୂଯୁଗାତୀତ ତାହା ଅମୂର୍ତ୍ତ ତାରକ ।

ଅମା ପୂର୍ଣ୍ଣିମା ପ୍ରତିପଦ—ତିନି ପ୍ରକାର ଦୃଷ୍ଟି କଥା ଉଲ୍ଲେଖ କରି ଅଛନ୍ତି । ନିମୀଳିତ ଦୃଷ୍ଟି ଅମାଦୃଷ୍ଟି, ଅର୍ଦ୍ଧୋନ୍ମୀଳିତ ପ୍ରତିପତ୍, ସର୍ବୋନ୍ମୀଳନ ପୂର୍ଣ୍ଣିମା । ପୂର୍ଣ୍ଣିମା ଅଭ୍ୟାସ କରିବା କର୍ତ୍ତବ୍ୟ—ତାହାର ଲକ୍ଷ୍ୟ ନାସାଗ୍ର ।

ଶିଷ୍ୟ—ଜ୍ୟୋତିର ସ୍ୱରୂପ କଣ ?

ଗୁରୁ—ତଦା ପଶ୍ଚିମାଭିମୁଖପ୍ରକାଶଃ ସ୍ଫଟିକ-ଧୂମ୍ରବିନ୍ଦୁନାଦ-କଳାନକ୍ଷତ୍ର-ଖଦ୍ୟୋତ-ଦୀପନେତ୍ର-ସୁବର୍ଣ୍ଣନବରତ୍ନାଦିପ୍ରଭା ଦୃଶ୍ୟନ୍ତେ । ତଦେବ ପ୍ରଣବସ୍ୱରୂପମ୍ ।

ସେତେବେଳେ ମେରୁଦଣ୍ଡସ୍ଥିତ ସୁଷୁମ୍ନାରେ ସ୍ଫଟିକମଣି (କାଚ) ଧୂମ୍ରବିନ୍ଦୁ (ଚନ୍ଦ୍ରକଳାପରି ଜ୍ୟୋତିଃ) ନାଦ ("ଦୀପଶିଖାବତ୍ ଜ୍ୟୋତିଃ") କଳା ("ବିଦ୍ୟୁତ୍‌ରେଖାବତ୍ ଜ୍ୟୋତିଃ") ନକ୍ଷତ୍ର, ଜୁଳୁଜୁଳିଆ ପୋକ, ଦୀପନେତ୍ର ସୁବର୍ଣ୍ଣ ନବରତ୍ନ ପ୍ରଭୃତି ଆକାରର ଜ୍ୟୋତି ଦେଖାଯାଏ—ତାହାହିଁ ପ୍ରଣବର ସ୍ୱରୂପ । ଯନ୍ମୁଖୀକରଣ-ମୁଦ୍ରାଦ୍ୱାରା ଅର୍ଥାତ୍ ଦୁଇ କରାଙ୍ଗୁଳିଦ୍ୱାରା କର୍ଣ୍ଣରନ୍ଧ୍ର ନିରୋଧପୂର୍ବକ ପ୍ରଣବ ଧ୍ୱନି ଶୁଣିବା କଥା ମଧ୍ୟ କହିଛନ୍ତି ।

ଶିଷ୍ୟ—ପ୍ରଣବ ଜ୍ୟୋତି ନାଦ—ଏମାନେ କି ଅଭିନ୍ନ ପଦାର୍ଥ ?

ଗୁରୁ—ନିଶ୍ଚୟ, ତେବେ କେହି କେହି ସାଧକ ପ୍ରଥମେ ଜ୍ୟୋତି, ପରେ ନାଦ ପ୍ରାପ୍ତ ହୋଇଥାନ୍ତି । କେହି ବା ପ୍ରଥମ ନାଦ ଲାଭ କରନ୍ତି । ଜ୍ୟୋତି ଯେ ନାଦର ରୂପ—ଏକଥା ମନେ ଅଛି ତ ?

ଶିଷ୍ୟ—ଆଜ୍ଞା ହଁ, ଆଚ୍ଛା ଆକାଶ କେତେ ପ୍ରକାର ?

ଗୁରୁ—ଏହି ଶ୍ରୁତିରେ ବ୍ୟୋମପଞ୍ଚକ କଥିତ ହୋଇଅଛି—ଆକାଶ, ପରାକାଶ, ମହାକାଶ, ସୂର୍ଯ୍ୟାକାଶ, ପରମାକାଶ । ବାହ୍ୟାଭ୍ୟନ୍ତର ଅନ୍ଧକାରମୟ ଆକାଶ, ବାହ୍ୟ ଅଭ୍ୟନ୍ତରରେ ପ୍ରଳୟକାଳୀନ ଅନଳପରି ପରାକାଶ; ବାହ୍ୟ ଅଭ୍ୟନ୍ତରରେ ଅପରିମିତ ଜ୍ୟୋତିପରି ତତ୍ତ୍ୱ ମହାକାଶ ; ବାହ୍ୟ ଅଭ୍ୟନ୍ତରରେ ସୂର୍ଯ୍ୟପରି ସୂର୍ଯ୍ୟାକାଶ; ଅନିର୍ବଚନୀୟ ଜ୍ୟୋତି ସର୍ବବ୍ୟାପକ ନିରତିଶୟ ଆନନ୍ଦ ଲକ୍ଷଣ ପରମାକାଶ । ଯେଉଁ ସାଧକ ଯେଉଁ ଆକାଶ ଦର୍ଶନ କରନ୍ତି ତାଙ୍କର ଅଭ୍ୟାସରେ ସେହିପରି ହୁଅନ୍ତି ।

ଶିଷ୍ୟ—ଆକାଶ କି ନାଦ ?

ଗୁରୁ—ନାଦର ସମଷ୍ଟିହିଁ ଆକାଶ ।

"ଶବ୍ଦ ଯେଉଁଠାରେ ଲୟ ହୁଏ ତାହାହିଁ ପରମ ବ୍ୟୋମ । ବିବିଧ ଶବ୍ଦଜାତ ଉପଶାନ୍ତ ହେଲେ ଯେଉଁ ଶବ୍ଦ ସ ମାନ୍ୟ ଅବଶିଷ୍ଟ ଥାନ୍ତି ତାହାହିଁ ପରମବ୍ୟୋମ ।" ଦୟାଲ ମହାରାଜ

ଶବ୍ଦ ତନ୍ମାତ୍ରଭୂତଃ ଆକାଶସ୍ୟ ମିଥ୍ୟାଭୂତାକାଶସ୍ୟ, ଗୁଣଃ ପରିଣାମ୍ୟୁପାଦାନଂ ॥ ଗୌଡ଼ପାଦ ଉତ୍ତର ଗୀତା ।

ଗୁଣର ଅର୍ଥ ପରିଣାମୀ ଉପାଦାନ ।

ଅନାହତସ୍ୟ ଶବ୍ଦସ୍ୟ ତସ୍ୟ ଶବ୍ଦସ୍ୟ ଯୋ ଧ୍ୱନିଃ ।
ଧ୍ୱନେରନ୍ତର୍ଗତଂ ଜ୍ୟୋତିର୍ଜ୍ୟୋତିରନ୍ତର୍ଗତଂ ମନଃ ॥
ଯନ୍ମନସ୍ତ୍ରିଜଗତ୍‌ସୃଷ୍ଟିସ୍ଥିତିବ୍ୟସନକର୍ମକୃତ୍ ।
ତନ୍ମନୋ ବିଲୟଂ ଯାତି ତଦ୍ ବିଷ୍ଣୋଃ ପରମଂ ପଦମ୍ ॥
ତଲ୍ଲୟାଚ୍ଛୁଦ୍ଧାଦ୍ୱୈତଂ ଭେଦାଭାବାତ୍ । ଏତଦେବ ପରମତତ୍ତ୍ୱମ୍ ।

ଅନାହତ ଶବ୍ଦର ଯେଉଁ ଧ୍ୱନି—ଧ୍ୱନିର ଅନ୍ତର୍ଗତ ଯେଉଁ ଜ୍ୟୋତିଃ—ଜ୍ୟୋତିର ଅଭ୍ୟନ୍ତରରେ ମନ । ଯେଉଁ ମନ ତ୍ରିଜଗତର ସୃଷ୍ଟି-ସ୍ଥିତି-ନାଶ କରିଥାଏ, ସେହି ମନ ଯେଉଁଥିରେ ବିଲୀନ ହୁଏ ତାହାହିଁ ବିଷ୍ଣୁଙ୍କର ପରମ ପଦ । ମନୋଲୟ ହେଲେ ଭେଦର ଅଭାବରେ ଶୁଦ୍ଧ ଅଦ୍ୱୈତ । ଏହାହିଁ ପରମ ତତ୍ତ୍ୱ ।

ଅଦ୍ୱୟ-ତାରକ-ଶ୍ରୁତିରେ ମଣ୍ଡଳବ୍ରାହ୍ମଣଶ୍ରୁତି ପରି ତାରକ ଜ୍ୟୋତି ଦର୍ଶନର କଥା ଅଛି ।

ଚିତ୍‌ସ୍ୱରୂପୋଽହମିତି ସଦା ଭାବୟନ୍ ସମ୍ୟଙ୍ନିମୀଳିତାକ୍ଷଃ କିଞ୍ଚିଦୁନ୍ମୀଳିତାକ୍ଷୋ ବାନ୍ତର୍ଦୃଷ୍ଟ୍ୟା ଭ୍ରୂଦହରାଦୁପରି ସଚ୍ଚିଦାନନ୍ଦତେଜଃ କୂଟରୂପଂ ପରଂ ବ୍ରହ୍ମାବଲୋକୟଂ ସ୍ତଦ୍ରୂପୋ ଭବତି ।

ଚିଦାକାଶଂ ଚିଦାକାଶମାକାଶଞ୍ଚ ତୃତୀୟକମ୍ ।
ଦ୍ୱାଭ୍ୟାଂ ଶୂନ୍ୟତରଂ ବିଦ୍ଧି ଚିଦାକାଶଂ ମହାମୁନେ ॥ ୫୪

ମହୋପନିଷଦ୍

ଗର୍ଭ ଜନ୍ମ ଜରାମରଣ ସଂସାର ମହାଭୟରୁ ସମ୍ୟକ୍ ତାରଣ କରନ୍ତି—ତସ୍ମାତ୍ତାରକମିତି ।

ପ୍ରାୟୁହିଁ ସବୁ ଏହିପରି । ଆକାଶର ବିଶେଷ—ପ୍ରାତଶ୍ଚିହ୍ନାଦି ବର୍ଣ୍ଣ ଅଖଣ୍ଡ ସୂର୍ଯ୍ୟଚନ୍ଦ୍ର ପରି, ବହ୍ନିଜ୍ୱାଳାସମୂହ ପରି, ତଦ୍‌ବିହୀନ ଅନ୍ତରୀକ୍ଷ ପରି ଦେଖି ତଦାକାରରେ ଆକାରିତ ହୋଇ ଅବସ୍ଥିତ ହୁଏ । ପୁନଃ ପୁନଃ ଦର୍ଶନରେ ଗୁଣରହିତ ଆକାଶ । ବିଶେଷରୂପେ ବିକାଶଯୁକ୍ତ ତାରକା ପରି ସମ୍ୟକ୍ ଦୀପ୍ୟମାନ ଗାଢ଼ତମ ପରି ପରମାକାଶ । କାଳାନଳ ପରି ଦୀପ୍ତିମାନ ମହାକାଶ, ସର୍ବୋତ୍କୃଷ୍ଟ ପରମ ତେଜ ପ୍ରକୃଷ୍ଟ ରୂପେ ପ୍ରକାଶମାନ ତତ୍ତ୍ୱାକାଶ । କୋଟି ସୂର୍ଯ୍ୟ ପ୍ରକାଶ ସମାନ ସୂର୍ଯ୍ୟାକାଶ ।

ଶିଷ୍ୟ—ଏ ଶ୍ରୁତି ଆକାଶର କଣ କଣ ନାମ କହିଛନ୍ତି ?

ଗୁରୁ—ଆକାଶ, ପରମାକାଶ, ମହାକାଶ, ତତ୍ତ୍ୱାକାଶ, ସୂର୍ଯ୍ୟାକାଶ ।

ଶିଷ୍ୟ—ମଣ୍ଡଳବ୍ରାହ୍ମଣ-ଶ୍ରୁତି ଆକାଶର କଣ ନାମ କହିଛନ୍ତି ?

ଗୁରୁ—ଆକାଶ, ପରାକାଶ, ମହାକାଶ, ସୂର୍ଯ୍ୟାକାଶ, ପରମାକାଶ—ଏକାପରି, ପରମାକାଶ ବା ତତ୍ତ୍ୱାକାଶ ଏକା କଥା ।

ତସ୍ମାଚ୍ଛୁକ୍ଲତେଜୋମୟଂ ବ୍ରହ୍ମେତି ସିଦ୍ଧମ୍ । ତଦ୍‌ବ୍ରହ୍ମ ମନଃ-ସହକାରି-ଚକ୍ଷୁଷାନ୍ତର୍ଦୃଷ୍ଟ୍ୟା ବେଦ୍ୟଂ ଭବତି ।

ଶୁକ୍ଳ ତେଜୋମୟ ଜ୍ୟୋତିବ୍ରହ୍ମ, ସେହି ବ୍ରହ୍ମ ମନଃ-ସହକାରୀ ଚକ୍ଷୁଦ୍ୱାରା ଅନ୍ତର୍ଦୃଷ୍ଟିରେ ଜ୍ଞେୟ ହୁଅନ୍ତି ।

ଶାଣ୍ଡିଲ୍ୟ ଶ୍ରୁତି —

ଯଥେଷ୍ଟଧାରଣଂ ବାୟୋରନଳସ୍ୟ ପ୍ରଦୀପନଂ ।
ନାଦାଭିବ୍ୟକ୍ତିରାରୋଗ୍ୟଂ ଜାୟତେ ନାଡ଼ୀଶୋଧନାତ୍ ॥ ୭

ନାଡ଼ୀ ଶୋଧିତ ହେଲେ ଯଥେଷ୍ଟ ବାୟୁଧାରଣର ଶକ୍ତି, ଅନଳର ଦୀପ୍ତି ଓ ନାଦର ପ୍ରକାଶ ହୁଏ ।

କେବଳ କୁମ୍ଭକାତ୍ କୁଣ୍ଡଳମାଟବୋଧୋ ଜାୟତେ । ତତଃ କୃଶବପୁଃ ପ୍ରସନ୍ନବଦନୋ ନିର୍ମ୍ମଳଲୋଚନୋଽଭିବ୍ୟକ୍ତନାଦୋ ନିର୍ମ୍ମୁକ୍ତରୋଗମାଲୋ ଜିତବିନ୍ଦୁଃ ପଟ୍ୱଗ୍ନିର୍ଭବତି ।

ଶିଷ୍ୟ—ନାଦର ଅଭିବ୍ୟକ୍ତି କେବଳ-କୁମ୍ଭକ-ସିଦ୍ଧି ନ ହେଲେ ହୁଏ ନାହିଁ ।

ଗୁରୁ—ନାଡ଼ୀ ଶୁଦ୍ଧି ହେଲେ କେବଳ-କୁମ୍ଭକ-ସିଦ୍ଧି ହୁଏ, ସେତେବେଳକୁ ବିନା ଚେଷ୍ଟାରେ ସର୍ବଦା ନାଦ ଶ୍ରୁତିଗୋଚର ହୁଏ ।

ଜ୍ୟୋତିରୂପମଶେଷବାହ୍ୟରହିତଂ ଦେଦୀପ୍ୟମାନଂ ପରଂ ।
ତତ୍ତ୍ୱଂ ତତ୍ ପରମସ୍ତି ବସ୍ତୁବିଷୟଂ ଶାଣ୍ଡିଲ୍ୟ ବିଦ୍ଧୀହି ତତ୍ ॥ ୧୬

ଜ୍ୟୋତିରୂପ, ଅଶେଷ ବାହ୍ୟରହିତ, ଦେଦୀପ୍ୟମାନ ପରମ ତତ୍ତ୍ୱ ଜଗତର ଯେ ପରମ ବସ୍ତୁ ତାହାହିଁ ଜ୍ୟୋତି ।

ଅଥ କସ୍ମାଦୁଚ୍ୟତେ ମହେଶ୍ୱର ଇତି । ଯସ୍ମାନ୍ ମହତ ଈଶଃ ଶବ୍ଦଧ୍ୱନ୍ୟା ଚିତ୍ଶକ୍ତ୍ୟା ଚ ମହତ ଈଶତେ ତସ୍ମାଦୁଚ୍ୟତେ ମହେଶ୍ୱର ଇତି ।

ଯେହେତୁ ମହାନ୍ ଈଶ୍ୱର ଶବ୍ଦଧ୍ୱନି ଦ୍ୱାରା ଏବଂ ଆତ୍ମଶକ୍ତି-ଦ୍ୱାରା ମହା ଐଶ୍ୱର୍ଯ୍ୟ ପ୍ରକାଶ କରନ୍ତି ସେହି ହେତୁରୁ ସେ ମହେଶ୍ୱର ।

ଯୋଗଶିଖୋପନିଷଦରେ ଅଛି— (୨ୟ ଅଧ୍ୟାୟ)

ଆତ୍ମମନ୍ତ୍ରସଦାଭ୍ୟାସାତ୍ ପରତତ୍ତ୍ୱଂ ପ୍ରକାଶତେ ।
ତଦଭିବ୍ୟକ୍ତିଚିହ୍ନାନି ସିଦ୍ଧିଦ୍ୱାରାଣି ମେ ଶୃଣୁ ॥ ୧୮
ଦୀପଜ୍ୱାଲେନ୍ଦୁଖଦ୍ୟୋତବିଦ୍ୟୁନ୍ନକ୍ଷତ୍ରଭାସ୍ୱରାଃ ।
ଦୃଶ୍ୟନ୍ତେ ସୂକ୍ଷ୍ମରୂପେଣ ସଦା ଯୁକ୍ତସ୍ୟ ଯୋଗିନଃ ॥ ୧୯
ଅଣିମାଦିକମୈଶ୍ୱର୍ଯ୍ୟମଚିରାତ୍ତସ୍ୟ ଜାୟତେ ॥

ସର୍ବଦା ଆତ୍ମମନ୍ତ୍ରର ଅଭ୍ୟାସ ଦ୍ୱାରା ପରତତ୍ତ୍ୱର ପ୍ରକାଶ ହୁଏ । ସିଦ୍ଧିର ଦ୍ୱାର ସ୍ୱରୂପ ତାହାର ପ୍ରକାଶର ଚିହ୍ନଗୁଡ଼ିକ ମୋ ନିକଟରୁ ଶ୍ରବଣ କର । ଦୀପଶିଖା, ଚନ୍ଦ୍ର, ଜ୍ୟୋତିଙ୍ଗନ୍ଧ ଆଲୋକ, ବିଦ୍ୟୁତ୍, ନକ୍ଷତ୍ର ପ୍ରଭୃତି ପରି ଦୀପ୍ତିଶୀଳ ଜ୍ୟୋତିସବୁ ସୂକ୍ଷ୍ମରୂପରେ ସର୍ବଦା ଯୁକ୍ତ ଯୋଗିଗଣ ଦର୍ଶନ କରିଥାନ୍ତି । ଅଣିମାଦି ଐଶ୍ୱର୍ଯ୍ୟ ଅତିଶୀଘ୍ର ତାଙ୍କ ନିକଟରେ ଉପସ୍ଥିତ ହୋଇଥାଏ ।

ଶିଷ୍ୟ—ଏହି ଜ୍ୟୋତିସବୁ ସିଦ୍ଧିର ଦ୍ୱାର ସ୍ୱରୂପ—ଏମାନଙ୍କୁ ଦର୍ଶନ କଲେ ସିଦ୍ଧିର ଦ୍ୱାର ଉନ୍ମୁକ୍ତ ହେଲାଣି ବୋଲି ବୁଝିବାକୁ ହେବ ।

ଗୁରୁ—ହଁ, ଏହି ଜ୍ୟୋତିସବୁ ଦର୍ଶନ କଲାପରେ ଆପଣାକୁ ଏତିକରେ କୃତାର୍ଥ ମନେ ନ କରି ପ୍ରାଣପଣେ ସାଧନା କରିବାକୁ ହେବ ।

ଶିଷ୍ୟ—କେତେ ଦିନ ?

ଗୁରୁ—ଯେତେଦିନ ସାଧନା ଶେଷ ନ ହୋଇଛି ଅର୍ଥାତ୍ ମନୋଲୟ ନ ହୋଇଛି । ଭଗବାନ୍ ଆତ୍ମସାତ୍ ନ କରିଛନ୍ତି ।

ଅନ୍ନପୂର୍ଣ୍ଣା ଶ୍ରୁତିରେ କଥିତ ହୋଇଅଛି—

ସ୍ୱଶରୀରେ ସ୍ୱୟଂ ଜ୍ୟୋତିଃସ୍ୱରୂପଂ ସର୍ବସାକ୍ଷିଣମ୍ ।
କ୍ଷୀଣଦୋଷାଃ ପ୍ରପଶ୍ୟନ୍ତି ନେତରେ ମାୟୟାବୃତାଃ ॥ ୩୬
ଚତୁର୍ଥୋଽଧ୍ୟାୟଃ

କ୍ଷୀଣଦୋଷ ଯୋଗିଗଣ ସ୍ୱୀୟ ଶରୀରରେ ସର୍ବସାକ୍ଷୀସ୍ୱରୂପ ସ୍ୱତଃପ୍ରକାଶିତ ଜ୍ୟୋତି ଦର୍ଶନ କରନ୍ତି । ମାୟାଦ୍ୱାରା ଆବୃତ ଅସାଧକଗଣ ତାହା ଦେଖିବାକୁ ସମର୍ଥ ହୁଅନ୍ତି ନାହିଁ ।

ପାଶୁପତବ୍ରହ୍ମଶ୍ରୁତି—ତନ୍ମୟଯଜ୍ଞୋ ନାଦାନୁସନ୍ଧାନଂ ।
ଅନ୍ତଃପ୍ରଣବନାଦାଖ୍ୟୋ ହଂସଃ ପ୍ରତ୍ୟୟବୋଧକଃ ।
ଅନ୍ତର୍ଗତ ପ୍ରମାଗୂଢ଼ଂ ଜ୍ଞାନନାଳଂ ବିରାଜିତମ୍ ॥ ୩

ଶିବଶକ୍ତ୍ୟାତ୍ମକଂ ରୂପଂ ଚନ୍ଦ୍ରସ୍ଥାନନ୍ଦକେନ୍ଦ୍ରତମ୍ ।
ନାଦବିନ୍ଦୁକଳା ସ୍ତୀଣି ନେତ୍ରଂ ବିଶ୍ୱବିଚେଷ୍ଟିତମ୍ ॥ ୪
ତ୍ରିସ୍ତମ୍ଭାନ୍ ଶିଖା ସ୍ତୀଣି ତ୍ରିତ୍ତ୍ୱାଣାଂ ସାକ୍ଷ୍ୟମାକୃତିଃ ।
ଅନ୍ତର୍ଗୂଢ଼ପ୍ରମା ହଂସଃ ପ୍ରମାଣାନ୍ନିର୍ଗତଂ ବହିଃ ॥ ୫
ବ୍ରହ୍ମସୂତ୍ରପଦଂ ଜ୍ଞେୟଂ ବ୍ରାହ୍ମ୍ୟଂ ବିଧ୍ୟୁକ୍ତଲକ୍ଷଣମ୍ ।
ହଂସାର୍କପ୍ରଣବଧ୍ୟାନମିତ୍ୟୁକ୍ତୋ ଜ୍ଞାନସାଗରେ ॥ ୬
ସ୍ୱଶରୀରେ ସ୍ୱୟଂଜ୍ୟୋତିଃସ୍ୱରୂପଂ ପରମାର୍ଥିକମ୍ ।
କ୍ଷୀଣଦୋଷାଃ ପ୍ରପଶ୍ୟନ୍ତି ନେତରେ ମାୟୟାବୃତାଃ ॥ ୩୩

ଶିଷ୍ୟ—ଏହି ମନ୍ତ୍ରଟି ଅନ୍ନପୂର୍ଣ୍ଣୋପନିଷଦରେ ଅଛି, ଦ୍ୱିତୀୟ ଚରଣଟି ଖାଲି ଅନ୍ୟ ପ୍ରକାର ।

ଗୁରୁ— ହଁ, ରୁଦ୍ରହୃଦୟ-ଶ୍ରୁତିରେ କଥିତ ହୋଇଅଛି:—

ସ୍ୱଶରୀରେ ସ୍ୱୟଂ ଜ୍ୟୋତିଃସ୍ୱରୂପଂ ସର୍ବସାକ୍ଷିଣମ୍ ।
କ୍ଷୀଣଦୋଷାଃ ପ୍ରପଶ୍ୟନ୍ତି ନେତରେ ମାୟୟାବୃତାଃ ॥ ୪୯
ଏବଂ ରୂପପରିଜ୍ଞାନଂ ଯସ୍ୟାସ୍ତି ପରଯୋଗିନଃ ।
କୁତ୍ରଚିଦ୍ ଗମନଂ ନାସ୍ତି ତସ୍ୟ ପୂର୍ଣ୍ଣସ୍ୱରୂପିଣଃ ॥ ୫୦
ଆକାଶମେକଂ ସମ୍ପୂର୍ଣ୍ଣଂ କୁତ୍ରଚିନ୍ନୈବ ଗଚ୍ଛତି ।
ତଦ୍ବତ୍ ସ୍ୱାତ୍ମପରିଜ୍ଞାନୀ କୁତ୍ରଚିନ୍ନୈବ ଗଚ୍ଛତି ॥ ୫୧
ସ ଯୋ ହ ବୈ ତଂ ପରମଂ ବ୍ରହ୍ମ ଯୋ ବେଦ ବୈ ମୁନିଃ ।
ବ୍ରହ୍ମୈବ ଭବତି ସ୍ୱସ୍ଥଃ ସଚ୍ଚିଦାନନ୍ଦମାତୃକଃ ॥ ୫୨

ଆପଣା ଦେହରେ କ୍ଷୀଣ ଦୋଷ ଯୋଗିଗଣ ସ୍ୱତଃ ଜ୍ୟୋତି ଦର୍ଶନ କରନ୍ତି । ମାୟାଦ୍ୱାରା ଆବୃତ ଅନ୍ୟ ଲୋକମାନେ ତାହା ଦେଖି ପାରନ୍ତି ନାହିଁ । ଯେଉଁ ପରମ ଯୋଗୀଙ୍କର ଏହିପରି ଜ୍ୟୋତିର ରୂପ ବିଷୟରେ ଉତ୍ତମ ରୂପେ ଜ୍ଞାନ ହୋଇଥାଏ, ସେହି ପୂର୍ଣ୍ଣସ୍ୱରୂପ ଯୋଗୀଙ୍କର କୌଣସିଠାକୁ ଗମନ ନାହିଁ । ଯେପରି

ଏକମାତ୍ର ସମ୍ପୂର୍ଣ୍ଣ ଆକାଶ କୁଆଡ଼େ ହେଲେ ଗମନ କରେ ନାହିଁ, ସେହିପରି ସେହି ଜ୍ୟୋତିର୍ମୟ ଆତ୍ମଦର୍ଶନକାରୀ କୌଣସି ସ୍ଥାନକୁ ଗମନ କରନ୍ତି ନାହିଁ । ସେହି ପ୍ରସିଦ୍ଧ ପରମବ୍ରହ୍ମଙ୍କୁ ଯେଉଁ ମୁନି ଅନ୍ୱେଷଣ କରନ୍ତି, ସେ ସ୍ୱୟଂ ସଚ୍ଚିଦାନନ୍ଦ କାରଣ ବ୍ରହ୍ମହିଁ ହୁଅନ୍ତି ।

ଶିଷ୍ୟ—ଗୋଟିଏ ମନ୍ତ୍ର ଭିନଖଣ୍ଡ ଶ୍ରୁତିରେ ଲୁହାଯାଇଅଛି, କିନ୍ତୁ ଏହି ଶ୍ରୁତି ଯେପରି ଭାବରେ କହିଲେ ତାହା ବଡ଼ ଆଶାପ୍ରଦ । ଏହି ଜ୍ୟୋତିହିଁ ବ୍ରହ୍ମ, ଏହାଙ୍କର ଦର୍ଶନରେ ଯୋଗୀ ପୂର୍ଣ୍ଣ ହୋଇଯାନ୍ତି ।

ଗୁରୁ—ଦର୍ଶନ ଅର୍ଥରେ ସ୍ଥିତିଲାଭ । ଯେ କେତେବେଳେ ହେଲେ ଏହି ଜ୍ୟୋତି ଶୂନ୍ୟ ନ ଥାନ୍ତି, ଅନ୍ତରେ ବାହାରେ ନିରନ୍ତର ଯେ ଏହି ଜ୍ୟୋତି ଦର୍ଶନ କରୁଥାନ୍ତି, ସେ କୃତାର୍ଥ ହୁଅନ୍ତି, ତାଙ୍କର ଯାତାୟାତ ନିବୃତ୍ତି ହୁଏ ।

ଅନ୍ନପୂର୍ଣ୍ଣା ଶ୍ରୁତିରେ ଏହି ମନ୍ତ୍ର ପରେ କଥିତ ହୋଇଅଛି:—

ତମେବ ଧୀରୋ ବିଜ୍ଞାୟ ପ୍ରଜ୍ଞାଂ କୁର୍ବୀତ ବ୍ରାହ୍ମଣଃ ।
ନାନୁଧ୍ୟାୟେଦ୍ ବହୂଞ୍ଛବ୍ଦାନ୍ ବାଚୋ ବିଗ୍ଲାପନଂ ହି ତତ୍ ॥ ୩୭

ସେହି ଜ୍ୟୋତିକୁ ବିଶେଷ ଭାବରେ ଜାଣି ଧୀର ବ୍ରାହ୍ମଣ ବୁଦ୍ଧିକୁ ତଦାକାର କରିବେ, ବହୁ ଶବ୍ଦ ଧ୍ୟାନ କରିବେ ନାହିଁ, ତାହା ବାକ୍ୟର ଗ୍ଲାନିଜନକ ।

ପାଶୁପତ-ବ୍ରହ୍ମୋପନିଷଦରେ ମଧ୍ୟ ଏହି ମନ୍ତ୍ରର ଶେଷରେ ଅଛି:—

ଏବଂ ସ୍ୱରୂପବିଜ୍ଞାନଂ ଯସ୍ୟ କସ୍ୟାସ୍ତି ଯୋଗିନଃ ।
କୁତ୍ରଚିଦ୍ ଗମନଂ ନାସ୍ତି ତସ୍ୟ ସମ୍ପୂର୍ଣ୍ଣରୂପିଣଃ ॥ ୩୪
ଆକାଶମେକଂ ସମ୍ପୂର୍ଣ୍ଣଂ କୁତ୍ରଚିନ୍ନ ହି ଗଚ୍ଛତି ।
ତଦ୍ବଦ୍ ବ୍ରହ୍ମାତ୍ମବିଚ୍ଛ୍ରେଷ୍ଠଃ କୁତ୍ରଚିନ୍ନୈବ ଗଚ୍ଛତି ॥ ୩୫

ଏହି ଜ୍ୟୋତିର୍ଦର୍ଶନରୂପକ ସ୍ୱରୂପ-ବିଜ୍ଞାନ ଯେଉଁ ଯୋଗୀଙ୍କର ହୁଏ, ସେହି ସମ୍ପୂର୍ଣ୍ଣସିଦ୍ଧିଦଶ ଯୋଗୀଙ୍କର କୌଣସି ସ୍ଥାନକୁ ଗମନ ହୁଏ ନାହିଁ। ଯେପରି ଏକମାତ୍ର ସମ୍ପୂର୍ଣ୍ଣ ଆକାଶ କୌଣସି ସ୍ଥାନକୁ ଗମନ କରେନାହିଁ, ସେହିପରି ବ୍ରହ୍ମାମୃତବିତ୍ ପ୍ରଧାନ କେଉଁଠିକୁ ହେଲେ ଗମନ କରନ୍ତି ନାହିଁ—ଅର୍ଥାତ୍ ସଦ୍ୟୋମୁକ୍ତି ଲାଭ କରନ୍ତି।

ଶିଷ୍ୟ—ଜ୍ୟୋତିଃ ହିଁ ଆତ୍ମା—ଜ୍ୟୋତିଃ ହିଁ ବ୍ରହ୍ମ।

ଗୁରୁ—ହିଁ, ନାଦ, ଜ୍ୟୋତି, ପ୍ରଣବ—ତିନୋଟି ଯାକ ଏକା। ଏ କଥା ଭୁଲିବ ନାହିଁ।

ଶିଷ୍ୟ—ଆଜ୍ଞା ନାହିଁ। ଜ୍ୟୋତି ପ୍ରଣବର ସ୍ୱରୂପ, ନାଦ ପ୍ରଣବର ଆଦ୍ୟ ଶ୍ରେଷ୍ଠ ଅଙ୍ଗ।

ଗୁରୁ—ଶ୍ରବଣ କର—

ଅଙ୍ଗୁଷ୍ଠମାତ୍ରମାତ୍ମାନମଧୂମଜ୍ୟୋତିରୂପକମ୍।
ପ୍ରକାଶୟନ୍ତମନ୍ତସ୍ଥଂ ଧ୍ୟାୟେତ୍ କୂଟସ୍ଥମବ୍ୟୟମ୍॥ ୨୬
ଯୋଗକୁଣ୍ଡଳୀଶ୍ରୁତି (୩ୟ ଅଃ)

ପ୍ରକାଶଶୀଳ, ହୃତ୍‌ପଦ୍ମସ୍ଥିତ, ଧୂମଶୂନ୍ୟ ଜ୍ୟୋତିରୂପ, ଅକ୍ଷୟ, ନିଶ୍ଚଳ, ଏକରୂପରେ ଚିରସ୍ଥାୟୀ, ଅଙ୍ଗୁଷ୍ଠମାତ୍ର ଆତ୍ମାକୁ ଧ୍ୟାନ କରିବ।

ମହାବାକ୍ୟ-ଶ୍ରୁତିରେ ଅଛି—

ଅସାବାଦିତ୍ୟୋ ବ୍ରହ୍ମେତ୍ୟଜପୟୋପହିତଂ ହଂସଃ ସୋଽହମ୍। ପ୍ରାଣାପାନାଭ୍ୟାଂ ପ୍ରତିଲୋମାନୁଲୋମାଭ୍ୟାଂ ସମୁପଲଭ୍ୟୈବଂ ସା ଚିରଂ ଲବ୍ଧ୍ୱା ତ୍ରିବୃଦାତ୍ମନି ବ୍ରହ୍ମଣ୍ୟଭିଧ୍ୟାୟମାନେ ସଚ୍ଚିଦାନନ୍ଦଃ ପରମାତ୍ମାବିର୍ଭବତି। ସହସ୍ରଭାନୁମଚ୍ଛୁରିତାପୂରିତତ୍ୱାଦଲିପ୍ୟା ପାରାବାରପୂର ଇବ। ନୈଷା ସମାଧିଃ। ନୈଷା ଯୋଗସିଦ୍ଧିଃ। ନୈଷା ମନୋଲୟଃ। ବ୍ରହ୍ମୈକ୍ୟଂ ତତ୍।

ଏହି ଆବର୍ତ୍ତ ବ୍ରହ୍ମ ଅଜପା ଦ୍ୱାରା ଉପହିତ ହଂସ ସୋହଂମନ୍ତ୍ର ଅନୁଲୋମରେ ପ୍ରତିଲୋମରେ, ଅର୍ଥାତ୍ ଅନୁଲୋମରେ ହଂସ ପ୍ରତିଲୋମରେ ସୋହଂମନ୍ତ୍ର ଦ୍ୱାରା ସମ୍ୟକ୍ ଉପଲବ୍ଧ—ତାହା ଦୀର୍ଘକାଳ ଲାଭ କରି ବିବଦ୍ ଆତ୍ମା ଓଁକାର ବ୍ରହ୍ମ ଧ୍ୟାୟମାନ ହେଲେ ସଚ୍ଚିଦାନନ୍ଦ ପରମାତ୍ମା ଆବର୍ତ୍ତିତ ହୁଅନ୍ତି । ସହସ୍ର ସୂର୍ଯ୍ୟପରି ଦୀପ୍ତିସମ୍ପନ୍ନ ସମ୍ୟକ୍ ପୂରିତ ସମୁଦ୍ର ଜଳରାଶି ପରି ଯେଉଁ ମହାନ୍ ଜ୍ୟୋତି, ତାହା ସମାଧି ନୁହେଁ, ଯୋଗସିଦ୍ଧି ନୁହେଁ, ମନୋଲୟ ନୁହେଁ—ତାହା ଜୀବବ୍ରହ୍ମର ଐକ୍ୟ ।

ସୌଭାଗ୍ୟଲକ୍ଷ୍ମୀ-ଶ୍ରୁତିରେ ନବଚକ୍ରର ଜ୍ୟୋତି କଥା ଅଛି, ତାହା ପରେ କହିବି । ମୁକ୍ତିକୋପନିଷଦରେ ଶ୍ରୀରାମଚନ୍ଦ୍ର କହିଛନ୍ତି— (୨ୟ ଅଃ)

ବହୁଶାସ୍ତ୍ରକଥାକନ୍ଥାରୋମନ୍ଥେନ ବୃଥୈବ କିମ୍ ।
ଅନ୍ୱେଷ୍ଟବ୍ୟଂ ପ୍ରଯତ୍ନେନ ମାରୁତେ ଜ୍ୟୋତିରାନ୍ତରମ୍ ॥ ୬୩

ବହୁ ଶାସ୍ତ୍ରକଥା ରୋମନ୍ଥନ କରିବା କଣ ପ୍ରୟୋଜନ, ମାରୁତରେ ପ୍ରଯତ୍ନ ସହକାରେ ଆନ୍ତର ଜ୍ୟୋତି ଅନ୍ୱେଷଣ କରିବା ହିଁ କର୍ତ୍ତବ୍ୟ ।

ଶିଷ୍ୟ—ମହାନ୍ ଜ୍ୟୋତି ଜୀବବ୍ରହ୍ମର ଐକ୍ୟ, ଅନ୍ୟାନ୍ୟ ସବୁ ଜ୍ୟୋତି କି ବ୍ରହ୍ମଜ୍ୟୋତି ?

ଗୁରୁ—ହଁ, ଶ୍ୱେତାଶ୍ୱତରୋପନିଷଦରେ ଅଛି—

ନୀହାର ଧୂମାର୍କାନିଳାନଳାନାଂ
ଖଦ୍ୟୋତବିଦ୍ୟୁତ୍‌ସ୍ଫଟିକଶଶୀନାମ୍ ।
ଏତାନି ରୂପାଣି ପୁରଃସରାଣି
ବ୍ରହ୍ମଣ୍ୟଭିବ୍ୟକ୍ତିକରାଣି ଯୋଗେ ॥ ୨ । ୧୧

ଯୋଗାଭ୍ୟାସରତ ବ୍ୟକ୍ତିର ଯେତେବେଳେ ବ୍ରହ୍ମସାକ୍ଷାତ୍କାର ହେବା ସମୟ ଉପସ୍ଥିତ ହୁଏ, ତା ପୂର୍ବରୁ ତୁଷାର ଧୂମ ସୂର୍ଯ୍ୟ ବାୟୁ

ଅଗ୍ନି ଜୁଳୁଜୁଳିଆ ପୋକ ବିଦ୍ୟୁତ୍ ସ୍ଫଟିକ ଓ ଚନ୍ଦ୍ର—ଏମାନଙ୍କର ସ୍ପର୍ଶ ଓ ଜ୍ୟୋତି ପ୍ରଭୃତି ପ୍ରକାଶ ପାଇଥାଏ ।

ଏହାର ଭାଷ୍ୟରେ ଭଗବାନ୍ ଶଙ୍କରାଚାର୍ଯ୍ୟ କହିଛନ୍ତି—ଯୋଗାଭ୍ୟାସରତ ବ୍ୟକ୍ତିର ଯୋଗସିଦ୍ଧିର ପୂର୍ବ ଚିହ୍ନଗୁଡ଼ିକ କୁହା-ଯାଉଅଛି—ନୀହାର ଅର୍ଥ ତୁଷାର, ସେହି ତୁଷାରପରି (ମୃଦୁମନ୍ଦ ଭାବରେ) ଚିତ୍ତବୃତ୍ତି ବା ଚିନ୍ତାଧାରା ହୋଇଯାଏ । ତାହାପରେ ଧୂମ ପରି ଚିତ୍ତବୃତ୍ତି ହୁଏ, ତାପରେ ସୂର୍ଯ୍ୟ, ପରେ ବାୟୁ ପରି ବୃତ୍ତି ପ୍ରକାଶ ପାଏ, ତାପରେ ଅଗ୍ନିପରି ଅତି ଉଷ୍ମ ବାୟୁ ପ୍ରବାହିତ ହୁଏ । ଅର୍ଥାତ୍ ବାହାରର ବାୟୁପରି ବିକ୍ଷୋଭିତ ପ୍ରବଳ ବାୟୁ ପ୍ରବାହିତ ହୁଏ । କେତେବେଳେ ଆକାଶ ଜୁଳୁଜୁଳିଆ ପୋକରେ ଶୋଭିତ ପରି ଦେଖାଯାଏ, କେତେବେଳେ ଅବା ବିଦ୍ୟୁତ୍ ପରି ଉଜ୍ଜ୍ୱଳ ଦୃଷ୍ଟ ହୁଏ, କେତେବେଳେ ସ୍ଫଟିକ, କେତେବେଳେ ବା ପୂର୍ଣ୍ଣଚନ୍ଦ୍ର ଦେଖାଯାଏ । ଯୋଗସାଧନାରେ ରତ ଥିବାବେଳେ ବ୍ରହ୍ମସ୍ଫୁରଣର ପୂର୍ବବର୍ତ୍ତୀ ଏହି ସବୁ ଚିହ୍ନ ପ୍ରକାଶ ପାଇଲେ ବୁଝିବାକୁ ହେବ ଯେ ଯଥାର୍ଥ ଯୋଗସିଦ୍ଧି ହେବ ।

ବାସୁଦେବୋପନିଷଦ୍—

ଅଥବା ନ୍ୟସ୍ତହୃଦୟସ୍ଥ ପୁଣ୍ଡ୍ର ମଧ୍ୟେ ବା ହୃଦୟକମଳ ମଧ୍ୟେ ବା ।
ତସ୍ୟମଧ୍ୟେ ବହ୍ନିଶିଖା ଅଣୀୟୋର୍ଦ୍ଧା ବ୍ୟବସ୍ଥିତା ।
ନୀଳତୋୟଦମଧ୍ୟସ୍ଥା ବିଦ୍ୟୁଲ୍ଲେଖେବ ଭାସ୍ୱରା ।
ନୀବାରଶୂକବତ୍ ତନ୍ୱୀ ପରମାତ୍ମା ବ୍ୟବସ୍ଥିତଃ ॥ ଇତି

ହୃଦୟରେ ନ୍ୟସ୍ତ ପୁଣ୍ଡ୍ର ମଧ୍ୟରେ ଅଥବା ହୃଦୟକମଳ ମଧ୍ୟରେ ନୀଳମେଘ ମଧ୍ୟସ୍ଥିତ ବିଦ୍ୟୁତ୍‌ଲେଖାପରି ଦୀପ୍ତିଶୀଳ ଉର୍ଦ୍ଧଧାନ୍ୟର ସୂକ୍ଷ୍ମ ଅଗ୍ର ପରି ସୂକ୍ଷ୍ମ ପରମାତ୍ମା ହୃଦୟକମଳରେ ଅବସ୍ଥିତ ।

ଛାନ୍ଦୋଗ୍ୟ ଉପନିଷଦରେ ସତ୍ୟକାମଙ୍କୁ ଦେବଗଣ ଷୋଡ଼ଶ-କଳ ବ୍ରହ୍ମର ଉପଦେଶ ଦେଲେ । ପ୍ରଥମେ ପ୍ରକାଶବାନ୍ ବ୍ରହ୍ମର ପ୍ରାଚୀ ପ୍ରତୀଚୀ ଦକ୍ଷିଣା ଉଦୀଚୀ ଚତୁଷ୍କଳ ପାଦ । ପୃଥିବୀ ଅନ୍ତରୀକ୍ଷ । ଦ୍ୟୌଃ ସମୁଦ୍ର ଅନନ୍ତବାନ୍ ନାମକ ବ୍ରହ୍ମର ଚତୁଷ୍କଳ ପାଦ ।

ଅଗ୍ନିଃ କଳା ସୂର୍ଯ୍ୟଃ କଳା ଚନ୍ଦ୍ରଃ କଳା ବିଦ୍ୟୁତ୍ କଳୈଷ ବୈ ସୌମ୍ୟ ଚତୁଷ୍କଳଃ ପାଦୋ ବ୍ରହ୍ମଣୋ ଜ୍ୟୋତିଷ୍ମାନ୍ ନାମ ॥୪।୭

ଜ୍ୟୋତିଷ୍ମାନ୍ ନାମକ ବ୍ରହ୍ମର ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍—ଏହି ଚତୁଷ୍କଳ ପାଦ । ପ୍ରାଣ, ଚକ୍ଷୁଃ, ଶ୍ରୋତ୍ର, ମନଃ, ଆୟତନ-ବାନ ନାମକ ଚତୁଷ୍କଳ ପାଦ କହିଥିଲେ ।

ମୁଣ୍ଡକ ଉପନିଷଦରେ ଅଛି:—

ହିରଣ୍ମୟେ ପରେ କୋଶେ ବିରଜଂ ବ୍ରହ୍ମ ନିଷ୍କଳମ୍ ।
ତଚ୍ଛୁଭ୍ରଂ ଜ୍ୟୋତିଷାଂ ଜ୍ୟୋତିସ୍ତଦ୍ ଯଦାତ୍ମବିଦୋ ବିଦୁଃ ॥
୨ । ୨ । ୯

ଜ୍ୟୋତିର୍ମୟ ଶ୍ରେଷ୍ଠ ହୃଦୟପଦ୍ମରେ ଅବିଦ୍ୟାଦୋଷଶୂନ୍ୟ ନିଷ୍କଳ—କଳାହୀନ ଯେଉଁ ବ୍ରହ୍ମ ଅବସ୍ଥିତ, ସେ ଶୁଭ୍ର ଜ୍ୟୋତିଷ୍ମାନ୍ ଅଗ୍ନି ପ୍ରଭୃତିର ଜ୍ୟୋତିସ୍ୱରୂପ,—ଆତ୍ମଜ୍ଞଗଣ ତାହାଙ୍କୁ ଜାଣନ୍ତି ।

ଯଦା ପଶ୍ୟଃ ପଶ୍ୟତେ ରୁକ୍ମବର୍ଣ୍ଣଂ
କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍ ।
ତଦା ବିଦ୍ୱାନ୍ ପୁଣ୍ୟପାପେ ବିଧୂୟ
ନିରଞ୍ଜନଃ ପରମଂ ସାମ୍ୟମୁପୈତି ॥ ୩ । ୧ । ୩
ମୁଣ୍ଡକ ଉପନିଷଦ

ଯୋଗୀ ଯେତେବେଳେ ସ୍ୱର୍ଣ୍ଣ ପରି ଜ୍ୟୋତିର୍ମୟ କର୍ତ୍ତା ଈଶ୍ୱର ଜଗଦ୍‌କାରଣ ପରମପୁରୁଷଙ୍କୁ ଦର୍ଶନ କରେ, ସେତେବେଳେ ସେହି

ଆତ୍ମଦର୍ଶନକାରୀ ଜ୍ଞାନୀ ପୁଣ୍ୟ ଓ ପାପ ବିଶେଷରୂପେ ନିରସ କରି ନିରଞ୍ଜନ ନିର୍ମଳ ପରମ ସମତା ପ୍ରାପ୍ତ ହୋଇଥାଏ ।

ସତ୍ୟେନ ଲଭ୍ୟସ୍ତପସା ହ୍ୟେଷ ଆତ୍ମା
ସମ୍ୟଗ୍ ଜ୍ଞାନେନ ବ୍ରହ୍ମଚର୍ଯ୍ୟେଣ ନିତ୍ୟମ୍ ।
ଅନ୍ତଃଶରୀରେ ଜ୍ୟୋତିର୍ମୟୋ ହି ଶୁଭ୍ରୋ
ଯଂ ପଶ୍ୟନ୍ତି ଯତୟଃ କ୍ଷୀଣଦୋଷାଃ ॥ ୩ । ୧ । ୫
ମୁଣ୍ଡକ ଉପନିଷଦ

ଯାହାଙ୍କୁ ଦୋଷଶୂନ୍ୟ ଯତିଗଣ ଦର୍ଶନ କରନ୍ତି, ଏହି ସେହି ଜ୍ୟୋତିର୍ମୟ ଶୁଭ୍ର ଆତ୍ମାହିଁ ହୃଦୟ ଆକାଶରେ ନିତ୍ୟ—ନିରନ୍ତର ସତ୍ୟ, ତପସ୍ୟା, ସମ୍ୟକ୍ ଜ୍ଞାନ ଏବଂ ବ୍ରହ୍ମଚର୍ଯ୍ୟ ଦ୍ୱାରା ହିଁ ଲଭ୍ୟ—ପ୍ରାପ୍ତବ୍ୟ ।

ମହାନ୍ ପ୍ରଭୁର୍ବୈ ପୁରୁଷଃ ସତ୍ତ୍ୱସ୍ୟୈଷ ପ୍ରବର୍ତ୍ତକଃ ।
ସୁନିର୍ମଳାମିମାଂ ପ୍ରାପ୍ତିମୀଶାନୋ ଜ୍ୟୋତିରବ୍ୟୟଃ ॥
ଶ୍ୱେତାଶ୍ୱତର ୩ । ୧୨

ଏହି ମହାନ୍ ପ୍ରଭୁ ସୃଷ୍ଟି-ସ୍ଥିତି-ସଂହାର-କର୍ତ୍ତା ହୃଦୟ-କମଳରେ ଅବସ୍ଥିତ—ସୁନିର୍ମଳ ମୁକ୍ତି ଯାହାଙ୍କଠାରୁ ମିଳେ, ସେହି ବୁଦ୍ଧି ସତ୍ତ୍ୱର ପ୍ରେରକ, ସମସ୍ତଙ୍କର ଶାସନକର୍ତ୍ତା, ଅକ୍ଷୟ ଜ୍ୟୋତିର୍ମୟ ।

ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍ ।
ଅମୃତସ୍ୟ ପରଂ ସେତୁଂ ଦଗ୍‌ଧେନ୍ଧନମିବାନଳମ୍ ॥
ଶ୍ୱେତାଶ୍ୱତର ୬ । ୧୯

କଳାବିହୀନ, କ୍ରିୟାବିରହିତ, ଶାନ୍ତ, ଉତ୍ତମ, ନିର୍ମଳ, ଅମୃତର—ମୋକ୍ଷର ସେତୁସ୍ୱରୂପ, ଦଗ୍‌ଧକାଷ୍ଠରେ ଅନଳ ପରି,

ଅର୍ଥାତ୍ କାଷ୍ଠ ଦଗ୍ଧ ହୋଇ ସାରିଲା ପରେ ଧୂମାଦିଶୂନ୍ୟ ଅଗ୍ନି ପରି ଜାଜ୍ୱଲ୍ୟମାନ, ସେହି ଓଙ୍କାରଠାରେ ମୁଁ ଶରଣ ଗ୍ରହଣ କରୁଛି ।

ଶିଷ୍ୟ—କହନ୍ତୁ, ମୁଁ ଆଗ୍ରହର ସହିତ ଶୁଣୁଛି ।

ଗୁରୁ—ଧ୍ୟାନବିନ୍ଦୁ ଉପନିଷଦ୍:—

ହୃଦିସ୍ଥାନେ ଅଷ୍ଟଦଳପଦ୍ମଂ ବର୍ତ୍ତତେ ତନ୍ମଧ୍ୟେ ରେଖାବଲୟଂ କୃତ୍ୱା ଜୀବାତ୍ମରୂପଂ ଜ୍ୟୋତିରୂପମଣୁମାତ୍ରଂ ବର୍ତ୍ତତେ ॥

ହୃଦୟସ୍ଥ ପଦ୍ମରେ ଜ୍ୟୋତିରୂପ ଅଣୁମାତ୍ର ଜୀବାତ୍ମା ଅବସ୍ଥିତ ।

ବ୍ରହ୍ମବିଦ୍ୟୋପନିଷତ୍—

ସୂର୍ଯ୍ୟମଣ୍ଡଳମଧ୍ୟେଽଥ ହ୍ୟକାରଃ ଶଙ୍ଖମଧ୍ୟଗଃ ।
ଉକାରଶ୍ଚନ୍ଦ୍ରସଙ୍କାଶସ୍ତସ୍ୟ ମଧ୍ୟେ ବ୍ୟବସ୍ଥିତଃ ॥ ୭
ମକାରସ୍ତ୍ୱଗ୍ନିସଙ୍କାଶୋ ବିଧୂମୋ ବିଦ୍ୟୁତୋପମଃ ।
ତିସ୍ରୋ ମାତ୍ରାସ୍ତଥା ଜ୍ଞେୟାଃ ସୋମସୂର୍ଯ୍ୟାଗ୍ନିରୂପିଣଃ ॥ ୮
ଶିଖା ତୁ ଦୀପସଙ୍କାଶା ଅସ୍ମିନ୍ନୁପରିବର୍ତ୍ତତେ ॥

ସୂର୍ଯ୍ୟମଣ୍ଡଳ ମଧ୍ୟରେ ଅକାର ଶଂଖମଧ୍ୟଗତ, ତା ମଧ୍ୟରେ ଉକାର ଚନ୍ଦ୍ରପରି, ମକାର ଚନ୍ଦ୍ରପରି ଧୂମଶୂନ୍ୟ ବିଦ୍ୟୁତ୍ ପରି— ତିନୋଟି ମାତ୍ରା ଚନ୍ଦ୍ର ସୂର୍ଯ୍ୟ ଅଗ୍ନିପରି, ଦୀପପରି ଶିଖା ତା ଉପରେ ବିଦ୍ୟମାନ ।

ତ୍ରିଶିଖିବ୍ରାହ୍ମଣ-ଶ୍ରୁତି—

ହୃତ୍ପୁଣ୍ଡରୀକମଧ୍ୟସ୍ଥଂ ଚୈତନ୍ୟଜ୍ୟୋତିରବ୍ୟୟମ୍ ॥ ୧୫୫
କଦମ୍ବଗୋଲକାକାରଂ ତୁର୍ଯ୍ୟାତୀତଂ ପରାତ୍ପରମ୍ ।
ଅନନ୍ତମାନନ୍ଦମୟଂ ଚିନ୍ମୟଂ ଭାସ୍କରଂ ବିଭୁମ୍ ॥ ୧୫୬
ନିର୍ବାତଦୀପସଦୃଶମକୃତ୍ରିମମଣିପ୍ରଭମ୍ ।
ଧ୍ୟାୟତୋ ଯୋଗିନସ୍ତସ୍ୟ ମୁକ୍ତିଃ କରତଳେ ସ୍ଥିତା ॥ ୧୫୭

ହୃଦୟପଦ୍ମସ୍ଥିତ, କଦମ୍ବଗୋଲକାର, ଅବ୍ୟୟ, ତୁର୍ଯ୍ୟାତୀତ, ପରାତ୍ପର, ଆନନ୍ଦମୟ, ଚୈତନ୍ୟମୟ, ଭାସ୍ୱର, ସର୍ବବ୍ୟାପୀ, ବାୟୁଶୂନ୍ୟ ସ୍ଥାନସ୍ଥିତ ଦୀପଶିଖା ପରି, ଅକୃତ୍ରିମ ମଣି ପରି, ଚୈତନ୍ୟଜ୍ୟୋତି-ଧ୍ୟାନକାରୀ ଯୋଗୀର ମୁକ୍ତି କରତଳଗତ ହୁଏ ।

ଶିଷ୍ୟ—ଜ୍ୟୋତିର ବହୁବିଧ ଭେଦ ଅଛି ।

ଗୁରୁ—ହଁ, ବିନ୍ଦୁ କୋଟିଶତାନି ଚ । ଜ୍ୟୋତି ଶତକୋଟି ପ୍ରକାର । ତନ୍ମଧ୍ୟରେ ଶ୍ୱେତଜ୍ୟୋତିହିଁ ନିଷ୍କଳ ବ୍ରହ୍ମ ।

ଶୁକ୍ଳଂ ତେଜୋମୟଂ ବ୍ରହ୍ମ (ଅଦ୍ୱୟତାରକଶ୍ରୁତିଃ) ।

ହଂସୋପନିଷଦରେ ମଧ୍ୟ ଶ୍ୱେତଜ୍ୟୋତି ନାଦର ସ୍ୱରୂପ ବୋଲି କଥିତ ହୋଇଅଛି ।

ଆହୁରି ଶୁଣ:—

ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ ଜ୍ୟୋତିରିବାଧୂମକଃ ।
ଈଶାନୋ ଭୂତଭବ୍ୟସ୍ୟ ସ ଏବାଦ୍ୟ ସ ଉ ଶ୍ୱଃ ॥

କଠୋପନିଷତ୍ ୨ । ୧ । ୧୩

ଯେ ତ୍ରିକାଳର ନିୟନ୍ତା, ସେହି ଅଙ୍ଗୁଷ୍ଠ ପରିମିତ ଅନ୍ତରାତ୍ମା ଧୂମଶୂନ୍ୟ ଜ୍ୟୋତିପରି ଯୋଗିଗଣ ତାଙ୍କୁ ଦେଖନ୍ତି ; ସେ ଆଜି ସର୍ବପ୍ରାଣୀଙ୍କଠାରେ ବିରାଜମାନ, ପୁଣି କାଲି ମଧ୍ୟ ସେହି ବିରାଜମାନ ରହିବେ ।

ସହସ୍ରଦଳ କମଳ କ୍ରୋଡ଼ରେ ଅମାନାମ୍ନୀ ଅର୍ଦ୍ଧଚନ୍ଦ୍ରର ଷୋଡ଼ଶୀକଳା ଅଛନ୍ତି । ଅର୍ଦ୍ଧଚନ୍ଦ୍ରାକୃତି ଏହି ଅମାକଳା ରକ୍ତବର୍ଣ୍ଣା, ନିଷ୍କଳା ବିଦ୍ୟୁତ୍‌ସଦୃଶ ତେଜସ୍ୱିନୀ, ପଦ୍ମମୃଣାଳତନ୍ତୁ ପରି ସୂକ୍ଷ୍ମା ଓ ଅଧୋମୁଖୀ । ଏହି ଅମାକଳାହିଁ ଚନ୍ଦ୍ରର ଅମୃତଧାରା ଧାରଣ କରିଥାନ୍ତି । ଅମାକଳାର କ୍ରୋଡ଼ରେ ଅମାକଳା ପରି ଅର୍ଦ୍ଧଚନ୍ଦ୍ରାକୃତି ସୂର୍ଯ୍ୟପରି ଦୀପ୍ତିମତୀ ନିର୍ବାଣକଳା କେଶର ସହସ୍ର ଭାଗ ତୁଲ୍ୟ ସୂକ୍ଷ୍ମା ।

ଏ ସମସ୍ତଙ୍କର ଇଷ୍ଟଦେବତା । ଏହାଙ୍କ କୋଳରେ ପରମ ନିର୍ବାଣ ଶକ୍ତି । ସୂର୍ଯ୍ୟ ସଦୃଶୀ ଅତିସୂକ୍ଷ୍ମା ତତ୍ତ୍ୱଜ୍ଞାନଜନକା । ଏହା ଉପରେ ବିନ୍ଦୁ ବିସର୍ଗ ଶକ୍ତି—ଏହାହିଁ ନିତ୍ୟ ଆନନ୍ଦସ୍ଥାନ ଓ ନିଖିଳ ଆନନ୍ଦର ମୂଳ । ଏହି ପର୍ଯ୍ୟନ୍ତ ଗୁରୁଶିଷ୍ୟ ଉପଦେଶ ।

ଲୟଯୋଗସାଧନରେ ନବଚକ୍ରରେ ଜ୍ୟୋତି କଥା ଶୁଣ ।

୧ । ମୂଳାଧାର ଚକ୍ରରେ ଭଗାକୃତି ; ଏହି ଚକ୍ରରେ ସ୍ୱୟମ୍ଭୂ ଲିଙ୍ଗରେ ତେଜୋରୂପା କୁଣ୍ଡଳିନୀଶକ୍ତି ସାର୍ଦ୍ଧତ୍ରିବଳୟାକାରରେ ବେଷ୍ଟନ କରି ଅଧିଷ୍ଠିତା ଅଛନ୍ତି । ଏହି ଜ୍ୟୋତିର୍ମୟୀ ଶକ୍ତିକୁ ଜୀବରୂପରେ ଧ୍ୟାନ କଲେ ଚିତ୍ତଲୟ ଓ ମୁକ୍ତ ହୋଇଥାଏ ।

୨ । ସ୍ୱାଧିଷ୍ଠାନ ଚକ୍ରରେ ପ୍ରବାଳାଙ୍କୁର ସଦୃଶ ଉଡ୍ଡୀୟାନ ନାମକ ପୀଠୋପରି କୁଣ୍ଡଳିନୀ ଶକ୍ତିକୁ ଚିନ୍ତାକଲେ ମନୋଲୟ ଏବଂ ଜଗତ୍ ଆକର୍ଷଣର ଶକ୍ତି ଜନ୍ମେ ।

୩ । ମଣିପୁର ଚକ୍ରରେ ପଞ୍ଚାବର୍ତ୍ତବିଶିଷ୍ଟା ବିଦ୍ୟୁତ୍‌ବରଣୀ ଚିତ୍‌ସ୍ୱରୂପା ଭୁଜଗୀଶକ୍ତିର ଧ୍ୟାନ କଲେ ନିଶ୍ଚୟ ସର୍ବସିଦ୍ଧିଭାଜନ ହୁଅନ୍ତି ।

୪ । ଅନାହତ ଚକ୍ରରେ ଜ୍ୟୋତିଃସ୍ୱରୂପ ହଂସକୁ ଧ୍ୟାନ କଲେ ଚିତ୍ତଲୟ ଓ ଜଗତ୍ ବଶୀଭୂତ ହୁଏ ।

୫ । ବିଶୁଦ୍ଧ ଚକ୍ରରେ ନିର୍ମ୍ମଳଜ୍ୟୋତି ଧ୍ୟାନ କଲେ ସର୍ବସିଦ୍ଧି ହୁଏ ।

୬ । ତାଳୁମୂଳରେ ଲଳନାଚକ୍ରକୁ ଘଣ୍ଟିକାସ୍ଥାନ ଓ ଦଶମ ଦ୍ୱାର କୁହାଯାଏ, ସେଠାରେ ଶୂନ୍ୟଧ୍ୟାନ କଲେ ଚିତ୍ତଲୟ ହୁଏ ।

୭ । ଆଜ୍ଞାଚକ୍ରରେ ବର୍ତ୍ତୁଳାକାର ଜ୍ୟୋତି ଧ୍ୟାନ କଲେ ମୋକ୍ଷପଦ ମିଳିଥାଏ ।

୮ । ବ୍ରହ୍ମରନ୍ଧ୍ରରେ ଅଷ୍ଟମ ଚକ୍ରସ୍ଥିତ ସୂଚିକାର ଅଗ୍ରଭାଗତୁଲ୍ୟ ଧୂମାକାର ଜଳନ୍ଧର ନାମକ ସ୍ଥାନରେ ଧ୍ୟାନଦ୍ୱାରା ଚିତ୍ତଲୟ କଲେ ନିର୍ବାଣପଦ ଲାଭ ହୁଏ ।

୯ । ସୋମଚକ୍ରରେ ପୂର୍ଣ୍ଣା ସଚ୍ଚିତ୍ ରୂପା ଅର୍ଦ୍ଧଶକ୍ତିକୁ ଧ୍ୟାନ କଲେ ମନୋଲୟ ଓ ମୋକ୍ଷପଦ ଲାଭ ହୋଇଥାଏ । (ଯୋଗୀଗୁରୁ)

ଏହି ନବଚକ୍ର କଥା ସୌଭାଗ୍ୟଲକ୍ଷ୍ମୀ-ଶ୍ରୁତିରେ ମଧ୍ୟ ଅଛି । ଏହା ଅପେକ୍ଷା ସେଥିରେ କିଛି ବିଶେଷ ଭାବରେ କୁହାଯାଇଅଛି ।

ଶିଷ୍ୟ--ଆପଣ ମୂଳ କୁହନ୍ତୁ, ଚଳିବ ।

ଗୁରୁ—ଅଥ ହୈନଂ ଦେବା ଊଚୁର୍ନବଚକ୍ରବିବେକମନୁବ୍ରୂହୀତି । ତଥେତି ସ ହୋବାଚ । ଆଧାରେ ବ୍ରହ୍ମଚକ୍ରଂ ତ୍ରିରାବୃତ୍ତଂ ଭଗମଣ୍ଡଳାକାରମ୍ । ତତ୍ର ମୂଳକନ୍ଦେ ଶକ୍ତିଃ ପାବକାକାରଂ ଧ୍ୟାୟେତ୍ । ତତ୍ରୈବ କାମରୂପପୀଠଂ ସର୍ବକାମପ୍ରଦଂ ଭବତି । ଇତ୍ୟାଧାରଚକ୍ରମ୍ । ଦ୍ୱିତୀୟଂ ସ୍ୱାଧିଷ୍ଠାନ ଚକ୍ରଂ ଷଡ୍‌ଦଳମ୍ । ତନ୍ମଧ୍ୟେ ପଶ୍ଚିମାଭିମୁଖଂ ଲିଙ୍ଗଂ ପ୍ରବାଳାଙ୍କୁର ସଦୃଶଂ ଧ୍ୟାୟେତ୍ । ତତ୍ରୈବୋଡ୍ୟାନପୀଠଂ ଜଗଦାକର୍ଷଣସିଦ୍ଧିଦଂ ଭବତି । ତୃତୀୟଂ ନାଭିଚକ୍ରଂ ପଞ୍ଚାବର୍ତ୍ତଂ ତନ୍ମଧ୍ୟେ କୁଣ୍ଡଳିନୀଂ ବାଳାର୍କକୋଟିପ୍ରଭାଂ ତଡ଼ିତ୍‌ପ୍ରଭାଂ (ତନୁମଧ୍ୟାଂ) ଧ୍ୟାୟେତ୍ । ସାମର୍ଥ୍ୟଶକ୍ତିଃ ସର୍ବସିଦ୍ଧିପ୍ରଦା ଭବତି । ମଣିପୂରକ ଚକ୍ରଂ ହୃଦୟଚକ୍ରମ୍ ଅଷ୍ଟଦଳମଧୋମୁଖମ୍ । ତନ୍ମଧ୍ୟେ ଜ୍ୟୋତିର୍ମୟଲିଙ୍ଗାକାରଂ ଧ୍ୟାୟେତ୍ । ସୈବ ହଂସକଳା ସର୍ବପ୍ରିୟା ସର୍ବଲୋକବଶ୍ୟକରୀ ଭବତି । କଣ୍ଠଚକ୍ରଂ ଚତୁରଙ୍ଗୁଳମ୍ । ତତ୍ର ବାମେ ଇଡ଼ା ଚନ୍ଦ୍ରନାଡ଼ୀ ଦକ୍ଷିଣେ ପିଙ୍ଗଳା ସୂର୍ଯ୍ୟନାଡ଼ୀ ତନ୍ମଧ୍ୟେ ସୁଷୁମ୍ନାଂ ଶ୍ୱେତବର୍ଣ୍ଣାଂ ଧ୍ୟାୟେତ୍ । ଯ ଏବଂ ବେଦାନାହତା ସିଦ୍ଧିଦା ଭବତି । ତାଳୁ ଚକ୍ରମ୍ । ତତ୍ରାମୃତଧାରା ପ୍ରବାହଃ । ଘଣ୍ଟିକାଲିଙ୍ଗମୂଳଚକ୍ରରନ୍ଧ୍ରେ ରାଜଦନ୍ତାବଲମ୍ବିନୀ ବିବରଂ ଦଶଦ୍ୱାଦଶାରମ୍ । ତତ୍ର

ଶୂନ୍ୟଂ ଧ୍ୟାୟେତ୍ । ଚଞ୍ଚଳସ୍ଥୋ ଭବତି । ସପ୍ତମଂ ଭ୍ରୂଚକ୍ରମଙ୍ଗୁଷ୍ଠମାତ୍ରମ୍ । ତତ୍ର ଜ୍ଞାନନେତ୍ରଂ ଦୀପଶିଖାକାରଂ ଧ୍ୟାୟେତ୍ । ତଦେବ କପାଳକନ୍ଦଂ ବାକ୍ସିଦ୍ଧିଦଂ ଭବତି । ଆଜ୍ଞାଚକ୍ରମଷ୍ଟମମ୍ । ବ୍ରହ୍ମରନ୍ଧ୍ରଂ ନିର୍ବାଣଚକ୍ରମ୍ । ତତ୍ର ସୂଚିକାଗେହେତରଂ ଧୂମ୍ରଶିଖାକାରଂ ଧ୍ୟାୟେତ୍ । ତତ୍ର ଜାଳନ୍ଧର ପୀଠଂ ମୋକ୍ଷପ୍ରଦଂ ଭବତୀତି ପରବ୍ରହ୍ମଚକ୍ରଂ । ନବମମାକାଶଚକ୍ରମ୍ । ତତ୍ର ଷୋଡ଼ଶଦଳ ପଦ୍ମମୂର୍ଦ୍ଧ୍ୱମୁଖଂ ତନ୍ମଧ୍ୟକର୍ଣ୍ଣିକାତ୍ରିକୂଟାକାରମ୍ । ତନ୍ମଧ୍ୟେ ଊର୍ଦ୍ଧ୍ୱଶକ୍ତିଃ । ତାଂ ପଶ୍ୟନ୍ ଧ୍ୟାୟେତ୍ । ତତ୍ରୈବ ପୂର୍ଣ୍ଣଗିରିପୀଠଂ ସର୍ବେଚ୍ଛାସିଦ୍ଧିସାଧନଂ ଭବତି ।

ଶିଷ୍ୟ—ଏଥିରେ ଚକ୍ରର ମତଭେଦ ନାମଭେଦ ଅଛି ।

ଗୁରୁ—ହଁ, ଅନ୍ୟ ଶ୍ରୁତିରେ କଣ ଅଛି ଶୁଣ ।

ତସ୍ମିନ୍ ଶୁକ୍ଲମୁତ ନୀଳମାହୁଃ ପିଙ୍ଗଳଂ ହରିତଂ ଲୋହିତଞ୍ଚ । ଏଷ ପନ୍ଥା ବ୍ରହ୍ମଣା ହାନୁବିତ୍ତସ୍ତେନ...... ।

ବୃହଦାରଣ୍ୟକ । ୪ । ୪ । ୯

ଅକଳ୍ପିତୋସ୍ୱୟଂ ଜ୍ୟୋତିରାତ୍ମନୋ ଦେବତା ନ କିମ୍ ।

ଅନୁଭବସଂଗ୍ରହଧୃତ ଗୀତାସାର

ଯେଉଁ ଜ୍ୟୋତି ବିନା କଳ୍ପନାରେ ସ୍ୱୟଂ ପ୍ରକାଶିତ ହୁଅନ୍ତି, ତାହା କଣ ନିଜର ଦେବତା ନୁହନ୍ତି ?

ଯୋଗସନ୍ଧ୍ୟାଧୃତ ବଚନ

ଅକଳ୍ପିତୋଦ୍ଭବଂ ଜ୍ୟୋତିଃ ସ୍ୱୟଂ ଜ୍ୟୋତିଃ ପ୍ରକାଶିତମ୍ ।
ଅକସ୍ମାଦ୍ ଦୃଶ୍ୟତେ ଜ୍ୟୋତିସ୍ତତ୍ ଜ୍ୟୋତିଃ ପରମାତ୍ମନ ॥

ଯେଉଁ ଜ୍ୟୋତି ବିନା କଳ୍ପନାରେ ଉତ୍ପନ୍ନ ହୁଏ, ଯେଉଁ ଜ୍ୟୋତି ସ୍ୱୟଂ ପ୍ରକାଶିତ ହୁଏ ଏବଂ ଯେଉଁ ଜ୍ୟୋତି ହଠାତ୍ ଦେଖାଯାଏ ସେହି ଜ୍ୟୋତି ପରମାତ୍ମାରେ ଅବସ୍ଥିତ ।

ଅଗ୍ନିପୁରାଣ

ହୃଦୟେ ଦୀପବତ୍ ବ୍ରହ୍ମଧ୍ୟାନାତ୍ ଜୀବୋ ଅମୃତୋ ଭବତି ।

ବୃହନ୍ନୀଳ ତନ୍ତ୍ର

ପରଂବ୍ରହ୍ମ ମହେଶାନ ପ୍ରଦୀପକଳିକାକୃତି ।

କାଳୀତନ୍ତ୍ର ଓ ଘେରଣ୍ଡସଂହିତା

ବିନ୍ଦୁବ୍ରହ୍ମ ସକୃଦ୍‌ଦୃଷ୍ଟ୍ୱା ମନସ୍ତତ୍ର ନିୟୋଜୟେତ୍ ।

ବ୍ରହ୍ମବିଦ୍ୟୋପନିଷତ୍

ସ୍ୱୟମେବ ତୁ ସଂପଶ୍ୟେଦ୍ ଦେହେ ବିନ୍ଦୁଂ ଚ ନିଷ୍କଳମ୍ ।

ଦେହରେ ନିଷ୍କଳାବିନ୍ଦୁକୁ ସାଧକ ସ୍ୱୟଂ ଦେଖିପାରେ ।

ତତ୍ତ୍ୱସାରପୁରାଣ ଅନ୍ତର୍ଗତ ରାମଗୀତା

ମୂଳାଧାରରେ ଅଗ୍ନି, ସ୍ୱାଧିଷ୍ଠାନରେ ପ୍ରବାଳାଙ୍କୁର, ନାଭିରେ ବିଦ୍ୟୁତ୍, ହୃଦୟରେ ଲିଙ୍ଗାକୃତି, କଣ୍ଠରେ ଶ୍ୱେତବର୍ଣ୍ଣ, ତାଳୁରେ ଶୂନ୍ୟ, ଭ୍ରୂଚକ୍ରରେ ଦୀପ, ଆଜ୍ଞାଚକ୍ରରେ ଧୂମ୍ରଶିଖା, ଏବଂ ଆକାଶ ଚକ୍ରରେ ପରଶୁ—ଏହି ସବୁ ବସ୍ତୁ ସଦୃଶ ଜ୍ୟୋତିଃ ନବଚକ୍ରରେ ଧ୍ୟାନଗୋଚର ହୁଏ । ୧—୭

ଶିଷ୍ୟ—ଏହି ନବଚକ୍ରର ମଧ୍ୟ ଭେଦ ଅଛି ।

ଗୁରୁ—ରାମଗୀତା କଥା ପୁଣି ଶୁଣ—

ପ୍ରତ୍ୟେକ ଧ୍ୟାନଗୋଚର ଜ୍ୟୋତିଃ ଏକ ଅଖଣ୍ଡ ଆନନ୍ଦ ପ୍ରଦାନ କରେ ବୋଲି ତତ୍ତ୍ୱସ୍ୱରୂପ; ସୁତରାଂ ସେମାନେ ସମସ୍ତେ ଏକ । ତଥାପି ସେମାନେ ଉପାଧିବଶତଃ ବିଭିନ୍ନ ଆକାର ଧାରଣ କରନ୍ତି । (ଯେପରି ଏକା ଆଲୋକ ବିଭିନ୍ନ ବର୍ଣ୍ଣର ଓ ଗଠନର କାଚରେ ବିଭିନ୍ନ ରୂପରେ ପ୍ରକାଶ ପାଏ) ତଥାପି ଏହି ଉପାଧି ମଧ୍ୟ ଏହି ଅଖଣ୍ଡାନନ୍ଦଠାରୁ ଭିନ୍ନ ନୁହେ । ୭

ବିଦ୍ୟାଶକ୍ତି କୁଣ୍ଡଳିନୀ ଅନ୍ତରରେ ଖେଳିବାରେ ଲାଗିଲେ ଅଗ୍ନିରୁ ଯେପରି ବହୁ ଅଗ୍ନିକଣା ଛୁଟିକି ପଡ଼ୁଥାଏ, ସେହିପରି ଏକ ଅଖଣ୍ଡ ବ୍ରହ୍ମରୁ ବିବିଧ ଆକୃତିର ପ୍ରକାଶ ହୁଏ । ୮

ପ୍ରତ୍ୟଗାତ୍ମା ନାମକ—ଏହି ସବୁ ଧ୍ୟେୟ ବସ୍ତୁ ଅଚେତନ—ଏହା ଯେପରି ପ୍ରତ୍ୟକ୍ଷଦର୍ଶନକାଙ୍କ୍ଷୀମାନେ ସ୍ୱପ୍ନରେ ସୁଦ୍ଧା ନ ଭାବନ୍ତି । ୯

ଚୈତନ୍ୟସ୍ୱରୂପ ଅନ୍ୟାନ୍ୟ ଆକାର ମଧ୍ୟ ଯୋଗୀମାନେ ଦେଖିଥାନ୍ତି । ତାହା କହୁଛୁ ଶୁଣ । ୧୦

ବଟବୀଜ, ଶ୍ୟାମାକ (ଶ୍ୟାମାନାମକ ତୃଣ ଧାନ୍ୟ), ଶ୍ୟାମାକ ତଣ୍ଡୁଳ, କେଶର ଅଗ୍ରଭାଗର ଶତଭାଗର ଏକଭାଗ, ଉଡ଼ୀଧାନର ଅଁଶୁ, ଶୁକ୍ରଗ୍ରହ, ସୂର୍ଯ୍ୟ, ଚନ୍ଦ୍ର, ପରମାଣୁ, ପ୍ରାଦେଶ ପ୍ରମାଣ ସୂକ୍ଷ୍ମ, ଜୁଳୁଜୁଳିଆ ପୋକ, ସ୍ଫଟିକ ଅଥବା ତାର (ମୁକ୍ତା)—ଏମାନଙ୍କ ପରି ଜ୍ୟୋତିଃ; ଅଥବା ନୀଳ ଲାଲ ଅଥବା ଧଳା ରଙ୍ଗର ଜ୍ୟୋତିଃ; ଅଥବା ନାନାପ୍ରକାର ଜ୍ୟୋତିଃ ଏକତ୍ର ଦର୍ଶନ ହୁଏ । ଆତ୍ମା ସମସ୍ତ ଜ୍ୟୋତିର ଜ୍ୟୋତିଃ । ଏହାସବୁ ପ୍ରକାଶିତ ଆକାର ବ୍ରହ୍ମରେ ଅବସ୍ଥିତ ॥ ୧୧—୧୪

ଯେଉଁ ଯୋଗୀଗଣଙ୍କର ଚିତ୍ତ, ଶ୍ୱାସ ଓ ଇନ୍ଦ୍ରିୟ ଜୟ ହୋଇ ଯାଇଅଛି, ସେମାନଙ୍କ ନିକଟରେ ଏହି ସବୁ ଚିଦାକାର (ଚୈତନ୍ୟ-ରୂପ ଜ୍ୟୋତିଃ) ପୁନଃ ପୁନଃ ପ୍ରକାଶିତ ହୁଏ । ୧୫

ସାଧନାକାଳ ବ୍ୟତୀତ ବ୍ୟବହାର ଦଶାରେ ଓ କର୍ମ କରିବା କାଳରେ ସ୍ତମ୍ଭ କାନ୍ଥ ଧାନ୍ୟାଗାର ପ୍ରଭୃତି ଉପରେ ଏହି ସବୁ ଖଣ୍ଡ ଜ୍ୟୋତିଃ ଯୋଗୀ ନିକଟରେ ପ୍ରକାଶ ପାଏ । ଯେଉଁ ଯେଉଁ ପଦାର୍ଥରେ ଯୋଗୀର ଦୃଷ୍ଟି ପଡ଼େ, ସେହିକ୍ଷଣି ସେ ସବୁ ତଡ଼ିତ ପରି ସ୍ପଷ୍ଟ, ଚିନ୍ମୟ ବୋଲି ପ୍ରକାଶିତ ହୁଏ । ୧୬—୧୭

ଜ୍ୟୋତିଃ ହିଁ ପରମବ୍ରହ୍ମ, ଜ୍ୟୋତିଃ ହିଁ ପରମସୁଖ, ଜ୍ୟୋତିଃ ହିଁ ପରମଶାନ୍ତି ଏବଂ ଜ୍ୟୋତିଃ ହିଁ ପରମ ପଦ ॥ ୧୮

ଜ୍ୟୋତିରେବ ପରଂବ୍ରହ୍ମ ଜ୍ୟୋତିରେବ ପରଂସୁଖମ୍ ।
ଜ୍ୟୋତିରେବ ପରା ଶାନ୍ତିର୍ଜ୍ୟୋତିରେବ ପରଂପଦମ୍ ॥

ଯେ ଯୋଗ ଅବଲମ୍ବନ କରି ନବଚକ୍ରରେ ବା ଯେ କୌଣସି ସ୍ଥାନରେ ପ୍ରତ୍ୟଗାତ୍ମାଙ୍କୁ ଦର୍ଶନ କରେ, ସେ ବ୍ରହ୍ମଲୋକ ପ୍ରାପ୍ତ ହୁଏ । ସଦ୍‌ଗୁରୁଙ୍କ ମୁଖରେ ପୂର୍ବୋକ୍ତ ଜ୍ୟୋତି ଆକାରରେ କୂଟସ୍ଥ ଆତ୍ମା ବିଷୟରେ ଶୁଣି ଧ୍ୟାନ ଏବଂ ଭଦ୍ରା (ଶାମ୍ଭବୀ) ମୁଦ୍ରାଦ୍ୱାରା ସ୍ୱୟଂ ଏହାଙ୍କୁ ଦେଖିବାକୁ ହୁଏ । ୧୯—୨୦

ପୂର୍ବୋକ୍ତ ପ୍ରତ୍ୟାଗାତ୍ମାଙ୍କୁ—ପ୍ରତ୍ୟକ୍ଷ ଆତ୍ମାକୁ—ଚିତ୍ତଶୁଦ୍ଧି ପାଇଁ ଯେ ପ୍ରତ୍ୟେକ ଚକ୍ରରେ ହିଁ ଦେଖିବାକୁ ହେବ, ଏମିତି କିଛି ନିୟମ ନାହିଁ । ଯେ କୌଣସି ସ୍ଥାନରେ ଯେ କୌଣସି ଆଧାରଚକ୍ରରେ ଧ୍ୟାନ ଦ୍ୱାରା ତାହାଙ୍କୁ ଦେଖି ଚିତ୍ତଶୁଦ୍ଧି ହେଲାପରେ ମହାବାକ୍ୟ ଶୁଣିବାର ଅଧିକାର ହୁଏ ॥ ୨୧-୨୨

ଯୋଗିଯାଜ୍ଞବାଲ୍‌କ୍ୟ, ଏକନ୍

ବୈଶ୍ୱାନର ଅଗ୍ନିକୁ ନିମ୍ନୋକ୍ତରୂପରେ ଦେଖି 'ଏହାହିଁ ମୁଁ' ଏହିପରି ଭାବନା ହେଲେ, ସଗୁଣ ଧ୍ୟାନ ମଧ୍ୟରେ ଏହା ଉତ୍ତମ — ଏଥିରେ ମୁକ୍ତ ହୁଏ ।

(୧) ପ୍ରକାଣ୍ଡ ଅଗ୍ନି ଯେପରିକି ସବୁଆଡ଼େ ଶିଖାବିସ୍ତାର କରି ଜଳୁଅଛି ; (୨) ଯେପରି ତା ଅପେକ୍ଷା ଏକ ଶ୍ରେଷ୍ଠ ଅଗ୍ନି ଜଳୁଅଛି ; (୩) ଆପାଦମସ୍ତକ ଦେହରେ ତାପବୋଧ ହେଉଅଛି ; (୪) ଯେପରି ନିଶ୍ଚଳ ସ୍ଫଟିକ ପ୍ରଦୀପ ଜଳୁଅଛି ; (୫) ନୀଳ ମେଘରେ ଯେପରିକି ବିଦ୍ୟୁତ୍‌ସ୍ଫୁରଣ ହେଉଅଛି ଅଥବା (୬) ଉଡ଼ୀଧାନର ଅଁଶୁପରି ସୂକ୍ଷ୍ମ ଏବଂ ହଳଦିଆ ବର୍ଣ୍ଣର ଏକ ଜ୍ୟୋତିଃ ପ୍ରକାଶ ପାଉଅଛି ।

ଶିଷ୍ୟ—ଏହି ଜ୍ୟୋତିସମୂହର ଦର୍ଶନର ଉପାୟ କଣ ?

ଗୁରୁ—ଗୁରୁଦେବଙ୍କର ଉପଦେଶ ଅନୁସାରେ ମନ୍ତ୍ର ଜପ କରୁ କରୁ ଏ ଜ୍ୟୋତିଃରୂପ ପ୍ରଣବାତ୍ମା ଦର୍ଶନ ଦାନ କରନ୍ତି । ସାଧକର ଚିତ୍ତ ଶୁଦ୍ଧି ହେଲେ ଯାଇ ଏହି ଜ୍ୟୋତିଃ ଦର୍ଶନ କରିବାକୁ ସମର୍ଥ ହୁଅନ୍ତି ।

ଆହୁରି ଶୁଣ:—

ସୋଽହମର୍କଃ ପରଂ ଜ୍ୟୋତିରର୍କ ଜ୍ୟୋତିରହଂ ଶିବଃ ।
ଆତ୍ମଜ୍ୟୋତି ରହଂ ଶୁକ୍ରଃ ସର୍ବଜ୍ୟୋତିରସାବଦୋମ୍ ॥
ମହାବାକ୍ୟ ଶ୍ରୁତିଃ

ଯଦ୍‌ବ୍ରହ୍ମ ତଜ୍‌ଜ୍ୟୋତିର୍ଯଜ୍ଜ୍ୟୋତିଃ ସ ଆଦିତ୍ୟଃ ।
ସ ବା ଏଷ ଓମିତ୍ୟେତଦାତ୍ମା ॥ ମୈତ୍ରାୟଣୀ ଶ୍ରୁତିଃ

ଗୁରୁଗୀତା—

ପବିତ୍ରଂ ପରତରଂ ଧ୍ୟେୟଂ ନିତ୍ୟମାନନ୍ଦକାରକମ୍ ।
ହୃଦୟାକାଶମଧ୍ୟସ୍ଥଂ ଶୁଦ୍ଧସ୍ଫଟିକସନ୍ନିଭମ୍ ॥ ୬୮

ଅଙ୍ଗୁଷ୍ଠମାତ୍ରଂ ପୁରୁଷଂ ଧ୍ୟାୟତେ ଚିନ୍ମୟଂ ହୃଦି ।
ତତ୍ର ସ୍ଫୁରତି ଯୋ ଭାବଃ ଶୃଣୁ ତଂ କଥୟାମ୍ୟହମ୍ ॥ ୬୯

ଧ୍ୟାନବିନ୍ଦୂପନିଷତ୍

ହୃତ୍‌ପଦ୍ମକର୍ଣ୍ଣିକା ମଧ୍ୟେ ସ୍ଥିରଦୀପନିଭାକୃତିମ୍ ।
ଅଙ୍ଗୁଷ୍ଠମାତ୍ରମଚଳଂ ଧ୍ୟାୟେଦୋଙ୍କାରମୀଶ୍ୱରମ୍ ॥ ୧୯

ପୈଙ୍ଗଳୋପନିଷତ୍

ଧ୍ୟାତ୍ୱା ମଧ୍ୟସ୍ଥମାତ୍ମାନଂ କଳଶାନ୍ତରଦୀପବତ୍ ।
ଅଙ୍ଗୁଷ୍ଠମାତ୍ରମାତ୍ମାନମଧୂମଜ୍ୟୋତିରୂପକମ୍ ॥ ୧ (ତୃତୀୟ ଅଃ)

ମୈତ୍ରେୟୀ ଶ୍ରୁତିଃ

ହୃତ୍‌ପୁଣ୍ଡରୀକମଧ୍ୟେ ତୁ ଧ୍ୟାୟେତ୍ ପରମେଶ୍ୱରଂ ।
ସାକ୍ଷିଣଂ ବୁଦ୍ଧିବୃତ୍ତସ୍ୟ ପରମପ୍ରେମଗୋଚରମ୍ ॥

ଯୋଗଶିଖାଶ୍ରୁତିଃ

ବିନ୍ଦୁନାଦକଳାଜ୍ୟୋତିରବୀନ୍ଦୁଧ୍ରୁବତାରକମ୍ ।
ଶାନ୍ତଞ୍ଚ ତଦତୀତଞ୍ଚ ପରଂବ୍ରହ୍ମ ତଦୁଚ୍ୟତେ ॥ ୬୭ (୬ ଅଃ)

ମନଦ୍ୱାରା ମନରୂପକ ବ୍ରହ୍ମଙ୍କୁ ଦେଖିଲେ ଦଶପ୍ରକାର ପ୍ରତ୍ୟୟ ଦର୍ଶନ ହୁଏ, ସେତେବେଳେ ସାଧକ ଯୋଗୀଶ୍ୱର ହୁଅନ୍ତି । ଏହି ଦଶ ପ୍ରତ୍ୟୟକୁ ପରମବ୍ରହ୍ମ କୁହାଯାଏ—ବିନ୍ଦୁନାଦ କଳା ଜ୍ୟୋତିଃ, ନୀଳ ପୀତ ପ୍ରଭୃତି ବର୍ଣ୍ଣର ଜ୍ୟୋତିଃ, ସୂର୍ଯ୍ୟ ଚନ୍ଦ୍ର ଧ୍ରୁବ ତାରକାଗଣ ଇନ୍ଦ୍ରିୟର ଉପରମରେ ଶାନ୍ତଭାବ ଏବଂ ମନର ବୃତ୍ତିହୀନ ଏକ ଅବ୍ୟକ୍ତ ଅବସ୍ଥା ଯାହାର ନାମ ଶାନ୍ତାତୀତ ।

ଯୋଗିଯାଜ୍ଞବଲ୍କ୍ୟଃ

ଲଲାଟମଧ୍ୟେ ହୃଦୟାମ୍ବୁଜେ ବା ଯଃ ପଶ୍ୟତି ଜ୍ଞାନମୟୀଂ ପ୍ରଭାଂ ତୁ ।
ଶକ୍ତିଂ ସଦା ଦୀପବଦୁଜ୍ଜ୍ୱଳନ୍ତୀଂ ପଶ୍ୟନ୍ତି ତେ ବ୍ରହ୍ମ ତଦେବ ଦୃଷ୍ଟ୍ୟା ॥

ଦେବୀଭାଗବତ

ହୃତ୍‌ପୁଣ୍ଡରୀକମଧ୍ୟସ୍ଥାଂ ପ୍ରାତଃସୂର୍ଯ୍ୟସମପ୍ରଭାମ୍ ।
ପାଶାଙ୍କୁଶଧରାଂ ସୌମ୍ୟାଂ ବରଦାଭୟହସ୍ତକାମ୍ ।
ତ୍ରିନେତ୍ରାଂ ରକ୍ତବସନାଂ ଭକ୍ତକାମଦୁଘାଂ ଭଜେ ॥

ଘେରଣ୍ଡସଂହିତା

ମୂଳାଧାରେ କୁଣ୍ଡଳିନୀ ଭୁଜଗାକାରରୂପିଣୀ ।
ଜୀବାତ୍ମା ତିଷ୍ଠତି ତତ୍ର ପ୍ରଦୀପକଳିକାକୃତିଃ ॥
ଧ୍ୟାୟେତ୍ତେଜୋମୟଂ ବ୍ରହ୍ମ ତେଜୋଧ୍ୟାନଂ ପରାତ୍ପରମ୍ ॥
ଭ୍ରୁବୋର୍ମଧ୍ୟେ ମନୋର୍ଦ୍ଧ୍ୱେ ଚ ଯତ୍ତେଜଃ ପ୍ରଣବାତ୍ମକମ୍ ।
ଧ୍ୟାୟେଜ୍ଜ୍ୱାଳାବଳୀ ଯୁକ୍ତଂ ତେଜୋଧ୍ୟାନଂ ତଦେବ ହି ॥

ଏହି ସୂକ୍ଷ୍ମଧ୍ୟାନ

ବହୁଭାଗ୍ୟବଶାଦ୍ ଯସ୍ୟ କୁଣ୍ଡଲୀ ଜାଗ୍ରତୀ ଭବେତ୍ ।
ଆତ୍ମନଃ ସହଯୋଗେନ ନେତ୍ରରନ୍ଧ୍ରାଦ୍ ବିନର୍ଗତା ॥
ବିହରେତ୍ ରାଜମାର୍ଗେ ଚ ଚଞ୍ଚଳତ୍ୱାନ୍ନ ଦୃଶ୍ୟତେ ।
ଶାମ୍ଭବୀମୁଦ୍ରୟା ଯୋଗୀ ଧ୍ୟାନଯୋଗେନ ସିଧ୍ୟତି ।
ସୂକ୍ଷ୍ମଧ୍ୟାନମିଦଂ ଗୋପ୍ୟଂ ଦେବାନାମପି ଦୁର୍ଲଭମ୍ ॥

ଗୁରୁ—ଜ୍ୟୋତି କଥା ଆଉ ଶୁଣିବ ?

ଶିଷ୍ୟ—କୁହନ୍ତୁ ଦେବ ।

ଗୁରୁ—ସତ୍ୟଜ୍ଞାନାତ୍ମକୋଽନନ୍ତଃ ପରମାନନ୍ଦବିଗ୍ରହଃ ।
ପରମାତ୍ମା ପରଂ ଜ୍ୟୋତିରବ୍ୟକ୍ତୋଽବ୍ୟକ୍ତକାରଣମ୍
ନିତ୍ୟୋ ବିଶୁଦ୍ଧଃ ସର୍ବାତ୍ମା ନିର୍ଲେପୋଽୟଂ ନିରଞ୍ଜନଃ ॥

ମିତଭୋଜନ, ସନ୍ଧ୍ୟା ଏବଂ ବ୍ରାହ୍ମ ମୁହୂର୍ତ୍ତରେ ଆତ୍ମହୃଦୟରେ ଆତ୍ମସାକ୍ଷାତର ଅଭ୍ୟାସସଞ୍ଜାତ ଉଜ୍ଜ୍ୱଳିତ ଦୀପ ପରି ଆପଣା ମନଃ-ପ୍ରଦୀପଦ୍ୱାରା ନିରାକାର ଆତ୍ମାର ଦର୍ଶନ ଲାଭ କରି ମୁକ୍ତ ହୋଇଯାଏ । ମହାଭାରତ, ବନପର୍ବ, ଧର୍ମବ୍ୟାଧର ଉପଦେଶ ।

ମହାଭାରତ ଶାନ୍ତିପର୍ବରେ କଥିତ ଅଛି—

ସ୍ଥୂଳଦେହ ସହିତ ଆତ୍ମାର ଅଭେଦ-ବିମୁକ୍ତ ଯୋଗୀ ସର୍ବାଗ୍ରେ ହୃଦୟସ୍ଥ ଆକାଶରେ ସୂକ୍ଷ୍ମ ନୀହାର ପରି ଦର୍ଶନ କରନ୍ତି । ସେହି ଧୂମ ତିରୋହିତ ହେଲେ ଜଳ, ଜଳ ଅନ୍ତର୍ଧ୍ୟାନ ହେଲେ ଅଗ୍ନି, ତାହା ତିରୋହିତ ହେଲେ ସର୍ବସଂହାରକ ବାୟୁରୂପ ଦର୍ଶନ ହୁଏ, ଏହା ସୂକ୍ଷ୍ମ ହେଲେ ଏହାର ରୂପ ଊର୍ଣ୍ଣାତନ୍ତୁ ପରି ଦୃଷ୍ଟ ହୁଏ, ଏହା ଶୁଦ୍ଧଗତି ପ୍ରାପ୍ତ ହେଲେ ବିରୂପ ଆକାଶ ପରି ପ୍ରତୀୟମାନ ହୁଏ ।

୨୩୬ ଅଧ୍ୟାୟ

ମନ ଇନ୍ଦ୍ରିୟଗଣଙ୍କ ସହିତ ସମବେତ ହୋଇ ବୁଦ୍ଧିରେ ଅବସ୍ଥାନପୂର୍ବକ ପ୍ରସନ୍ନ ହେଲେ ଯୋଗୀ ବ୍ୟକ୍ତି ଧୂମବହୀନ ପ୍ରଜ୍ଜ୍ୱଳିତ ଅନଳ ଶିଖା ପରି ସେହି ତେଜଃ ସ୍ୱରୂପ ସର୍ବବ୍ୟାପୀ ପରମାତ୍ମାଙ୍କୁ ଦୀପ୍ତିମାନ ସୂର୍ଯ୍ୟଙ୍କ ପରି ଓ ଗଗନମଣ୍ଡଳସ୍ଥ ବିଦ୍ୟୁତ୍ ଅଗ୍ନିପରି ହୃଦୟ ମଧ୍ୟରେ ଦର୍ଶନ କରିଥାନ୍ତି । ଏଜନ୍ ୨୪୦ ଅଧ୍ୟାୟ

ଆତ୍ମା ପ୍ରକାଶିତ ହେଲେ ହୃଦୟ ମଧ୍ୟରେ ବିଧୂମ ପାବକ ପରି, ରଶ୍ମିସଂଯୁକ୍ତ ଦିବାକର ପରି, ବିଦ୍ୟୁତ୍ ସମ୍ବନ୍ଧୀୟ ଅଗ୍ନି ପରି ଲକ୍ଷିତ ହୋଇଥାନ୍ତି । ଏଜନ୍ ୩୦୫ ଅଧ୍ୟାୟ

ଯୋଗରେ ଉତ୍ତମ ରୂପରେ ନୈପୁଣ୍ୟ ଜନ୍ମିଲେ ଗାଢ଼ତର ଅନ୍ଧକାର ମଧ୍ୟରେ ଅବସ୍ଥିତ ଜ୍ୱଳନ ତୁଲ୍ୟ ଅବ୍ୟୟ ବ୍ରହ୍ମଙ୍କର ପ୍ରତ୍ୟକ୍ଷ ହୁଏ । ଏଜନ୍ ୩୧୭ ଅଧ୍ୟାୟ

ଯେଉଁତବେଳେ ତୁମର ଇନ୍ଦ୍ରିୟ ସମୁଦାୟ ବାହ୍ୟାଭ୍ୟନ୍ତର ବିଷୟରୁ ନିବୃତ୍ତ ହୋଇ ପରବ୍ରହ୍ମରେ ଅବସ୍ଥାନ କରିବ, ସେତେ-ବେଳେ ଯାଇ ତୁମେ ଆତ୍ମାରେ ପରବ୍ରହ୍ମଙ୍କୁ ଦର୍ଶନ କରିବାକୁ ସମର୍ଥ ହେବ । ବ୍ରହ୍ମବିଦ୍ ମହାତ୍ମାମାନେ ହିଁ ସେହି ସର୍ବବ୍ୟାପୀ ବିଧୂମ ପାବକ ପରି ପରବ୍ରହ୍ମଙ୍କୁ ଦର୍ଶନ କରନ୍ତି । ଏଜନ୍ ୨୫୦ ଅଧ୍ୟାୟ

ପଣ୍ଡିତ ବ୍ୟକ୍ତିଗଣ ସତତ ଯୋଗସାଧନ ଓ ଅଳ୍ପାହାର ପ୍ରଭାବରେ ଶୁଦ୍ଧଚିତ୍ତ ହୋଇ ଆତ୍ମା ସହିତ ସାକ୍ଷାତକାର ଲାଭ ଏବଂ ଚିତ୍ତପ୍ରସାଦ ନିବନ୍ଧନ ଶୁଭାଶୁଭ ସମସ୍ତ କର୍ମ ପରିତ୍ୟାଗପୂର୍ବକ ପରମାତ୍ମାରେ ଲୀନ ହୋଇ ଶାଶ୍ୱତ ସୁଖ ଆସ୍ୱାଦନ କରନ୍ତି । ଶରୀର ମଧ୍ୟରେ ଅଗ୍ନି ପରି ପ୍ରକାଶମୟ ମାନସିକ ଜ୍ୟୋତି ବିଦ୍ୟମାନ ରହିଅଛନ୍ତି, ତାହାଙ୍କୁ ଜୀବାତ୍ମା ବୋଲି କୀର୍ତ୍ତନ କରାଯାଏ ।

ଶାନ୍ତିପର୍ବ ୧୮୭ ଅଧ୍ୟାୟ

ଶିଷ୍ୟ—ତା ହେଲେ ଜ୍ୟୋତି କିଁ ଆତ୍ମା ?

ଗୁରୁ—ଆଉ ଶୁଣିବ ?

ଶିଷ୍ୟ—କୁହନ୍ତୁ ।

ଗୁରୁ—

ତପସୈବ ପରଂ ଜ୍ୟୋତିର୍ଭଗବନ୍ତମଧୋକ୍ଷଜଂ ।
ସର୍ବଭୂତ ଗୁହାବାସମଞ୍ଜସା ବିନ୍ଦତେ ପୁମାନ୍ ॥ ୧୯

ଶ୍ରୀମଦ୍ଭାଗବତ ୩ । ୧୨

କ୍ଷେହେଦଂ ବ୍ୟଜ୍ୟତେ ବିଶ୍ୱଂ ବିଶ୍ୱସ୍ମିନ୍ନବଭାତି ଯତ୍ ।
ତତ୍ତ୍ୱଂ ବ୍ରହ୍ମ ପରଂ ଜ୍ୟୋତିରାକାଶମିବ ବିସ୍ତୃତମ୍ ॥ ୭୦

ଏକଜନ୍ ୪ । ୨୮

ଅକ୍ଷରଂ ପରମଂ ବ୍ୟୋମ ଶୈବଂ ଜ୍ୟୋତିରନାମୟଂ ।
ଯସ୍ତନ୍ନ ବେଦ କିଂ ବେଦୈର୍ବ୍ରାହ୍ମଣସ୍ୟ ଭବିଷ୍ୟତି ॥ ୧୬
ନାନ୍ୟୋ ବେଦ୍ୟଃସ୍ୱୟଂଜ୍ୟୋତିରୁଦ୍ର ଏକୋ ନିରଞ୍ଜନଃ ।
ତସ୍ମିନ୍ ଜ୍ଞାତେଽଖିଳଂ ଜ୍ଞାତମିତ୍ୟାହୁର୍ବେଦବାଦିନଃ ॥ ୧୭

ସୌରପୁରାଣ ୨ୟ ଅଃ

ଅଶେଷସୂକ୍ଷ୍ମାନ୍ତରସନ୍ନିବିଷ୍ଟଂ ପ୍ରଧାନସଂଯୋଗବିୟୋଗହେତୁମ୍ ।
ତେଜୋମୟଂ ଜନ୍ମବିନାଶହୀନଂ ପ୍ରାଣାଭିଧାନମ୍ ପ୍ରଣତୋଽସ୍ମି ରୂପମ୍

ଅଦ୍ଭୁତ ରାମାୟଣ

ଯତ୍ତଦ୍ ବ୍ରହ୍ମମୟଂ ଜ୍ୟୋତିରାକାଶମିତି ସଂଜ୍ଞିତଂ ।
ତସ୍ମ ବ୍ରହ୍ମା ସମ୍ଭୂତଃ ସର୍ବଭୂତପିତାମହଃ ॥ ୨୫

ହରିବଂଶ ଭବିଷ୍ୟ ୧୬ ଅଃ

ତ୍ୟକ୍ତ୍ୱୈଷଣାସ୍ତ୍ରୟମବେକ୍ଷିତମୋକ୍ଷମାର୍ଗାଃ ।
ଭୈକ୍ଷ୍ୟାମୃତେନ ପରିକଳ୍ପିତଦେହଯାତ୍ରାଃ ॥

ଜ୍ୟୋତିଃ ପରାତ୍ ପରତରଂ ପରମାତ୍ମସଂଜ୍ଞଂ ।
ଧନ୍ୟା ଦ୍ୱିଜା ରହସି ହୃଦ୍ୟବଲୋକୟନ୍ତି ॥

ଧନ୍ୟାଷ୍ଟକ

ହୃଦୟକମଳ ମଧ୍ୟେ ଦୀପବତ୍ ବେଦସାରଂ ।
ପ୍ରଣବମୟମତର୍କ୍ୟଂ ଯୋଗିଭିର୍ଧ୍ୟାନଗମ୍ୟମ୍ ॥
ହରିଗୁରୁଶିବଯୋଗଂ ସର୍ବଭୂତସ୍ଥମେକଂ ।
ସକୃଦପି ମନସା ବୈଚିନ୍ତୟେଦ୍ ଯଃ ସ ମୁକ୍ତଃ ॥

ବ୍ରହ୍ମାନୁଚିନ୍ତନ (ଶ୍ରୀଶଙ୍କର)

---

ଓଁ ଓଁ ଶ୍ରୀଶ୍ରୀଗୁରବେ ନମଃ

ଶ୍ରୀମତେ ରାମାନୁଜାୟ ନମଃ ଶ୍ରୀମତେ ରାମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ ।

# ଶ୍ରୀଶ୍ରୀନାଦଲୀଳାମୃତ

## ଷଷ୍ଠ ହିଲ୍ଲୋଳ

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ ।
ବସୁନ୍ଧରା-ବାରି-ବିମାନ-ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ୱେନ ସଦୋଦିତାୟ
ପୂର୍ଣ୍ଣାୟ ଚିଦ୍‌ବିଳାସ-ବିଳାସାୟ ଓଙ୍କାରାୟ ନମଃ ॥

ପ୍ରଣବଃ ପରମଂ ବ୍ରହ୍ମ ପ୍ରଣବଃ ପରମଃ ଶିବଃ ।
ପ୍ରଣବଃ ପରମୋ ବିଷ୍ଣୁଃ ପ୍ରଣବଃ ସର୍ବଦେବତାଃ ॥
ଉତ୍ପତ୍ତିସ୍ଥିତିସଂହାରାଃ ଜାୟନ୍ତେ ଜଗତୋ ଯତଃ ।
କାର୍ଯ୍ୟକାରଣକର୍ତ୍ତାରମୋଙ୍କାରଂ ତଂ ନମାମ୍ୟହମ୍ ॥

ଗୁରୁ—ତା ପରେ ଯୋଗଶିଖା-ଶ୍ରୁତି କଥା ଶୁଣ:—

ନାନା ନାଦାଃ ପ୍ରବର୍ତ୍ତନ୍ତେ ସଂସ୍ରବେଚ୍ଚନ୍ଦ୍ରମଣ୍ଡଳମ୍ ॥ ୧୨୭
ନଶ୍ୟନ୍ତି କ୍ଷୁତ୍‌ପିପାସାଦ୍ୟାଃ ସର୍ବଦୋଷାସ୍ତତସ୍ତଦା ।
ସ୍ୱରୂପେ ସଚ୍ଚିଦାନନ୍ଦେ ସ୍ଥିତିମାପ୍ନୋତି କେବଳମ୍ ॥ ୧୨୮

ପ୍ରଥମ ଅଧ୍ୟାୟ

ରେଚକ ପୂରକ ତ୍ୟାଗ କରି ବାୟୁ ସ୍ଥିର ଭାବରେ ଅବସ୍ଥିତ ହୁଏ । ବହୁବିଧ ନାଦ ପ୍ରକାଶିତ ହୁଏ, ଚନ୍ଦ୍ରମଣ୍ଡଳରୁ ସୁଧା କ୍ଷରିତ ହୋଇଥାଏ, ସେତେବେଳେ କ୍ଷୁଧା ପିପାସା ପ୍ରଭୃତି ସମସ୍ତ ଦୋଷ ନଷ୍ଟ ହୁଏ, ଅନନ୍ତର ସ୍ୱରୂପ ସଚ୍ଚିଦାନନ୍ଦରେ ନିଶ୍ଚଳ ସ୍ଥିତିଲାଭ କରିଥାଏ ।

ଆଦୌ ରୋଗାଃ ପ୍ରଣଶ୍ୟନ୍ତି ପଶ୍ଚାଜ୍ଜାଡ୍ୟଂ ଶରୀରଜମ୍ ।
ତତଃ ସମରସୋ ଭୂତ୍ୱା ଚନ୍ଦ୍ରୋ ବର୍ଷତ୍ୟନାରତମ୍ ॥ ୧୪୭
ଧାତୂଂଶ୍ଚ ସଂଗ୍ରହେଦ୍‌ବହ୍ନିଃ ପବନେନ ସମନ୍ତତଃ ।
ନାନା ନାଦାଃ ପ୍ରବର୍ତ୍ତନ୍ତେ ମାର୍ଦ୍ଦବଂ ସ୍ୟାତ୍ କଳେବରେ ॥ ୧୪୮

ପ୍ରଥମେ ସବୁ ରୋଗ ନଷ୍ଟ ହୁଏ, ଅନନ୍ତର ଶରୀରଜାତ ଜଡ଼ତା, ତଦନନ୍ତର ସମରସ ହୋଇ ଚନ୍ଦ୍ର ଅବିରତ ସୁଧାବର୍ଷଣ କରୁଥାଏ ଏବଂ ଅଗ୍ନି ପବନ ସହିତ ଚତୁର୍ଦ୍ଦିଗରେ ସର୍ବପ୍ରକାରରେ ଧାତୁଗୁଡ଼ିକୁ ଶୁଦ୍ଧକରେ, ନାନା ନାଦ ପ୍ରବର୍ତ୍ତିତ ହୁଏ, ଶରୀରରେ କୋମଳତା ହୋଇଥାଏ ।

ଶିଷ୍ୟ—ଯୋଗାଗ୍ନି ଦ୍ୱାରା ଦେହ ଦଗ୍‌ଧ ହେଲା ପରେ ଯୋଗୀ ଅଲୌକିକ ଶକ୍ତିଲାଭ କରନ୍ତି ।

ଗୁରୁ—ସେମାନଙ୍କ କାମରୂପୀ ପବନପରି ଗତିସମ୍ପନ୍ନ ତ୍ରିଲୋକରେ କ୍ରୀଡ଼ା କରିଥାନ୍ତି । ତା ପରେ ଶୁଣ—ସୁଷୁମ୍ନାମଧ୍ୟସ୍ଥ ମୂଳାଧାର ଚକ୍ର ତ୍ରିକୋଣାକାର ।

ଶିବସ୍ୟ ଜୀବରୂପସ୍ୟ ସ୍ଥାନଂ ତଦ୍ଧି ପ୍ରଚକ୍ଷତେ ।
ଯତ୍ର କୁଣ୍ଡଳିନୀ ନାମ ପରାଶକ୍ତିଃ ପ୍ରତିଷ୍ଠିତା ॥ ୧୬୯
ଯସ୍ମାଦୁତ୍ପଦ୍ୟତେ ବାୟୁର୍ଯସ୍ମାଦ୍ ବହ୍ନିଃ ପ୍ରବର୍ତ୍ତତେ ।
ଯସ୍ମାଦୁତ୍ପଦ୍ୟତେ ବାୟୁର୍ଯସ୍ମାନ୍ନାଦଃ ପ୍ରବର୍ତ୍ତତେ ॥ ୧୭୦

ଯସ୍ମାଦୁତ୍ପଦ୍ୟତେ ହଂସୋ ଯସ୍ମାଦୁତ୍ପଦ୍ୟତେ ମନଃ ॥
ତଦେବ କାମରୂପାଖ୍ୟଂ ପୀଠଂ କାମଫଳପ୍ରଦମ ॥ ୧୭୧

ତାହାହିଁ ଜୀବରୂପକ ଶିବଙ୍କର ସ୍ଥାନ, ଯେଉଁଠି କୁଣ୍ଡଳିନୀ ନାମ୍ନୀ ପରଶକ୍ତି ବିରାଜମାନା, ଯେଉଁ ସ୍ଥାନରୁ ବାୟୁ ଉତ୍ପନ୍ନ ହୁଏ, ଯେଉଁ ସ୍ଥାନରୁ ଅଗ୍ନି ଉତ୍ପାଦିତ ହୁଏ,ଯାହାଙ୍କଠାରୁ ବିନ୍ଦୁ ଜାତ ହୁଏ, ଯାହାଙ୍କଠାରେ ନାଦ ଆବଦ୍ଧ ହୋଇ ରହିଥାଏ, ଯାହାଙ୍କ ଠାରୁ ହଂସ ଓ ମନ ଉଦ୍ଭୂତ ହୁଏ, ତାହାହିଁ କାମଫଳପ୍ରଦ କାମରୂପାଖ୍ୟ ପୀଠ ।

ଶିଷ୍ୟ—କଣ ସମସ୍ତର ମୂଳ ବୋଲି ମୂଳାଧାର ନାମ ହୋଇଛି ?

ଗୁରୁ—ଆକାଶମଣ୍ଡଳଂ ବୃତ୍ତଂ ଦେବତାସ୍ୟ ସଦାଶିବଃ ।
ନାଦରୂପଂ ଭ୍ରୂବୋର୍ମଧ୍ୟେ ମନସୋ ମଣ୍ଡଳଂ ବିଦୁଃ ॥ ୧୦୮
ପ୍ରଥମ ଅଧ୍ୟାୟ

ଆକାଶ ମଣ୍ଡଳ ଗୋଲାକାର, ଏହାର ଦେବତା ସଦାଶିବ, ଭ୍ରୂଯୁଗଳ ମଧ୍ୟରେ ନାଦରୂପକ ମନର ମଣ୍ଡଳ,—ଯୋଗିଗଣ ଏହା ବିଦିତ ଅଛନ୍ତି ।

ଦ୍ୱିତୀୟ ଅଧ୍ୟାୟରେ କଥିତ ହୋଇଅଛି:—
ଶିବଶକ୍ତିମୟଂ ମନ୍ତ୍ରଂମୂଳାଧାରାତ୍ ସମୁତ୍ଥିତମ୍
ତସ୍ୟ ମନ୍ତ୍ରସ୍ୟ ବୈ ବ୍ରହ୍ମନ୍ ଶ୍ରୋତା ବକ୍ତା ଚ ଦୁର୍ଲ୍ଲଭଃ ॥ ୩
ଏତତ୍ ପୀଠମିତି ପ୍ରୋକ୍ତଂ ନାଦଲିଙ୍ଗଂ ଚିଦାତ୍ମକଂ ।
ତସ୍ୟ ବିଜ୍ଞାନ ମାତ୍ରେଣ ଜୀବନ୍ମୁକ୍ତୋ ଭବେଜ୍ଜନଃ ॥ ୭

ଶିବଶକ୍ତିମୟ ମନ୍ତ୍ର ମୂଳାଧାରରୁ ସମୁତ୍ଥିତ ହୁଏ । ହେ ବ୍ରହ୍ମନ୍, ସେ ମନ୍ତ୍ରର ଶ୍ରୋତା ଓ ବକ୍ତା ଦୁହେଁଯାକ ଦୁର୍ଲଭ । ଏହା ପୀଠ ନାମରେ ଅଭିହିତ ହୁଏ । ଚିଦାତ୍ମକ ନାଦ ଲିଙ୍ଗ, ତାହାର

ବିଜ୍ଞାନ ମାତ୍ରେହିଁ ମାନବ ଜୀବନ୍ମୁକ୍ତ ହୋଇଥାଏ, ଅତି ଶୀଘ୍ର ଅଣିମାଦି ଐଶ୍ୱର୍ଯ୍ୟ ଉପସ୍ଥିତ ହୁଏ ।

ମନନ ତ୍ରାଣନ ମୋର ଅବବୋଧନ ଏବଂ ମୋର ଅଧିଷ୍ଠାନ ହେତୁ ମନ୍ତ୍ର ମନ୍ତ୍ର ବୋଲି ଉକ୍ତ ହୋଇଥାଏ ।

ସର୍ବମନ୍ତ୍ରର ମୂଳ ମୂଳାଧାରରୁ ସମୁଦ୍ଭୂତ ; ମୂଳସ୍ୱରୂପର ଲିଙ୍ଗତ୍ୱ ହେତୁ ମୂଳମନ୍ତ୍ର ବୋଲି ସ୍ମୃତ ହୁଏ ।

ସୂକ୍ଷ୍ମତ୍ୱାତ୍ କାରଣତ୍ୱାଚ ଲୟନାଦ୍‌ଗମନାଦପି ॥ ୯
ଲକ୍ଷଣାତ୍ ପରମେଶସ୍ୟ ଲିଙ୍ଗମିତ୍ୟଭିଧୀୟତେ ॥

ସୂକ୍ଷ୍ମତ୍ୱ କାରଣତ୍ୱ ଓ ଲୀନ ହୋଇଯିବା ଏବଂ ଗମନତ୍ୱ ହେତୁ ତଥା ପରମେଶ୍ୱରଙ୍କର ଲକ୍ଷଣ ହେତୁ ଲିଙ୍ଗ ନାମରେ ଅଭିହିତ ହୋଇଥାଏ ।

ମହାମାୟା ମହାଲକ୍ଷ୍ମୀର୍ମହାଦେବୀ ସରସ୍ୱତୀ ॥ ୧୧
ଆଧାରଶକ୍ତିରବ୍ୟକ୍ତା ଯୟା ବିଶ୍ୱଂ ପ୍ରବର୍ତ୍ତତେ ।
ସୂକ୍ଷ୍ମାଭି ବିନ୍ଦୁରୂପେଣ ପୀଠରୂପେଣ ବର୍ତ୍ତତେ ॥ ୧୨
ବିନ୍ଦୁପୀଠଂ ବିନିର୍ଭିଦ୍ୟ ନାଦଲିଙ୍ଗମୁପସ୍ଥିତମ୍ ।
ପ୍ରାଣେନୋଚ୍ଚାର୍ଯ୍ୟତେ ବ୍ରହ୍ମନ୍ ଷଣ୍ମୁଖୀକରଣେନ ଚ ॥ ୧୩
ଗୁରୂପଦେଶମାର୍ଗେଣ ସହସୈବ ପ୍ରକାଶତେ ।
ସ୍ଥୂଳଂ ସୂକ୍ଷ୍ମଂ ପରଂ ଚେତି ତ୍ରିବିଧଂ ବ୍ରହ୍ମଣୋ ବପୁଃ ॥ ୧୪

ମହାମାୟା ମହାଲକ୍ଷ୍ମୀ ମହାଦେବୀ ସରସ୍ୱତୀ ଅବ୍ୟକ୍ତା ଆଧାରଶକ୍ତି—ଯାହାଙ୍କଦ୍ୱାରା ବିଶ୍ୱ ଉତ୍ପାଦିତ ହୁଏ—ସୂକ୍ଷ୍ମା ଜ୍ୟୋତିର୍ମୟୀ ବିନ୍ଦୁରୂପରେ ପୀଠରୂପରେ ଅବସ୍ଥିତା ହୁଅନ୍ତି ; ବିନ୍ଦୁ ପୀଠଭେଦ କରି ଉପସ୍ଥିତ ନାଦଲିଙ୍ଗକୁ ଷଣ୍ମୁଖୀକରଣମୁଦ୍ରା ସହଯୋଗରେ ପ୍ରାଣଦ୍ୱାରା ଉଚ୍ଚାରଣ କରିଥାଏ । ଗୁରୁଙ୍କର ଉପଦେଶ

ମାର୍ଗରେ ସ୍ଥୂଳ, ସୂକ୍ଷ୍ମ ଏବଂ ପର—ତ୍ରିବିଧ ବ୍ରହ୍ମର ଶରୀର ସଦାସା ପ୍ରକାଶିତ ହୁଏ ।

ଶିଷ୍ୟ—ସ୍ଥୂଳାଦି ରୂପ କଣ ?

ଗୁରୁ—ପଞ୍ଚବ୍ରହ୍ମମୟ ରୂପ ପଞ୍ଚଭୂତାତ୍ମକ ବୈରାଜ ସ୍ଥୂଳ ବୋଲି କଥିତ ହୁଏ । ହିରଣ୍ୟଗର୍ଭ ପ୍ରାଣ ଓ ଓଁ ସୋଽହଂ ହଂସଃ ଏହି ବୀଜତ୍ରୟାତ୍ମକ ନାଦ ସୂକ୍ଷ୍ମରୂପ ।

ପରଂ ବ୍ରହ୍ମ ପରଂ ସତ୍ୟଂ ସଚ୍ଚିଦାନନ୍ଦ ଲକ୍ଷଣମ୍ ।
ଅପ୍ରମେୟମନିର୍ଦ୍ଦେଶ୍ୟମବାଙ୍ମନସଗୋଚରମ୍ ॥ ୧୩
ଶୁଦ୍ଧଂ ସୂକ୍ଷ୍ମଂ ନିରାକାରଂ ନିର୍ବିକାରଂ ନିରଞ୍ଜନମ୍ ।
ଅନନ୍ତମପରିଚ୍ଛେଦ୍ୟମନୂପମମନାମୟମ୍ ॥ ୧୪

ଦ୍ୱିତୀୟ ଅଧ୍ୟାୟ

ପରବ୍ରହ୍ମ ପରମ ସତ୍ୟ ସଚ୍ଚିଦାନନ୍ଦ ଲକ୍ଷଣ ପ୍ରମାଣର ଅଯୋଗ୍ୟ ଅନିର୍ଦ୍ଦେଶ୍ୟ ବାକ୍ୟ ଓ ମନର ଅଗୋଚର ଶୁଦ୍ଧ ସୂକ୍ଷ୍ମ ନିରାକାର ନିର୍ବିକାର ନିରଞ୍ଜନ ଅନନ୍ତ ଅପରିଚ୍ଛେଦ୍ୟ ଅନୁପମ ଅନାମୟ ହେଲେ ପରମ ରୂପ ।

ଶିଷ୍ୟ—ସ୍ଥୂଳ ସୂକ୍ଷ୍ମ ରୂପହିଁ ମନର ଗୋଚର, ପରମ ରୂପଠାରୁ ମନ ବହୁତ ଦୂରରେ ।

ଗୁରୁ—ହିଁ ।

ନାସ୍ତି ନାଦାତ୍ ପରୋମନ୍ତ୍ରୋ ନ ଦେବଃ ସ୍ୱାତ୍ମନଃ ପରଃ । ୨୦
ନାନୁସନ୍ଧେଃ ପରା ପୂଜା ନହି ତୃପ୍ତେଃ ପରଂ ସୁଖମ୍ ॥

ନାଦଠାରୁ ଆଉ ଶ୍ରେଷ୍ଠମନ୍ତ୍ର ନାହିଁ, ସ୍ୱୀୟ ଆତ୍ମା ଅପେକ୍ଷା ଶ୍ରେଷ୍ଠ ଦେବତା ନାହିଁ, ନାଦାନୁସନ୍ଧାନଠାରୁ ଶ୍ରେଷ୍ଠ ପୂଜା ନାହିଁ, ତୃପ୍ତି ଅପେକ୍ଷା ସୁଖ ନାହିଁ ।

ଅକ୍ଷରଂ ପରମୋ ନାଦଃ ଶବ୍ଦବ୍ରହ୍ମେତି କଥ୍ୟତେ ।

ତୃତୀୟ ଅଧ୍ୟାୟରେ ଆତ୍ମାର ଆଧାର ବିନ୍ଦୁ ରୂପିଣୀ ଶକ୍ତିଠାରୁ ନାଦର ଉତ୍ପତ୍ତି କଥା ପ୍ରଥମରୁ ଆଲୋଚନା କରିଅଛୁ ।

ଶିଷ୍ୟ—ଆଜ୍ଞା ହଁ, ବର୍ଣ୍ଣୋତ୍ପତ୍ତି ବର୍ଣ୍ଣନାକାଳରେ ତାହା କହିଛନ୍ତି ।

ଗୁରୁ—ପଞ୍ଚମ ଅଧ୍ୟାୟରେ କଥିତ ହୋଇଅଛି—

ଆକାଶମଣ୍ଡଳଂ ବୃତ୍ତଂ ଶ୍ରୀମନ୍ନାରାୟଣୋଽଧିଦେବତା ।
ନାଦରୂପଂ ଭ୍ରୂବୋର୍ମଧ୍ୟେ ମନସୋ ମଣ୍ଡଳଂ ବିଦୁଃ ॥ ୧୫

ଶିଷ୍ୟ— ଏ କଥା ପୂର୍ବରୁ ମଧ୍ୟ କହିଛନ୍ତି, ଦେବତା ମାନ ପ୍ରଭେଦ— ସଦାଶିବ ଏବଂ ନାରାୟଣ ।

ଗୁରୁ—ହଁ ଏଠାରେ ମଧ୍ୟ କହିଛନ୍ତି—

ସ୍ଥୂଳଂ ସୂକ୍ଷ୍ମଂ ପରଂ ଚେତି ତ୍ରିବିଧଂ ବ୍ରହ୍ମଣୋ ବପୁଃ ।
ସ୍ଥୂଳଂ ଶୁକ୍ଳାତ୍ମକଂ ବିନ୍ଦୁଃ ସୂକ୍ଷ୍ମଂ ପଞ୍ଚାଗ୍ନିରୂପକମ୍ ॥ ୨୮
ସୋମାତ୍ମକଃ ପରଃ ପ୍ରୋକ୍ତଃ ସଦା ସାକ୍ଷୀ ସଦାଚ୍ୟୁତଃ ॥

ସ୍ଥୂଳ ଶୁକ୍ଳାତ୍ମକ ଜ୍ୟୋତି; ସୂକ୍ଷ୍ମ କାଳାଗ୍ନି, ବାଡ଼ବାଗ୍ନି, କାଷ୍ଠ-ପାଷାଣଜ ଅଗ୍ନି, ଅନ୍ତରୀକ୍ଷଗତ ବିଦ୍ୟୁତ୍ ଅଗ୍ନି ଓ ସୂର୍ଯ୍ୟରୂପ ଅଗ୍ନି । କାଳାଗ୍ନି ମୂଳାଧାରରେ ଅବସ୍ଥିତ, ସେଥିରୁ ନାଦ ପ୍ରବର୍ତ୍ତିତ ହୁଏ । ବାଡବାଗ୍ନି ଶରୀରର ଅସ୍ଥି ମଧ୍ୟରେ ଉତ୍ପନ୍ନ ହୁଏ । କାଷ୍ଠପାଷାଣସ୍ଥିତ ଅଗ୍ନି ମଧ୍ୟ ଅସ୍ଥିମଧ୍ୟରେ ଉତ୍ପନ୍ନ ହୋଇଥାଏ । ବୈଦ୍ୟୁତ ଅଗ୍ନି ସ୍ୱୀୟ ଅନ୍ତରାତ୍ମକ, ସୂର୍ଯ୍ୟରୂପ ଅଗ୍ନି ନାଭିମଣ୍ଡଳରେ ଅବସ୍ଥିତ ।

ଭ୍ରୂମଧ୍ୟନିଳୟୋ ବିନ୍ଦୁଃ ଶୁଦ୍ଧସ୍ଫଟିକସନ୍ନିଭଃ ।
ମହାବିଷ୍ଣୋଶ୍ଚ ଦେବସ୍ୟ ତତ୍ ସୂକ୍ଷ୍ମଂ ରୂପମୁଚ୍ୟତେ ॥ ୩୪

ଭ୍ରୂମଧ୍ୟସ୍ଥିତ ବିଶୁଦ୍ଧ ସ୍ଫଟିକମଣିପରି ବିନ୍ଦୁ ଜ୍ୟୋତିର୍ମୟ ମହାବିଷ୍ଣୁଙ୍କର ସୂକ୍ଷ୍ମ ରୂପ ବୋଲି କୁହାଯାଏ ।

ସୋମାତ୍ମକ ପରରୂପ, ସେ ସଦା ସାକ୍ଷୀ ଏବଂ ସର୍ବଦା ଏକ ଭାବରେ ସ୍ଥିତ ।

ଶିଷ୍ୟ—ଏହା କପରି ଦର୍ଶନ କରାଯାଇ ପାରେ ?

ଗୁରୁ—ଜିତେନ୍ଦ୍ରିୟ ଶାନ୍ତ ଜିତଶ୍ୱାସ ସାଧକ ହିଁ ଏ ରୂପ ଦର୍ଶନରେ ସମର୍ଥ । ସିଦ୍ଧିସମୂହ ମଧ୍ୟ ତାହାଙ୍କୁ ଭଜନ କରନ୍ତି ।

ନାଦେ ମନୋଲୟଂ ବ୍ରହ୍ମନ୍ ଦୂରଶ୍ରବଣକାରଣମ୍ ।
ବିନ୍ଦୌ ମନୋଲୟଂ କୃତ୍ୱା ଦୂରଦର୍ଶନମାପ୍ନୁୟାତ୍ । ୪୭
୫ମ ଅଧ୍ୟାୟ

ନାଦରେ ମନ ଲୀନ ହେଲେ ଦୂରଦର୍ଶନଶକ୍ତି ଏବଂ ବିନ୍ଦୁରେ ମନୋଲୟ ହେଲେ ଦୂରଶ୍ରବଣଶକ୍ତି ଲାଭ ହୁଏ ।

ଶିଷ୍ୟ—ଏହି ସବୁ କ୍ଷୁଦ୍ର ସିଦ୍ଧି ପ୍ରକୃତ ଯୋଗୀ ଆକାଙ୍କ୍ଷା କରନ୍ତି ନାହିଁ ?

ଗୁରୁ—ନା, ପରମ ପଦ ହିଁ ସେମାନଙ୍କର ଆକାଙ୍କ୍ଷିତ ।

ଅନାହତସ୍ୟ ଶବ୍ଦସ୍ୟ ତସ୍ୟ ଶବ୍ଦସ୍ୟ ଯୋ ଧ୍ୱନିଃ ।
ଧ୍ୱନେରନ୍ତର୍ଗତଂ ଜ୍ୟୋତି ର୍ଜ୍ୟୋତିଷୋଽନ୍ତର୍ଗତଂ ମନଃ ॥
ତନ୍ମନୋ ବିଲୟଂ ଯାତି ତଦ୍ ବିଷ୍ଣୋଃ ପରମଂ ପଦଂ ॥ ୨୧
ଷଷ୍ଠ ଅଧ୍ୟାୟ

ଅନାହତ ଶବ୍ଦର ଯେଉଁ ଧ୍ୱନି—ଧ୍ୱନିମଧ୍ୟଗତ ଜ୍ୟୋତିଃ—ଜ୍ୟୋତିର ଅନ୍ତର୍ଗତ ମନ, ସେହି ସ୍ଥାନରେ ମନ ବିଲୀନ ହୋଇଯାଏ, ତାହା ହିଁ ବିଷ୍ଣୁଙ୍କର ପରମପଦ ।

ଶିଷ୍ୟ—ମନୋଲୟ ହିଁ ସମସ୍ତ ସାଧନାର ଲକ୍ଷ୍ୟ । ନାଦ ଶୁଣୁ ଶୁଣୁ ମନୋଲୟ ହୁଏ ତ ?

ଗୁରୁ—ହିଁ, ନାଦର ଆବିର୍ଭାବ ହେଲେ ମନକୁ ଅବଶଭାବରେ ଲୟ କରି ଦେଇଥାନ୍ତି ।

ଆହୁରି ଶୁଣ ।

ବ୍ରହ୍ମରନ୍ଧ୍ରେ ମହାସ୍ଥାନେ ବର୍ତ୍ତତେ ସତତଂ ଶିବା ।
ଚିଚ୍ଛକ୍ତିଃ ପରମା ଦେବୀ ମଧ୍ୟମେ ସୁପ୍ରତିଷ୍ଠିତା । ୪୭
ମାୟାଶକ୍ତିର୍ଲଲାଟାଗ୍ରଭାଗେ ବ୍ୟୋମାମ୍ବୁଜେ ତଥା ।
ନାଦରୂପା ପରା ଶକ୍ତିର୍ଲଲାଟସ୍ୟ ତୁ ମଧ୍ୟମେ ॥ ୪୮
ଭାଗେ ବିନ୍ଦୁମୟୀ ଶକ୍ତିର୍ଲଲାଟସ୍ୟାପରାଂଶକେ ।
ବିନ୍ଦୁମଧ୍ୟେ ତୁ ଜୀବାତ୍ମା ସୂକ୍ଷ୍ମରୂପେଣ ବର୍ତ୍ତତେ ॥ ୪୯ ।
ହୃଦୟେ ସ୍ଥୂଳରୂପେଣ ମଧ୍ୟମେନ ତୁ ମଧ୍ୟମେ ॥

ମହାସ୍ଥାନ ବ୍ରହ୍ମରନ୍ଧ୍ରରେ ଶିବା ସତତ ଅବସ୍ଥିତା, ଜ୍ୟୋତିର୍ମୟୀ ପରମା ଚିଚ୍ଛକ୍ତି ମଧ୍ୟମରେ ସୁପ୍ରତିଷ୍ଠିତା ଅଛନ୍ତି, ଲଲାଟର ଅଗ୍ରଭାଗରେ ବ୍ୟୋମପଦ୍ମରେ ମାୟାଶକ୍ତି ଏବଂ ନାଦରୂପା ପରାଶକ୍ତି ଲଲାଟର ମଧ୍ୟଭାଗରେ ଅବସ୍ଥାନ କରୁଅଛନ୍ତି । ବିନ୍ଦୁଶକ୍ତି ଲଲାଟର ଉପର ଅଂଶରେ--ବିନ୍ଦୁମଧ୍ୟରେ ଜୀବାତ୍ମା ସୂକ୍ଷ୍ମରୂପରେ ଅବସ୍ଥିତ । ହୃଦୟରେ ସ୍ଥୂଳ ଅର୍ଥାତ୍ ଜ୍ୟୋତିରୂପରେ ଏବଂ ଦେହ ମଧ୍ୟରେ "ମଧ୍ୟମ" ସ୍ୱର ନାଦରୂପରେ ଅବସ୍ଥାନ କରୁଛନ୍ତି । ବାମ ଦକ୍ଷିଣ ମାର୍ଗରେ ପ୍ରାଣ ଅପାନ ବଶରେ ଜୀବ ଅଧ ଓ ଊର୍ଦ୍ଧ୍ୱକୁ ଧାବିତ ହେଉଛନ୍ତି, ଚଞ୍ଚଳତ୍ୱ ହେତୁରୁ ଦୃଷ୍ଟିଗୋଚର ହେଉନାହାଁନ୍ତି ।

ଶିଷ୍ୟ—ଜୀବାତ୍ମା ସୂକ୍ଷ୍ମରୂପରେ ଲଲାଟସ୍ଥ ବିନ୍ଦୁମଧ୍ୟରେ ଏବଂ ସ୍ଥୂଳ ଜ୍ୟୋତି ରୂପରେ ହୃଦୟପଦ୍ମରେ ଏବଂ ମଧ୍ୟମ ଧ୍ୱନିରୂପରେ ଅବସ୍ଥାନ କରୁଛନ୍ତି—ଏଇଆ ତ ?

ଗୁରୁ—ହଁ ।

ମନସା ମନ ଆଲୋକ୍ୟ ଯୋଗନିଷ୍ଠଃ ସଦା ଭବେତ୍ ॥ ୭୪
ମନସା ମନ ଆଲୋକ୍ୟ ଦୃଶ୍ୟନ୍ତେ ପ୍ରତ୍ୟୟା ଦଶ ।
ଯଦା ପ୍ରତ୍ୟୟା ଦୃଶ୍ୟନ୍ତେ ତଦା ଯୋଗୀଶ୍ୱରୋ ଭବେତ୍ ॥ ୭୫

ବିନ୍ଦୁନାଦକଳାଜ୍ୟୋତିରବୀନ୍ଦୁ ଧ୍ରୁବତାରକମ୍ ।
ଶାନ୍ତଞ୍ଚ ତଦତୀତଞ୍ଚ ପରଂବ୍ରହ୍ମ ତଦୁଚ୍ୟତେ ॥ ୬୭

ବିଶୁଦ୍ଧ ମନଦ୍ୱାରା ମନକୁ ସମ୍ୟକ୍‌ରୂପେ ଦେଖି ଯୋଗନିଷ୍ଠ ହେବ । ଶୁଦ୍ଧ ମନଦ୍ୱାରା ମନ ଉତ୍ତମ ଭାବରେ ଦୃଷ୍ଟ ହେଲେ ଦଶଟି ପ୍ରତ୍ୟୟ ଅର୍ଥାତ୍ ଚିହ୍ନ ଦେଖାଯାଏ—ବିନ୍ଦୁ, ନାଦ, କଳା, ଜ୍ୟୋତିଃ, ରବି, ଚନ୍ଦ୍ର, ଧ୍ରୁବ, ତାରକା, ଶାନ୍ତ ଏବଂ ଶାନ୍ତାତୀତ—ତାହା ପରମବ୍ରହ୍ମ ବୋଲି କଥିତ ହୁଅନ୍ତି । ଶାନ୍ତ "ଶାନ୍ତିମୟଭାବ", ଶାନ୍ତାତୀତ ଦେହ ଓ ମନର ବୃତ୍ତିହୀନ ଏକ ଅବ୍ୟକ୍ତ ଅବସ୍ଥା । ସେତେବେଳେ ଯୋଗୀ ହସେ, ଉଲ୍ଲାସ କରେ, ପ୍ରୀତି ସହକାରେ କ୍ରୀଡ଼ା କରେ, ଆନନ୍ଦିତ ହୁଏ, ଆୟୁର୍ବୃଦ୍ଧି ହୁଏ, ତତ୍ତ୍ୱ ବୁଝି ସମସ୍ତ ବିଷୟଠାରୁ ଖ୍ୟାତ ହୋଇଥାଏ, ଶୋକ ରୁଦ୍ଧ କରିବାକୁ ଓ ତତ୍ତ୍ୱ ବୁଝିବାକୁ ସମର୍ଥ ହୁଏ, ସମ୍ପଦରେ ମୁଗ୍ଧ ହୁଏ ନାହିଁ, ଶତ୍ରୁତା କରିବାକୁ କମ୍ପିତ ହୁଏ । ସେହି ହାସ୍ୟକାରୀ କାମରତ ହୁଏ ନାହିଁ—କାମବସ୍ତୁ ଉପସ୍ଥିତ ହେଲେ ଉପେକ୍ଷା କରେ ।

ଯତ୍ର ଦେଶେ ବସେଦ୍ ବାୟୁଶ୍ଚିତ୍ତଂ ତଦ୍‌ବସତି ଧ୍ରୁବମ୍ । ୬୯
ମନଶ୍ଚନ୍ଦ୍ରୋ ରବିର୍ବାୟୁର୍ଦୃଷ୍ଟିରଗ୍ନିରୁଦାହୃତଃ ।
ବିନ୍ଦୁନାଦକଳା ବ୍ରହ୍ମନ୍ ବିଷ୍ଣୁ ବ୍ରହ୍ମେଶଦେବତାଃ ॥ ୭୦
ସଦା ନାଦାନୁସନ୍ଧାନାତ୍ ସଂକ୍ଷୀଣା ବାସନା ଭବେତ୍ ।
ନିରଞ୍ଜନେ ବିଲୀୟେତେ ମରୁନ୍ମନସୀ ପଦ୍ମଜ ॥ ୭୧
ଯୋ ବୈ ନାଦଃ ସ ବୈ ବିନ୍ଦୁସ୍ତଦ୍ୱୈ ଚିତ୍ତଂ ପ୍ରକୀର୍ତ୍ତିତଂ ।
ନାଦୋ ବିନ୍ଦୁଶ୍ଚ ଚିତ୍ତଞ୍ଚ ତ୍ରିଭିରୈକ୍ୟଂ ପ୍ରସାଧୟେତ୍ ॥ ୭୨
ମନ ଏବ ହି ବିନ୍ଦୁଶ୍ଚ ଉତ୍ପତ୍ତିସ୍ଥିତିକାରଣମ୍ ।
ମନସୋତ୍ପଦ୍ୟତେ ବିନ୍ଦୁର୍ଯଥା କ୍ଷୀରଂ ଘୃତାତ୍ମକମ୍ ॥ ୭୩

ଷଷ୍ଠ ଅଧ୍ୟାୟ

ଯେଉଁ ସ୍ଥାନରେ ବାୟୁ ସେହି ସ୍ଥାନରେ ନିଶ୍ଚୟ ଚିତ୍ତ ଅବସ୍ଥାନ କରେ । ମନ ଚନ୍ଦ୍ର, ରବି ବାୟୁ, ଦୃଷ୍ଟି ଅଗ୍ନି ବୋଲି ଅଭିହିତ ହୁଅନ୍ତି । ହେ ବ୍ରହ୍ମନ୍ ! ବିନ୍ଦୁ, ନାଦ ଓ କଳା, ବିଷ୍ଣୁ, ବ୍ରହ୍ମା ଏବଂ ମହେଶ୍ୱର । ସର୍ବଦା ନାଦାନୁସନ୍ଧାନ ହେତୁ ବାସନା ସମ୍ୟକ୍ କ୍ଷୀଣା ହୋଇଥାଏ । ହେ ପଦ୍ମଜ ! ବାୟୁ ଏବଂ ମନ ନିରଞ୍ଜନଙ୍କଠାରେ ବିଲୀନ ହୁଏ । ଯାହା ନାଦ ତାହା ବିନ୍ଦୁ ତାହାହିଁ ଚିତ୍ତ; ନାଦ ବିନ୍ଦୁ ଏବଂ ଚିତ୍ତ ତିନୋଟି ଦ୍ୱାରା ଐକ୍ୟ ଉତ୍ତମ ଭାବରେ ନିଷ୍ପାଦିତ କରିବ । ନିଶ୍ଚୟ ମନ ଓ ବିନ୍ଦୁ ଉତ୍ପତ୍ତି ସ୍ଥିତିର କାରଣ; ଯେପରି ଘୃତାତ୍ମକ କ୍ଷୀର ସେହିପରି ମନଠାରୁ ବିନ୍ଦୁ ଉତ୍ପନ୍ନ ହୋଇଥାଏ ।

ଶିଷ୍ୟ—ନାଦ ବିନ୍ଦୁ ଚିତ୍ତ—ତିନୋଟିର ଐକ୍ୟ ତ ନାଦ ଶୁଣିଲେ ହୋଇଯିବ ।

ଗୁରୁ—ହଁ, ତ୍ରିପୁରତାପିନୀ-ଶ୍ରୁତି କହିଛନ୍ତି:—

ସ୍ୱରେଣ ସନ୍ଧୟେଦ୍ ଯୋଗୀ ସ୍ୱରଂ ସଂଭାବୟେତ୍ ପରଂ ।
ଅସ୍ୱରେଣ ତୁ ଭାବେନ ନ ଭାବୋ ଭାବ ଇଷ୍ୟତେ ॥ ୬

୫ମ ଅଧ୍ୟାୟ

ନାଦଦ୍ୱାରା ଯୋଗୀ ବ୍ରହ୍ମରେ ଲୀନ ହେବେ, ଓଙ୍କାରର ଅର୍ଥାତ୍ ଶ୍ରେଷ୍ଠ ଓଙ୍କାର ନାଦକୁ ସମ୍ୟକ୍ ଭାବନା କରିବେ, ଶବ୍ଦଶୂନ୍ୟ ଭାବ ଦ୍ୱାରା ଅନୁଭବ ଉତ୍ପତ୍ତି ଦେଖାଯାଏ ନାହିଁ ।

ଶବ୍ଦମାୟାବୃତୋ ଯାବତ୍ତାବତ୍ତିଷ୍ଠତି ପୁଷ୍କଲେ ।
ଭିନ୍ନେ ତମସି ଚୈକତ୍ୱମେକମେବାନୁପଶ୍ୟତି ॥ ୧୫
ଶବ୍ଦାକ୍ଷରମପରଂବ୍ରହ୍ମ ତସ୍ମିନ୍ କ୍ଷୀଣେ ଯଦକ୍ଷରଂ ।
ତଦ୍‌ବିଦ୍ୱାନକ୍ଷରଂ ଧ୍ୟାୟେଦ୍ ଯଦୀଚ୍ଛେଚ୍ଛାନ୍ତିମାତ୍ମନଃ ॥ ୧୬
ଦ୍ୱେ ବ୍ରହ୍ମଣୀ ହି ମନ୍ତବ୍ୟେ ଶବ୍ଦବ୍ରହ୍ମ ପରଂ ଚ ଯତ୍ ।
ଶବ୍ଦବ୍ରହ୍ମଣି ନିଷ୍ଣାତଃ ପରଂ ବ୍ରହ୍ମାଧିଗଚ୍ଛତି ॥ ୧୭ ଏକଜନ୍

ଯେ ପର୍ଯ୍ୟନ୍ତ ଶବ୍ଦ ମାୟାଦ୍ୱାରା ଆଚ୍ଛନ୍ନ, ସେଇ ପର୍ଯ୍ୟନ୍ତ ବହୁତ୍ୱରେ ଅବସ୍ଥାନ କରେ, ଅନ୍ଧକାର ଅପଗତ ହୋଇଗଲେ ଏକତ୍ୱ —ଏକକୁହିଁ ଦର୍ଶନ କରିଥାଏ । ଶବ୍ଦର ବର୍ଣ୍ଣ ଅପର ବ୍ରହ୍ମ, ତାହା କ୍ଷୀଣ ଅର୍ଥାତ୍ ସୂକ୍ଷ୍ମ ହେଲେ—ମଧ୍ୟମା ପଶ୍ୟନ୍ତୀ ରୂପରେ ପରିଣତ ହେଲେ—ଯେଉଁ ଅକ୍ଷର ନାଦବ୍ରହ୍ମ, ବିଦ୍ୱାନ୍ ବ୍ୟକ୍ତି ଯଦି ଆପଣାର ଶାନ୍ତିଲାଭ ପାଇଁ ଇଚ୍ଛା କରନ୍ତି ତାହାହେଲେ ସେହି ନାଦକୁହିଁ ଧ୍ୟାନ କରିବେ । ଶବ୍ଦବ୍ରହ୍ମ ଏବଂ ପରବ୍ରହ୍ମ ଦୁଇଟି ମନନର ଯୋଗ୍ୟ; ଶବ୍ଦବ୍ରହ୍ମରେ ନିପୁଣ ହେଲେ ପରବ୍ରହ୍ମ ଉତ୍ତମ ଭାବରେ ପ୍ରାପ୍ତ ହୁଅନ୍ତି । ଶବ୍ଦବ୍ରହ୍ମର ଗୌଣ ଅର୍ଥବେଦ, ମୁଖ୍ୟ ଅର୍ଥ ଓଙ୍କାର ; ନାଦ ଏଠାରେ ମୁଖ୍ୟ ଅର୍ଥାତ୍ ଗ୍ରାହ୍ୟ—କାରଣ କେବଳ ବେଦରେ ନୈପୁଣ୍ୟ ଲାଭ କଲେହିଁ ପରବ୍ରହ୍ମ ମିଳେ ନାହିଁ ।

ଯୋଗକୁଣ୍ଡଳୀ-ଶ୍ରୁତିରେ କଥିତ ହୋଇଅଛି—

ଭ୍ରୂବୋଧ୍ୟଂ ତୁ ସଂଭିଦ୍ୟ ଯାତି ଶୀତାଂଶୁମଣ୍ଡଳମ୍ ।
ଅନାହତାଖ୍ୟଂ ଯଚ୍ଚକ୍ରଂ ଦଳୈଃ ଷୋଡ଼ଶଭିର୍ଯୁତମ୍ ॥ ୬୯

ଭ୍ରୂଦ୍ୱୟର ମଧ୍ୟସ୍ଥଳ ଭେଦ କରି ଚନ୍ଦ୍ରମଣ୍ଡଳରେ ଷୋଡ଼ଶ-ଦଳଯୁକ୍ତ ଅନାହତ ନାମକ ଯେଉଁ ଚକ୍ର ସେଠାକୁ ଗମନ କରେ ।

ଶିଷ୍ୟ—ଅନାହତ ଚକ୍ର ହୃଦୟରେ ତ ?

ଗୁରୁ—ଭ୍ରୂମଧ୍ୟରେ ଓ ହୃଦୟରେ ଅନାହତ ଚକ୍ର ଅଛି ?

ତଦେବ ହୃଦୟଂ ନାମ ସର୍ବଶାସ୍ତ୍ରାଦିସମ୍ମତମ୍ ।
ଅନ୍ୟଥା ହୃଦି କଞ୍ଜାସ୍ତି ପ୍ରୋକ୍ତଂ ଯତ୍ ସ୍ଥୂଳବୁଦ୍ଧିଭିଃ ॥

ଯୋଗସ୍ୱରୋଦୟ

ଏହାହିଁ ଅର୍ଥାତ୍ ଆଜ୍ଞାପଦ୍ମହିଁ ସକଳଶାସ୍ତ୍ରସମ୍ମତ ହୃଦୟ, ସ୍ଥୂଳବୁଦ୍ଧି ବ୍ୟକ୍ତିଗଣହିଁ ଅନ୍ୟ ସ୍ଥଳକୁ (ବକ୍ଷସ୍ଥଳକୁ) ହୃଦୟ ବୋଲି କହିଥାନ୍ତି । ଆଚ୍ଛା, ଆହୁରି ଶୁଣ ।

ପରାସ୍ୟାମଙ୍କୁରୀଭୂୟ ପଶ୍ୟନ୍ତ୍ୟାଂ ଦ୍ୱିଦଳୀକୃତା । ୧୮
ମଧ୍ୟମାୟାଂ ମୁକୁଳିତା ବୈଖର୍ଯ୍ୟାଂ ବିକସୀକୃତା ।
ପୂର୍ବଂ ଯଥୋଦିତା ଯା ବାଗ୍ ବିଲୋମେନାସ୍ତଗା ଭବେତ୍ ॥ ୧୯
ଅସ୍ୟା ବାଚଃ ପରୋ ଦେବଃ କୂଟସ୍ଥୋ ବାକ୍ ପ୍ରବୋଧକଃ ।
ସୋଽହମସ୍ମୀତି ନିଶ୍ଚିତ୍ୟ ଯଃ ସଦା ବର୍ତ୍ତତେ ପୁମାନ୍ ॥ ୨୦
ଶବ୍ଦୈରୁଚ୍ଚାବଚୈର୍ନୀଚୈର୍ଭାଷିତୋଽପି ନ ଲିପ୍ୟତେ ॥

ପରାରେ ଅଙ୍କୁର, ପଶ୍ୟନ୍ତୀରେ ଦ୍ୱିଦଳ, ମଧ୍ୟମାରେ ମୁକୁଳିତ ହୋଇ ବୈଖରୀରେ ବିକସିତା ହୁଏ । ଅନୁଲୋମକ୍ରମରେ ଉଚ୍ଚାରିତ ବାକ୍ୟସମୂହ ବିଲୋମରେ ପରା ବାକ୍‌ରେ ଲୀନ ହୋଇଯାଏ । ସେହି ବାକ୍ୟର ଅତୀତ, ବାକ୍ୟପ୍ରବୋଧକକାରୀ ଜ୍ୟୋତିର୍ମୟ କୂଟସ୍ଥ ପୁରୁଷ, ସେହି ମୁଁ — ଏହା ନିଶ୍ଚୟ କରି ଯେଉଁ ବ୍ୟକ୍ତି ଅବସ୍ଥିତ ହୁଅନ୍ତି, ନାନାବିଧ ଭଲମନ୍ଦ ନୀଚ ବାକ୍ୟସବୁ ଉଚ୍ଚାରଣ କଲେ ମଧ୍ୟ ସେ ଲିପ୍ତ ହୁଅନ୍ତି ନାହିଁ ।

ଶିଷ୍ୟ — ଫଳଶ୍ରୁତି କଣ ଏତିକି ମାତ୍ର ?

ଗୁରୁ—ଭଲମନ୍ଦ ବାକ୍ୟ ଉପଲକ୍ଷଣ—କୌଣସି କର୍ମରେ ହିଁ ଲିପ୍ତ ହୁଅନ୍ତି ନାହିଁ ।

ହତ୍ୱାପି ସ ଇମାନ୍ ଲୋକାନ୍ ନ ହନ୍ତି ନ ନିବଧ୍ୟତେ ॥

ବିରାଟହୋପନିଷଦରେ କଥିତ ହୋଇଅଛି । (୨ୟ ଅଧ୍ୟାୟ)

ଦୁର୍ଲଭୋ ବିଷୟତ୍ୟାଗୋ ଦୁର୍ଲଭଂ ତତ୍ତ୍ୱଦର୍ଶନମ୍ ।
ଦୁର୍ଲଭା ସହଜାବସ୍ଥା ସଦ୍‌ଗୁରୋଃ କରୁଣାଂ ବିନା । ୭୬

ସଦ୍‌ଗୁରୁଙ୍କର କରୁଣା ବ୍ୟତୀତ ବିଷୟତ୍ୟାଗ ଦୁର୍ଲଭ, ତତ୍ତ୍ୱ-ଦର୍ଶନ ଦୁଷ୍ପ୍ରାପ୍ୟ, ସହଜ ଅବସ୍ଥା ଦୁର୍ଲଭ ।

ଉତ୍ପନ୍ନଶକ୍ତିବୋଧସ୍ୟ ତ୍ୟକ୍ତନିଃଶେଷକର୍ମଣଃ ।
ଯୋଗିନଃ ସହଜାବସ୍ଥା ସ୍ୱୟମେବ ପ୍ରଜାୟତେ ॥ ୭୭

ଯାହାଙ୍କର କୁଣ୍ଡଳିନୀଶକ୍ତି ଜାଗରିତା ହୋଇଛନ୍ତି, ସମସ୍ତ କର୍ମତ୍ୟାଗୀ ସେହି ଯୋଗୀଙ୍କର ସହଜାବସ୍ଥା ଅର୍ଥାତ୍ ଜୀବନ୍ମୁକ୍ତି ସ୍ୱୟଂ ଆବିର୍ଭୂତ ହୁଏ ।

ଇନ୍ଦ୍ରିୟାଣାଂ ମନୋ ନାଥୋ ମନୋନାଥସ୍ତୁ ମାରୁତଃ ।
ମାରୁତସ୍ୟ ଲୟୋ ନାଥସ୍ତନ୍ନାଥଂ ଲୟମାଶ୍ରୟ ॥ ୮୦

ଇନ୍ଦ୍ରିୟଗଣଙ୍କର ନାଥ ହେଲି ମନ, ମନର ନାଥ ବାୟୁ, ବାୟୁର ନାଥ ଲୟ, ସେହି ଲୟକୁ ଆଶ୍ରୟ କର ।

ସର୍ବଚିନ୍ତାଂ ପରିତ୍ୟଜ୍ୟ ସାବଧାନେନ ଚେତସା ।
ନାଦ ଏବାନୁସନ୍ଧେୟୋ ଯୋଗସାମ୍ରାଜ୍ୟମିଚ୍ଛତା ॥ ୮୩
(୨ୟ ଅଃ) ହଠଯୋଗପ୍ରଦୀପିକା

ଯୋଗରୂପକ ସାମ୍ରାଜ୍ୟ—ସର୍ବପ୍ରଧାନ ରାଜ୍ୟ—ଲଭିଇଚ୍ଛୁ ଯୋଗୀ ସମସ୍ତ ଚିନ୍ତା ତ୍ୟାଗ କରି ସାବଧାନ ଚିତ୍ତରେ ନାଦହିଁ ଅନୁସନ୍ଧାନ କରିବେ ।

ପିଣ୍ଡମଧ୍ୟଂ ତୁ ଯତ୍ ସ୍ଥାନଂ ନାଭିଚକ୍ରଂ ତଦୁଚ୍ୟତେ
ନାଦାଧାର ସମାଖ୍ୟାତା ଜ୍ୱଳନ୍ତୀ ନାଦରୂପିଣୀ ॥ ୨୯ ,,
(୫ମ ଅଃ)

ପିଣ୍ଡ ଅର୍ଥାତ୍ ଦେହ ମଧ୍ୟରେ ଯେଉଁ ସ୍ଥାନ—ତାହାକୁ ନାଭିଚକ୍ର କୁହାଯାଏ, ତାହା ନାଦାଧାର ବୋଲି କଥିତ ହୁଏ, ନାଦରୂପିଣୀ ଜାଜ୍ଜ୍ୱଲ୍ୟମାନା ।

ତୈଳଧାରାମିବାଚ୍ଛିନ୍ନଂ ଦୀର୍ଘଘଣ୍ଟାନିନାଦବତ୍ ॥ ୭୯
ଅବାଚ୍ୟଂ ପ୍ରଣବସ୍ୟାଗ୍ରଂ ଯସ୍ତଂ ବେଦ ସ ବେଦବିତ୍ ॥

ଶିଷ୍ୟ—ଏହି ମନ୍ତ୍ରଟି ବହ୍ଵୃଚ ଶ୍ରୁତି କହୁଛନ୍ତି ।

ଗୁରୁ—ସୌଭାଗ୍ୟଲକ୍ଷ୍ମୀ ଶ୍ରୁତିରେ ଅଛି—

ଶ୍ରବଣମୁଖନୟନନାସାନିରୋଧନେ ନୈବ କର୍ତ୍ତବ୍ୟମ୍ ।
ଶୁଦ୍ଧସୁଷୁମ୍ନାସରଣୌ ସ୍ଫୁଟମମଳଂ ଶ୍ରୂୟତେ ନାଦଃ ॥ ୪
ବିଚିତ୍ରଘୋଷସଂଯୁକ୍ତାନାହତେ ଶ୍ରୂୟତେ ଧ୍ୱନିଃ ।
ଦିବ୍ୟଦେହଶ୍ଚ ତେଜସ୍ୱୀ ଦିବ୍ୟଗନ୍ଧୋଽପ୍ୟରୋଗବାନ୍ ॥ ୫
ସମ୍ପୂର୍ଣ୍ଣହୃଦୟଃ ଶୂନ୍ୟେ ତ୍ୱାରମ୍ଭେ ଯୋଗବାନ୍ ଭବେତ୍ ।
ଦ୍ୱିତୀୟାଂ ବିଘଟୀକୃତ୍ୟ ବାୟୁର୍ଭବତି ମଧ୍ୟଗଃ ॥ ୬
ଦୃଢ଼ାସନୋ ଭବେଦ୍‌ଯୋଗୀ ପଦ୍ମାଦ୍ୟାସନସଂସ୍ଥିତଃ ।
ବିଷ୍ଣୁଗ୍ରନ୍ଥେସ୍ତତୋ ଭେଦାତ୍ ପରମାନନ୍ଦସମ୍ଭବଃ ॥ ୭
ଅତିଶୂନ୍ୟେ ବିମର୍ଦ୍ଦଶ୍ଚ ଭେରୀଶବ୍ଦସ୍ତତୋ ଭବେତ୍ ।
ତୃତୀୟାଂ ଯତ୍ନତୋ ଭିତ୍ତ୍ୱା ନିନାଦୋ ମର୍ଦ୍ଦଳଧ୍ୱନିଃ ॥ ୮

ମହାଶୂନ୍ୟଂ ତତୋ ଯାତି ସର୍ବସିଦ୍ଧିସମାଶ୍ରୟମ୍ ।
ଚିତ୍ତାନନ୍ଦଂ ତତୋ ଭିତ୍ତ୍ୱା ସର୍ବପୀଠଗତୋଽନିଳଃ ॥ ୯
ନିଷ୍ପତ୍ତୌ ବୈଷ୍ଣବଃ ଶବ୍ଦଃ କ୍ୱଣତୀତି କ୍ୱଣୋ ଭବେତ୍ ।
ଏକୀଭୂତଂ ତଦା ଚିତ୍ତଂ ସନକାଦିମୁନୀଡ଼ିତମ୍ ॥ ୧୦
ଅନ୍ତେଽନନ୍ତଂ ସମାରୋପ୍ୟ ଖଣ୍ଡେଽଖଣ୍ଡଂ ସମର୍ପୟନ୍ ।
ଭୂମାନଂ ପ୍ରକୃତିଂ ଧ୍ୟାତ୍ୱା କୃତକୃତ୍ୟୋଽମୃତୋ ଭବେତ୍ । ୧୧

ଶ୍ରବଣଦ୍ୱୟ, ମୁଖ, ଚକ୍ଷୁର୍ଦ୍ୱୟ ଏବଂ ନାସିକାଛିଦ୍ରଦ୍ୱୟ— ଦୁଇ ହସ୍ତର ବୃଦ୍ଧାଙ୍ଗୁଳି ଦ୍ୱାରା କର୍ଣ୍ଣ, ତର୍ଜନୀଦ୍ୱୟ ଦ୍ୱାରା ଚକ୍ଷୁଯୁଗଳ ଅନାମିକାଦ୍ୱୟ ଦ୍ୱାରା ନାସାପୁଟଦ୍ୱୟ ଏବଂ କନିଷ୍ଠା ଦୁଇଟି ଦ୍ୱାରା ମୁଖ ଆଚ୍ଛାଦନ କରି ନାଦ ଶ୍ରବଣ କର୍ତ୍ତବ୍ୟ—ଏହାର ନାମ ପରାଙ୍ମୁଖୀ ମୁଦ୍ରା । ପ୍ରାଣାୟାମ ଦ୍ୱାରା ମଳରହିତା ସୁଷୁମ୍ନାମାର୍ଗରେ ପ୍ରତ୍ୟେକ ବ୍ୟକ୍ତି ଅମଳ ସ୍ପଷ୍ଟ ନାଦ ଶ୍ରୁତିଗୋଚର ହୁଏ ।

ନାନାବିଧ ଶବ୍ଦଯୁକ୍ତ ଅନାହତଚକ୍ରରେ ନାଦ ଶୁଣାଯାଏ । ଶୂନ୍ୟରେ ଅର୍ଥାତ୍ ହୃଦୟ ଆକାଶରେ ନାଦ ଆରମ୍ଭ ହେଲେ

ଯୋଗୀ ବାୟୁ ଦ୍ୱାରା ସମ୍ୟକ୍ ପୂର୍ଣ୍ଣ ରୂପଲାବଣ୍ୟ ଓ ବଳସମ୍ପନ୍ନ ଦେହଧାରୀ, ପ୍ରତାପବାନ୍ ଅଲୌକିକ ଗନ୍ଧଯୁକ୍ତ ଓ ରୋଗରହିତ ହୋଇଥାନ୍ତି ।

ଦ୍ୱିତୀୟ ଘଟାବସ୍ଥାରେ ପ୍ରାଣବାୟୁ ଆତ୍ମା ସହିତ ଅପାନ ନାଦ ଓ ବିନ୍ଦୁକୁ ଏକ କରି କଣ୍ଠ ସ୍ଥାନରେ ମଧ୍ୟଚକ୍ରଗତ ହୁଏ, ସେହି ଅବସ୍ଥାରେ ଯୋଗୀ ସ୍ଥିର ଆସନରେ—ପଦ୍ମାଦି ଆସନରେ—ସଂସ୍ଥିତ ହୋଇ ରହନ୍ତି । ବ୍ରହ୍ମଗ୍ରନ୍ଥି ଭେଦ ପରେ କଣ୍ଠରେ ଥିବା ବିଷ୍ଣୁଗ୍ରନ୍ଥି ଭେଦ ହେଲେ ପରମାନନ୍ଦ ବ୍ରହ୍ମାନନ୍ଦ ସମ୍ଭବ ସୂଚକ କଣ୍ଠାବକାଶରେ ବିମର୍ଦ୍ଦ "ମର୍ଡ୍ଡମର୍ଡ୍ଡ" ଭେରୀ (ଦୁମ୍ ଦୁମ୍) ଭ୍ରମ୍ ଶବ୍ଦ ପରି ନାଦ ସେତେବେଳକୁ ହୁଏ ।

ତୃତୀୟ ଘଟାବସ୍ଥାରେ ଭେଦ କରି ମାଦଳ ପରି ନାଦ ଶ୍ରୁତିଗୋଚର ହୁଏ, ସେତେବେଳେ ଅଣିମାଦି ସମସ୍ତ ସିଦ୍ଧିର ସ୍ଥାନ ମହାଶୂନ୍ୟକୁ ପ୍ରାଣବାୟୁ ଗମନ କରେ । ଅନନ୍ତର ଚିତ୍ତାନନ୍ଦ ଭେଦ କରି ଆଜ୍ଞାଚକ୍ରରେ ରୁଦ୍ରଗ୍ରନ୍ଥି—ଈଶ୍ୱରଙ୍କର ପୀଠ—ତାହା ପ୍ରାଣବାୟୁ ପ୍ରାପ୍ତ ହୋଇଥାଏ ।

ନିଷ୍ପତ୍ତି ଅବସ୍ଥାରେ ଅର୍ଥାତ୍ ପ୍ରାଣ ବ୍ରହ୍ମରନ୍ଧ୍ରକୁ ଗମନ କଲେ ବେଣୁ ଶବ୍ଦ ବୀଣା ଧ୍ୱନି ପରି ନାଦ ଶ୍ରୁତିଗୋଚର ହୋଇଥାଏ, ସେତେବେଳେ ସନକାଦି ମୁନିଗଣ ସ୍ତୁତ ପରମାତ୍ମାଙ୍କଠାରେ ଚିତ୍ତ ଏକୀଭୂତ ହୋଇଯାଏ ।

ଅନ୍ତେ ଜୀବାତ୍ମାରେ ଅନନ୍ତ ପରମାତ୍ମା ସମ୍ୟକ୍ ଆରୋପଣ କରି ଖଣ୍ଡରେ ଅଖଣ୍ଡ ସମର୍ପଣ କରି ଭୂମା ପ୍ରକୃତିକୁ ଧ୍ୟାନପୂର୍ବକ ଯୋଗୀ କୃତକୃତ୍ୟ ଓ ଅମୃତ ହୋଇଥାନ୍ତି—ଏହା ହଠଯୋଗ-ପ୍ରଦୀପିକାରେ ବିସ୍ତୃତ ଭାବରେ ଉଲ୍ଲିଖିତ ହୋଇଅଛି ।

ନାଦର ଗୃରୋଟି ଅବସ୍ଥା—ଆରମ୍ଭ ଅବସ୍ଥା, ଘଟାବସ୍ଥା, ପରିଚୟ ଅବସ୍ଥା ଏବଂ ନିଷ୍ପତ୍ତି ଅବସ୍ଥା । ଆରମ୍ଭ ଅବସ୍ଥା ସିଦ୍ଧ ହେଲେ ବ୍ରହ୍ମଗ୍ରନ୍ଥି ଭେଦ କରି ଭ୍ରୂମଧ୍ୟାକାଶକୁ ଗମନ ହୁଏ, ତାହା ମହାକାଶ—ସେଥିରେ ସ୍ଥିତିଲାଭ ହୋଇ ସାରିଲେ ଅଣିମାଦି ସିଦ୍ଧିଲାଭ ହୋଇଥାଏ । ନିଷ୍ପତ୍ତି ଅବସ୍ଥାରେ ପ୍ରାଣ ସହସ୍ରାରକୁ ଗମନ କରେ ।

ଶିଷ୍ୟ—ଏଥିପାଇଁ ଯୋଗୀକୁ କପରି ପ୍ରଯତ୍ନ କରିବାକୁ ହୁଏ ?

ଗୁରୁ—ସର୍ବସଙ୍ଗ ତ୍ୟାଗ ପୂର୍ବକ ଅଳ୍ପାହାରନିରତ ହୋଇ ନିର୍ଜ୍ଜନରେ ଅବସ୍ଥାନ କରି ନାଦାନୁସନ୍ଧାନ କଲେ ପର୍ଯ୍ୟାୟକ୍ରମେ ଗୃରୋଟି ଅବସ୍ଥା ସ୍ୱତଃ ଉପସ୍ଥିତ ହୁଏ । ଅଧିକ କଣ କହିବି—ଶ୍ରୁତି କହନ୍ତି:—

ମନୋଽନ୍ୟତ୍ର ବିନିକ୍ଷିପ୍ତଂ ଚକ୍ଷୁରନ୍ୟତ୍ର ପାତିତଂ ।
ତଥାପି ଯୋଗିନାଂ ଯୋଗୋ ହ୍ୟବିଚ୍ଛିନ୍ନଃ ପ୍ରଜାୟତେ ॥

କୁଣ୍ଡଳିନୀ ଜାଗରିତା ହେଲେ ମନ ଭିନ୍ନ ବିଷୟରେ ନିକ୍ଷିପ୍ତ ହୁଏ, ଚକ୍ଷୁ ଭିନ୍ନ ସ୍ଥାନରେ ନ୍ୟସ୍ତ ହୁଏ, ତଥାପି ଯୋଗିଗଣଙ୍କର ଯୋଗ ଅବିଚ୍ଛିନ୍ନ ଭାବରେ ଉତ୍ତମ ରୂପେ ଚାଲିଥାଏ । ତୁମକୁ ଶ୍ରୀ ଜାବାଲଦର୍ଶନ ଉପନିଷଦୁକ୍ତ ନାଦର ବିବରଣ କହୁନାହିଁ ।

ଶୁଣ:—

ବ୍ରହ୍ମରନ୍ଧ୍ରେ ଗତେ ବାୟୌ ନାଦଶ୍ଚୋତପଦ୍ୟତେଽନଘ ।
ଶଙ୍ଖଧ୍ୱନିନିଭଶ୍ଚାଦୌ ମଧ୍ୟେ ମେଘଧ୍ୱନିର୍ଯଥା ॥ ୩୭
ଶିରୋମଧ୍ୟଗତେ ବାୟୌ ଗିରିପ୍ରସ୍ରବଣଂ ଯଥା ।
ପଶ୍ଚାତ୍ ପ୍ରୀତୋ ମହାପ୍ରାଜ୍ଞଃ ସାକ୍ଷାଦାତ୍ମୋନ୍ମୁଖୋ ଭବେତ୍ ॥ ୬୭

ଷଷ୍ଠ ଖଣ୍ଡଃ

ଷଣ୍ମୁଖୀ ମୁଦ୍ରା ଦ୍ୱାରା ବାୟୁ ରୋଧ କଲେ—ବାୟୁ ବ୍ରହ୍ମଗତ ହେଲେ—ପ୍ରଥମେ ଶଂଖଧ୍ୱନି, ମଧ୍ୟରେ ମେଘଧ୍ୱନି ପରି ନାଦ ଉତ୍ପତ୍ତି

ହୁଏ ଏବଂ ବାୟୁ ଶିରୋମଧ୍ୟଗତ ହେଲେ ପ୍ରସ୍ରବଣ ଅର୍ଥାତ୍ ଝରଣାର ଶବ୍ଦପରି ନାଦ ଶ୍ରବଣ ଗୋଚର ହୁଏ । ଅନନ୍ତର ପରମ ଆନନ୍ଦିତ ମହାପ୍ରାଜ୍ଞ ଯୋଗୀ ସାକ୍ଷାତ୍ ଆତ୍ମୋନ୍ମୁଖ ହୋଇଥାନ୍ତି ।

ଶିଷ୍ୟ—ଏହା ତ ଅତି ସହଜ ଉପାୟ, ସମସ୍ତେ ତ କରିପାରିବେ । ଲୟଯୋଗରେ ଗୁରୁଙ୍କର କିଛି ପ୍ରୟୋଜନ ନାହିଁ ଦେଖୁଛି ।

ଗୁରୁ—ନା ବତ୍ସ, ସବୁପ୍ରକାର ଯୋଗରେ ହିଁ ଗୁରୁଙ୍କର ପ୍ରୟୋଜନ ଅଛି । ଗୁରୁଙ୍କର ନିର୍ଦ୍ଦେଶକ୍ରମେ ନାଦାନୁସନ୍ଧାନ ନ କଲେ ମସ୍ତିଷ୍କ ବିକୃତ ହୋଇ ଯାଇପାରେ । ଯେତେବେଳେ ମହାଭେରୀ ପ୍ରଭୃତିର ନାଦ ଉତ୍ଥିତ ହୁଏ, ସେତେବେଳେ ନିଜକୁ ସ୍ଥିର ରଖିବା ଅତି କଷ୍ଟକର ହୋଇପଡ଼େ । ଯେତେବେଳେ ଦ୍ୱାବାଗ୍ନି ନାଦ ଉତ୍ଥିତ ହେବାରେ ଲାଗେ, ସେତେବେଳେ ଯୋଗୀର କେବେ କେବେ "ମୋର ମୁଣ୍ଡ ଖରାପ ହୋଇଗଲାଣି" ବୋଲି ସନ୍ଦେହ ହୁଏ, ଅନେକ ସ୍ଥଳରେ ସାଧକ ଗୁରୁଙ୍କଠାରୁ ନାଦ ଲାଭ କରି ମଧ୍ୟ ତାହା ବ୍ୟାଧି ବୋଲି ମନେ କରି ଚିକିତ୍ସା କରାଇଥାଆନ୍ତି । ଗୁରୁ ଉପଦେଶ ନ ନେଇ ପୁସ୍ତକ ପଢ଼ି କୌଣସି ସାଧନା ପଥ ଅବଲମ୍ବନ କରିବା, ଆଉ ନାନାବିଧ ଜଟିଳ ରୋଗ ଓ ମୃତ୍ୟୁକୁ ବରଣ କରିବା ଏକା କଥା ।

କେଉଁ ଆସନରେ ଉପବେଶନ କରି କେଉଁ ସମୟରେ ଏବଂ କେତେବେଳ ପର୍ଯ୍ୟନ୍ତ କି ଭାବରେ ବାୟୁ ଧାରଣ କରିବାକୁ ହେବ ତାହା ଗୁରୁଙ୍କ ମୁଖରୁ ଜାଣିବା ଆବଶ୍ୟକ । ବ୍ରହ୍ମଚର୍ଯ୍ୟ, ଅଳ୍ପାହାର, ଲୋକସଙ୍ଗ ବର୍ଜନ ନ କରି କେବଳ ମାତ୍ର ପରାଙ୍ମୁଖୀ ମୁଦ୍ରାର ଅନୁଷ୍ଠାନ ବା କର୍ଣ୍ଣରନ୍ଧ୍ର ରୁଦ୍ଧ କରି ନାଦାନୁସନ୍ଧାନ—ଏହା ଦୁର୍ବୁଦ୍ଧି ବିଶେଷ ।

ଶିଷ୍ୟ—ସତ କଥା । ଯେଉଁଠବେଳେ ବର୍ଣ୍ଣଶିକ୍ଷାଠାରୁ ଆରମ୍ଭ କରି ବେଦବେଦାନ୍ତ ପାଠ ଓ ଲୌକିକ ସମସ୍ତ କାର୍ଯ୍ୟରେ ଗୁରୁଙ୍କର ପ୍ରୟୋଜନ, ସେତେବେଳେ ଯୋଗାଦି ସାଧନା ଯେ ଗୁରୁଙ୍କ ଭିନ୍ନ ହୋଇପାରିବ ନାହିଁ—ଏହା ଅତି ନିଶ୍ଚୟ ।

ଗୁରୁ—ଶ୍ରୁତିସମୂହ ନାଦ କଥା ଯାହା କହିଛନ୍ତି ତୁମକୁ ତାହା ଏକପ୍ରକାର କହିଲି । ମୁଁ ଯେ ଏହାଙ୍କୁ ସବୁ ବୁଝିଛି ଏକଥା କହି ପାରୁନାହିଁ—କାରଣ ଶ୍ରୁତିଗୁଡ଼ିକର ଅର୍ଥ ଦୁରବଗାହ ।

ଶିଷ୍ୟ—ଉପନିଷଦ୍ ସମୂହରୁ ନାଦବ୍ରହ୍ମର ଅପୂର୍ବ ଲୀଳା କଥା ଶୁଣି ମୁଁ କୃତାର୍ଥ ହେଲି ।

---

୯୭ ଶ୍ରୀଶ୍ରୀଗୁରବେ ନମଃ

ଶ୍ରୀମତେ ରାମାନୁଜାୟ ନମଃ ଶ୍ରୀମତେ ରାମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ ।

# ଶ୍ରୀଶ୍ରୀନାଦଲୀଳାମୃତ

## ସପ୍ତମ ହିଲ୍ଲୋଳ

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ
ବସୁନ୍ଧରା-ବାରି-ବିମାନ-ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମଭୈବ ସଦୋଦିତାୟ
ପୂର୍ଣ୍ଣାୟ ଚିଦ୍‌ବିଳାସ ବିଳାସାୟ ଓଁକାରାୟ ନମଃ ।
ପ୍ରଣବଃ ପରମଂ ବ୍ରହ୍ମ ପ୍ରଣବଃ ପରମଃ ଶିବଃ ।
ପ୍ରଣବଃ ପରମୋ ବିଷ୍ଣୁଃ ପ୍ରଣବଃ ସର୍ବଦେବତାଃ ॥
ବିଶ୍ୱଂ ଚରାଚରଂ ସୃଷ୍ଟ୍ୱା ତଦନ୍ତଃ ପ୍ରବିବେଶ ଯଃ ।
ତିଳେଷୁ ତୈଳବତ୍ ସୂକ୍ଷ୍ମଃ ପ୍ରଣବଂ ତଂ ନମାମ୍ୟହମ୍ ।

ଗୁରୁ—ଶ୍ରୀମଦ୍ଭାଗବତରେ ନାଦ ସମ୍ବନ୍ଧରେ ଶ୍ରୀ ଶୁକଦେବ ଯାହା କହିଛନ୍ତି—ମୁଁ ପୂର୍ବରୁ ତାହା ତୁମକୁ କହିଛି, ବର୍ତ୍ତମାନ ଶିବ ପୁରାଣରେ ଭଗବାନ ଶଙ୍କର ନାଦବ୍ରହ୍ମ କଥା ଯାହା କହିଛନ୍ତି—ତାହା ଶୁଣ ।

ଶିଷ୍ୟ—ବ୍ରୁହନ୍ତୁ ଦେବ ।
ଗୁରୁ—ଦେବ୍ରୁ୍ୟବାଚ
କଥଂ ତ୍ୱ ଜ୍ଞାୟତେ କାଳୋ ଯୋଗିଭିର୍ମେ ବଦେଶ୍ୱର ।
ଧ୍ୟାନେନ ଜାପ୍ୟମାତ୍ରେଣ ତତ୍ ସର୍ବଂ କଥୟ ପ୍ରଭୋ ॥ ୧୯

## ଶଙ୍କର ଉବାଚ

ଶୃଣୁ ଦେବ ପ୍ରବକ୍ଷ୍ୟାମି ଯୋଗିନାଂ ହିତକାମ୍ୟୟା ।
ପରଂ ଜ୍ଞାନମକଥ୍ୟଞ୍ଚ ନ ଦେୟଂ ଯସ୍ୟ କସ୍ୟଚିତ୍ ॥ ୨୦
ଶ୍ରଦ୍ଧାଧାନାୟ ଦାତବ୍ୟଂ ଭକ୍ତିଯୁକ୍ତାୟ ଧୀମତେ ।
ଅନାସ୍ତିକାୟ ଶୁଦ୍ଧାୟ ଧର୍ମନିଷ୍ଠାୟ ଭମିନ ॥ ୨୧
ସୁଖାସନେଽଥ ଶଯ୍ୟାୟାଂ ଯୋଗଂ ଯୁଞ୍ଜୀତ ଯୋଗବିତ୍ ॥ ୨୨
ଘୋରଂ ବିନାନ୍ଧକାରେ ତୁ ପ୍ରଜାସୁପ୍ତେ ତୁ ଧାରୟେତ୍ ।
ତର୍ଜ୍ଜନ୍ୟା ପିଧିତୌ କର୍ଣ୍ଣୌ ପୀଡ଼ୟିତ୍ୱା ମୁହୂର୍ତ୍ତକମ୍ ॥ ୨୩
ତସ୍ମାତ୍ ସଶ୍ରୂୟତେ ଶବ୍ଦସ୍ତୁନ୍ଦବହ୍ନିସମୁଦ୍ଭବଃ ।
ସାଧ୍ବେ ତୋ ଭୁକ୍ତମେବନ୍ତୁ ପଚତ୍ୟନ୍ନଂ କ୍ଷଣାଦପି ।
ସର୍ବରୋଗଂ ବିନିହନ୍ତ୍ୟାଶୁ ଜ୍ୱରଦ୍ୟୁପଦ୍ରବାନ୍ ବହୂନ୍ ॥ ୨୪
ଯସ୍ତୋପଲକ୍ଷୟେନ୍ନିତ୍ୟମେକାନ୍ତେ ଘଟିକାଦ୍ୱୟମ୍ ।
ଜିତ୍ୱା ମୃତ୍ୟୁଂ ଯଥାକାମଂ ସ୍ୱେଚ୍ଛୟା ପର୍ଯ୍ୟଟେଦ୍ଦ୍ରହ ॥ ୨୫
ସର୍ବତଃ ସର୍ବଦର୍ଶୀ ଚ ସର୍ବସିଦ୍ଧିମବାପ୍ନୁୟାତ୍ ॥ ୨୬
ଯଥାଭ୍ରଂ ନଦତେ ନାଦଂ ପ୍ରାବୃଣ୍ ନଭସି ସଂସ୍ଥିତମ୍ ।
ତତ୍ ଶ୍ରୁତ୍ୱା ମୁଚ୍ୟତେ ଯୋଗୀ ସଦ୍ୟଃ ସଂସାରବନ୍ଧନାତ୍ ॥ ୨୭
ତତଃ ସ ଯୋଗିଭିର୍ନିତ୍ୟଂ ସୂକ୍ଷ୍ମଃ ସୂକ୍ଷ୍ମତରୋ ଭବେତ୍ ।
ଏତତ୍ତେ କଥିତଂ ଦେବ ଶବ୍ଦବ୍ରହ୍ମବିଧିଂ ମମ ॥ ୨୮
ପଲ୍ଲଳମିବ ଧାନ୍ୟାର୍ଥୀ ତ୍ୟଜେଦ୍ ବନ୍ଧମଶେଷତଃ ।

ଶବ୍ଦବ୍ରହ୍ମ ଇଦଂ ପ୍ରାପ୍ୟ ଯେ କେଚଦନ୍ୟକାଙ୍‌କ୍ଷିଣଃ ।
ଘ୍ନନ୍ତି ତେ ମୁଷ୍ଟିନାକାଶଂ କଣ୍ଡୂୟନ୍ତି କ୍ଷୁଧା ତୃଷାନ୍ ॥ ୨୯
ଜ୍ଞାତ୍ୱା ପରମିଦଂ ବ୍ରହ୍ମ ସୁଖଦଂ ମୁକ୍ତିକାରଣମ୍ ।
ଅବାଚ୍ୟମକ୍ଷରଂ ଚୈବ ସର୍ବୋପାଧିବିବର୍ଜ୍ଜିତମ୍ ॥ ୩୦
ମୋହାବୃତାଃ କାଳପାଶେନ ମୃତ୍ୟୁପାଶବଶଂ ଗତାଃ ।
ଶବ୍ଦବ୍ରହ୍ମ ନ ଜାନନ୍ତି ପାପିନସ୍ତେ କୁବୁଦ୍ଧୟଃ ॥ ୩୧
ତାବଦ୍ ଭ୍ରମନ୍ତି ସଂସାରେ ଯାବଦ୍ ବ୍ରହ୍ମ ନ ବିନ୍ଦତି ।
ବିଦିତେ ତୁ ପରେ ତତ୍ତ୍ୱେ ମୁଚ୍ୟତେ ଜନ୍ମବନ୍ଧନାତ୍ । ୩୨
ନିଦ୍ରାଳସ୍ୟଂ ମହାବିଘ୍ନଂ ଜିତ୍ୱା ଶତ୍ରୁଂ ପ୍ରୟତ୍ନତଃ ।
ସୁଖାସନେ ସ୍ଥିତୋ ନିତ୍ୟଂ ଶବ୍ଦବ୍ରହ୍ମାଭ୍ୟସେନ୍ନିଶି ॥ ୩୩
ଶତବୃଦ୍ଧଃ ପୁମାଁଲ୍ଲବ୍‌ଧ୍ୱା ଯାବଦାୟୁଷ୍ୟମଭ୍ୟସେତ୍ ॥ ୩୪
ମୃତ୍ୟୁଞ୍ଜୟବପୁସ୍ତୁଷ୍ଟ ଆରୋଗ୍ୟଞ୍ଚାୟୁର୍ବର୍ଦ୍ଧନମ୍ ।
ପ୍ରତ୍ୟୟୋ ଦୃଶ୍ୟତେ ବୃଦ୍ଧେ କିଂ ପୁନସ୍ତରୁଣେ ଜନେ ॥ ୩୫
ନ ରେଙ୍କାରୋ ନ ମନ୍ତ୍ରୋଽପି ନୈବ ବୀଜଂ ନ ଗୃଷରଂ ।
ଅନାହତମନୁଚ୍ଚାର୍ଯ୍ୟଂ ଶବ୍ଦବ୍ରହ୍ମ ପରଂ ଶିବମ୍ ॥ ୩୬
ତସ୍ମାଚ୍ଛବ୍ଦା ନବ ପ୍ରୋକ୍ତାଃ ପ୍ରାଣବଦ୍ଭିସ୍ତୁ ଲକ୍ଷିତାଃ ।
ତାନ୍ ପ୍ରବକ୍ଷ୍ୟାମି ଯତ୍ନେନ ନାଦସିଦ୍ଧିରନୁକ୍ରମାତ୍ ॥ ୩୭
ଘୋଷଂ କାଂସ୍ୟଂ ତଥା ଶୃଙ୍ଗଂ ଘଣ୍ଟାବୀଣାଦିବଂଶଜମ୍ ।
ଦୁନ୍ଦୁଭିଃ ଶଙ୍ଖଶବ୍ଦସ୍ତୁ ନବମଂ ମେଘଗର୍ଜ୍ଜିତମ୍ ॥ ୩୮
ନବଶବ୍ଦଂ ପରିତ୍ୟଜ୍ୟ ଓଙ୍କାରସ୍ତୁ ସମାଶ୍ରୟେତ୍ ।
ଧ୍ୟାୟନ୍ନେବ ସଦା ଯୋଗୀ ପୁଣ୍ୟପାପୈର୍ନ ଲିପ୍ୟତେ ॥ ୩୯
ନ ଶୃଣୋତି ଯଦା ଶୃଣ୍ୱନ୍ ଯତ୍ନାସେ ତୁ ତଦାମ୍ବିକେ ।
ମ୍ରିୟତେଽଭ୍ୟସ୍ୟମାନସ୍ତଂ ଯୋଗୀ ତିଷ୍ଠେଦ୍ ଦିବାନିଶମ୍ ॥ ୪୦
ତସ୍ମାଦୁତ୍ପଦ୍ୟତେ ଶବ୍ଦୋ ମୃତ୍ୟୁଜିତ୍ ସପ୍ତଭିର୍ଦିନୈଃ । ୪୧

ପ୍ରଥମଂ ନଦତେ ଘୋଷ ଆତ୍ମଶୁଦ୍ଧିକରଂ ପରମ୍ ।
ସର୍ବବ୍ୟାଧିହରଂ ନାଦଂ ବଶ୍ୟାକର୍ଷଣମୁତ୍ତମମ୍ ॥ ୪୨
ଦ୍ୱିତୀୟଂ ନଦତେ କାଂସ୍ୟଂ ସ୍ତମ୍ଭୟେତ୍ ପ୍ରାଣିନାଂ ଗତିମ୍ ।
ବିଷଂ ଭୂତଗ୍ରହାନ୍ ସର୍ବାନ୍ ବଧ୍ନୀୟାନ୍ନାତ୍ର ସଂଶୟଃ ॥ ୪୩
ତୃତୀୟଂ ନଦତେ ଶୃଙ୍ଗମଭିଚାରେ ନିୟୋଜୟେତ୍ ।
ବିଦ୍ୱେଷୋଚ୍ଚାଟନେ ଶତ୍ରୋର୍ମାରଣେ ଚ ପ୍ରଯୋଜୟେତ୍ ॥ ୪୪
ଘଣ୍ଟାନାଦଂ ଚତୁର୍ଥନ୍ତୁ ବଦତେ ପରମେଶ୍ୱରଃ ।
ଆକର୍ଷେ ସର୍ବଦେବାନାଂ କିଂ ପୁନର୍ମାନୁଷା ଭୁବି ॥ ୪୫
ଯକ୍ଷଗନ୍ଧର୍ବ କନ୍ୟାଶ୍ଚ ତସ୍ୟାକୃଷ୍ଟା ଦଦନ୍ତି ହି ।
ଯଥେପ୍‌ସିତାଂ ମହାସିଦ୍ଧିଂ ଯୋଗିନଃ କାମତୋଽପି ବା ॥ ୪୬
ବୀଣା ତୁ ପଞ୍ଚମୋ ନାଦଃ ଶ୍ରୂୟତେ ଯୋଗିଭିଃ ସଦା ।
ତସ୍ମାଦୁତ୍ପଦ୍ୟତେ ଦେବ ଦୂରଦର୍ଶନମେବହି ॥ ୪୭
ଧ୍ୟାୟତେ ବଂଶନାଦନ୍ତୁ ସର୍ବଜ୍ଞତ୍ୱଂ ପ୍ରଜାୟତେ ।
ଦୁନ୍ଦୁଭିଂ ଧ୍ୟାୟମାନସ୍ତୁ ଜରାମୃତ୍ୟୁବିବର୍ଜ୍ଜିତଃ ॥ ୪୮
ଶଙ୍ଖଶବ୍ଦେନ ଦେବେଶି କାମରୂପଂ ପ୍ରପଦ୍ୟତେ ।
ଯୋଗିନୋ ମେଘନାଦେନ ବପୁତ୍ସଙ୍ଗମତୋ ଭବେତ୍ ॥ ୪୯
ସର୍ବଜ୍ଞଃ ସର୍ବଦର୍ଶୀ ଚ କାମରୂପୀ ବ୍ରଜତ୍ୟସୌ ।
ଏତତ୍ତେ ସର୍ବମାଖ୍ୟାତଂ କିଂ ଭୂୟଃ ଶ୍ରୋତୁମିଚ୍ଛସି ॥ ୫୦
ଶିବପୁରାଣ, ଧର୍ମସଂହିତା । (୪୭ ଅଧ୍ୟାୟ)

ଦେବୀ କହିଲେ,—ହେ ପ୍ରଭୋ ! ହେ ଈଶ୍ୱର ! ଯୋଗିଗଣ କି ପ୍ରକାର ଧ୍ୟାନ ଅଥବା ମନ୍ତ୍ରଜପ ଦ୍ୱାରା କାଳକୁ ଜୟ କରିଥାନ୍ତି— ସେ ସବୁ ମତେ କୁହନ୍ତୁ । ଶଙ୍କର କହିଲେ,—ହେ ଦେବି, ଯୋଗିଗଣଙ୍କର ହିତକାମନା କରି ମୁଁ ତାହାସବୁ କହୁଛି, ଶୁଣ । ଏହି ପରମଜ୍ଞାନ ଅକଥ୍ୟ—ସମସ୍ତଙ୍କୁ ଦେୟ ନୁହେଁ । ହେ ଭାମିନି ! ଏହା

ଶ୍ରଦ୍ଧାନ୍ୱିତ ଭକ୍ତିଯୁକ୍ତ ବୁଦ୍ଧିମାନ୍ ଆସ୍ତିକ ଶୁଦ୍ଧ ଧର୍ମପରାୟଣମାନଙ୍କୁ ଦାନ କରିବା କର୍ତ୍ତବ୍ୟ ।

ଯୋଗବେତ୍ତା, ସମସ୍ତେ ନିଦ୍ରିତ ହେଲେ ଦୀପ ନିର୍ବାଣ ପୂର୍ବକ ଅନ୍ଧକାରରେ ସୁଖାସନରେ ଅଥବା ଶଯ୍ୟାରେ ଉପବିଷ୍ଟ ହୋଇ ଏହି ଯୋଗଯୁକ୍ତ ହେବେ । ତର୍ଜ୍ଜନୀଦ୍ୱୟ ଦ୍ୱାରା କର୍ଣ୍ଣରନ୍ଧ୍ରଯୁଗଳ ଏକ ମୁହୂର୍ତ୍ତକାଳ ରୁଦ୍ଧ କଲେ ସେଥିରୁ ଜାଠରାଗ୍ନି ସମ୍ଭୂତ ଶବ୍ଦ ଶ୍ରୁତି-ଗୋଚର ହୋଇଥାଏ । ସେହି ଶବ୍ଦ କ୍ଷଣକାଳ ମଧ୍ୟରେ ଭୁକ୍ତ ଅନ୍ନାଦି ପରିପାକ କରେ, ଶୀଘ୍ର ସମସ୍ତ ରୋଗ ଜ୍ୱର ପ୍ରଭୃତି ବହୁ ଉପଦ୍ରବ ନଷ୍ଟ କରିଥାଏ । ଯେଉଁ ଯୋଗୀ ନିର୍ଜ୍ଜନରେ ନିତ୍ୟ ଦୁଇ ଘଟିକା (ଦୁଇ ଦଣ୍ଡ) କାଳ ଏହି ଶବ୍ଦ ଶ୍ରବଣ କରନ୍ତି, ସେହି ଯୋଗୀ ମୃତ୍ୟୁକୁ ଜୟ କରି ଇଚ୍ଛା ଅନୁସାରେ ଏହି ଜଗତରେ ବିଚରଣ କରିଥାନ୍ତି ଏବଂ ସକଳ ବିଷୟରେ ସର୍ବଦର୍ଶୀ ଓ ସମସ୍ତ ସିଦ୍ଧି ପ୍ରାପ୍ତ ହୁଅନ୍ତି । ବର୍ଷାକାଳରେ ଗଗନସ୍ଥିତ ମେଘ ଯେପରି ଗର୍ଜ୍ଜନ କରେ ସେହି ଶବ୍ଦ ଶ୍ରବଣ କରି ଯୋଗୀ ସଂସାରବନ୍ଧନରୁ ସଦ୍ୟ ମୁକ୍ତ ହୋଇଥାଏ । ଅନବରତ ସେହି ନାଦ ଯୋଗିଗଣକର୍ତ୍ତୃକ ଚିନ୍ତିତ ହେଲେ ତାହା ସୂକ୍ଷ୍ମରୁ ସୂକ୍ଷ୍ମତର ହୁଏ । ହେ ଦେବି ! ଏହି ସବୁ ଶବ୍ଦବ୍ରହ୍ମର ବିଧାନ ବ୍ୟବହାର ତୁମ ନିକଟରେ କହିଲି । ଯେପରି ଧାନ୍ୟାର୍ଥୀ ବ୍ୟକ୍ତି ଧାନ୍ୟ ଗ୍ରହଣ କରିସାରି ପଲାଳ (କୁଟା) ସବୁ ତ୍ୟାଗ କରେ, ସେହିପରି ଏହି ନାଦତତ୍ତ୍ୱ ଅବଗତ ହୋଇ ବନ୍ଧନର କାରଣ ସମୂହ ଅଶେଷ ପ୍ରକାରେ ତ୍ୟାଗ କରିବ । ଏହି ଶବ୍ଦବ୍ରହ୍ମ ପ୍ରାପ୍ତ ହୋଇସାରି ଯେଉଁ ବ୍ୟକ୍ତିଗଣ ଅନ୍ୟ କିଛି ଆକାଙ୍କ୍ଷା କରନ୍ତି, ସେମାନେ ଆକାଶକୁ ମୁଷ୍ଟିପ୍ରହାର ଏବଂ କ୍ଷୁଧା ସମୟରେ ତଷ ଭକ୍ଷଣ କରିଥାନ୍ତି (ଅର୍ଥାତ୍ ନାଦାନୁସନ୍ଧାନ ତ୍ୟାଗ କଲେ କୌଣସି ମୋକ୍ଷର

ଉପାୟ କରିବା ଆକାଶକୁ ବାଧା ମାରିବା ବା ଭୋକବେଳେ ଚଷୁ ଖାଇବା ପରି ନିଷ୍ଫଳ) ।

ଏହି ଆନନ୍ଦପ୍ରଦ ମୁକ୍ତିର କାରଣ ସମସ୍ତ ଉପାଧିଶୂନ୍ୟ ଅକ୍ଷର ନାଦବ୍ରହ୍ମକୁ ଅବଗତ ହେଲେ ପ୍ରକାଶ କରିବ ନାହିଁ ।

ଯେଉଁ କୁବୁଦ୍ଧି ପାପିଗଣ କାଳପାଶରେ ମୋହିତ ହୋଇ ଶବ୍ଦବ୍ରହ୍ମକୁ ଜାଣନ୍ତି ନାହିଁ, ସେମାନେ ମୃତ୍ୟୁପାଶର ବଶବର୍ତ୍ତୀ ହୋଇଥାନ୍ତି ।

ଜୀବ ଯେତେଦିନ ପର୍ଯ୍ୟନ୍ତ ନାଦବ୍ରହ୍ମତତ୍ତ୍ୱ ନ ଜାଣିପାରେ, ସେତେଦିନ ପର୍ଯ୍ୟନ୍ତ ଏ ସଂସାରରେ ଭ୍ରମଣ କରେ; ପରମ ନାଦ-ବ୍ରହ୍ମତତ୍ତ୍ୱ ବିଦିତ ହେଲେ ଜନ୍ମବନ୍ଧନରୁ ମୁକ୍ତ ହୁଏ ।

ଯୋଗୀ ପ୍ରଯତ୍ନ ସହକାରେ ମହାବିଘ୍ନ ନିଦ୍ରା ଆଳସ୍ୟରୂପକ ଶତ୍ରୁ ଦୁଇଟିକୁ ଜୟ କରି, ନିତ୍ୟ ରାତ୍ରିକାଳରେ ସୁଖାସନରେ ଉପବେଶନ ପୂର୍ବକ ନାଦବ୍ରହ୍ମାନୁସନ୍ଧାନ କରିବ ।

ଶହେ ବର୍ଷର ବୃଦ୍ଧ ମୃତ୍ୟୁଜୟପ୍ରଦ, ଚିରସ୍ଥାୟୀ ଶରୀରପ୍ରଦାନ-କାରୀ, ଆରୋଗ୍ୟ ଏବଂ ଆୟୁବର୍ଦ୍ଧକ ଏହି ନାଦବ୍ରହ୍ମକୁ ଲାଭ କରି ଯେତେଦିନ ଜୀବିତ ରହିବେ—ଅଭ୍ୟାସ କରିବେ ; ଯେତେବେଳେ ବୃଦ୍ଧ ବ୍ୟକ୍ତିଠାରେ ମଧ୍ୟ ପ୍ରମାଣ ଦୃଷ୍ଟ ହେଉଛି ତେବେ ତରୁଣ ଲୋକର ସହଜରେ ହେବ, ଏଥିରେ ଆଉ ସନ୍ଦେହ କଣ ଅଛି ?

ଓଁକାର ନୁହେଁ, ମନ୍ତ୍ର ମଧ୍ୟ ନୁହେଁ ଏବଂ ବୀଜ ନୁହେଁ—କ୍ଷରଣ-ରହିତ ଅନୁଚ୍ଚାର୍ଯ୍ୟ ଅନାହତ ଶବ୍ଦବ୍ରହ୍ମ ପରମ ମଙ୍ଗଳପ୍ରଦ ; ଅର୍ଥାତ୍ ଉଚ୍ଚାର୍ଯ୍ୟମାନ ବୈଖରୀ ଓଁକାରାଦି, ପଶ୍ୟନ୍ତୀ-ଅବସ୍ଥାପନ୍ନ ସ୍ୱତଉତ୍‌ଥିତ ନାଦବ୍ରହ୍ମ ତୁଲ୍ୟ ନୁହେଁ ।

ସେଥିରୁ ନଅଟି ଶବ୍ଦ ପ୍ରାଣତତ୍ତ୍ୱଜ୍ଞ ଯୋଗୀଗଣ କର୍ତ୍ତୃକ ଲକ୍ଷିତ ଅର୍ଥାତ୍ ଜ୍ଞାତ ହୁଏ, ସେହି ନଅ ପ୍ରକାର ଶବ୍ଦ ଏବଂ ତାହାର ସିଦ୍ଧି

ଯଥାକ୍ରମେ କହୁଅଛୁ—ଯତ୍ନ ସହକାରେ ଶ୍ରବଣକର । ଘୋଷ ଜନକୋଳାହଳ, କାଂସ୍ୟ ଶବ୍ଦ, ଶିଙ୍ଘା ଶବ୍ଦ, ଘଣ୍ଟା, ବୀଣାଦିନାଦ, ବଂଶୀଧ୍ୱନି, ଦୁନ୍ଦୁଭି, ଶଙ୍ଖନାଦ ଓ ନବମ ମେଘଗର୍ଜନ—ଏହି ନଅଟି ଶବ୍ଦ ତ୍ୟାଗ କରି ଯୋଗୀ ଓଁକାର ନାଦକୁ ସମ୍ୟକ୍‌ରୂପେ ଆଶ୍ରୟ କରିବେ, ସର୍ବଦା ଏହିପରି ନାଦାନୁସନ୍ଧାନକାରୀ ଯୋଗୀ ପୁଣ୍ୟପାପ ଦ୍ୱାରା ଲିପ୍ତ ହୁଏ ନାହିଁ ।

ଶୁଣୁ ଶୁଣୁ ଯେତେବେଳେ ଆଉ ଏହି ଶବ୍ଦ ଶ୍ରୁତିଗୋଚର ହୁଏ ନାହିଁ, ତେବେ ଛଅମାସ ମଧ୍ୟରେ ଯୋଗୀ ମୃତ୍ୟୁମୁଖରେ ପଡ଼େ । ସେ ସମୟରେ ଯୋଗୀ ଦିବାରାତ୍ରି ନାଦାନୁସନ୍ଧାନ ଅଭ୍ୟାସ କରିବାରେ ଲାଗିବେ । ସେହି ଅଭ୍ୟାସଦ୍ୱାରା ସାତଦିନ ମଧ୍ୟରେ ମୃତ୍ୟୁଜୟୀ ଶବ୍ଦ ଉତ୍ପନ୍ନ ହେବ । ପ୍ରଥମ ଘୋଷନାଦ ଆତ୍ମଶୁଦ୍ଧିକର ଅର୍ଥାତ୍ ଦେହମନର ପରମ ଶୁଦ୍ଧିଜନକ, ସର୍ବରୋଗ ନାଶକ, ଉତ୍ତମ ବଶୀକରଣ ଓ ଆକର୍ଷଣକାରକ । ଦ୍ୱିତୀୟ କାଂସ୍ୟନାଦ ପ୍ରାଣୀଗଣଙ୍କର ଗତି ସ୍ତମ୍ଭନ କରେ, ବିଷ ଓ ସମସ୍ତ ଭୂତ ଓ ଗ୍ରହ-ଗଣଙ୍କୁ ସଂଯମନ କରେ—ଏଥିରେ ସଂଶୟ ନାହିଁ । ତୃତୀୟ ଶୃଙ୍ଗନାଦ ଶତ୍ରୁର ବିଦ୍ୱେଷ ଉଚ୍ଚାଟନ ମାରଣାଦି ଅଭିଚାରରେ ପ୍ରଯୋଜ୍ୟ । ପରମେଶ୍ୱର କହୁଛନ୍ତି—ଚତୁର୍ଥ ଘଣ୍ଟାନାଦ ସମସ୍ତ ଦେବଗଣଙ୍କର ଆକର୍ଷଣ ପାଇଁ ପ୍ରଯୋକ୍ତବ୍ୟ—ମନୁଷ୍ୟ ସମ୍ବନ୍ଧରେ ଆଉ କଣ କୁହାଯିବ ? ଯକ୍ଷ ଓ ଗନ୍ଧର୍ବ କନ୍ୟାଗଣ ତାହାଦ୍ୱାରା ଆକୃଷ୍ଟ ହୋଇ ସେମାନଙ୍କ ଇଚ୍ଛାନୁସାରେ ମହାସିଦ୍ଧି ଅଥବା ଯୋଗୀଙ୍କର ବାଞ୍ଛିତ ବସ୍ତୁ ଦାନ କରନ୍ତି । ଯେତେବେଳେ ପଞ୍ଚମ ନାଦ ବୀଣାଧ୍ୱନି ଯୋଗି-ଙ୍କଦ୍ୱାରା ସର୍ବଦା ଶ୍ରୁତ ହୁଏ, ସେଥିରୁ ଦୂରଦର୍ଶନଶକ୍ତି ଉତ୍ପନ୍ନ ହୋଇଥାଏ ।

ବେଣୁନାଦ ଧ୍ୟାନ କଲେ ସର୍ବଜ୍ଞତ୍ୱ ଲାଭ ହୁଏ । ଦୁନ୍ଦୁଭିନାଦ ଚିନ୍ତ୍ୟମାନ ହେଲେ ଜରା ମୃତ୍ୟୁବିବର୍ଜିତ ହୁଏ (ବୃହତ୍ ଢୋଲ ବା ନାଗରାକୁ ଦୁନ୍ଦୁଭି କୁହାଯାଏ) । ଶଙ୍ଖନାଦ ଶ୍ରବଣ ଗୋଚର ହେଲେ ସୁନ୍ଦର ଅଥବା ସ୍ୱେଚ୍ଛାନୁକ୍ରମେ ରୂପ ଧାରଣ କରି ହୁଏ । ମେଘନାଦ-ଦ୍ୱାରା ଯୋଗିଗଣଙ୍କର ଆକାଶରେ ମିଳନ ଅର୍ଥାତ୍ ମନୋଲୟ ହୋଇଥାଏ—ଏହିପରି ଯୋଗୀ ସର୍ବଜ୍ଞ, ସର୍ବଦର୍ଶୀ ଏବଂ ଇଚ୍ଛାନୁସାରେ ରୂପଧାରଣ କରିବାକୁ ସମର୍ଥ ହୁଅନ୍ତି । ତୁମକୁ ସବୁ କହିଲି, ଆଉ କଣ ଶୁଣିବାକୁ ଇଚ୍ଛା ହେଉଛି ତାହା କୁହ ।

ଶିଷ୍ୟ—ଭଗବାନ୍ ଶଙ୍କର କଣ୍ଠରୁଦ୍ଧ କରି ନାଦଶ୍ରବଣରେ ଅପୂର୍ବ ଫଳ ହୁଏ ବୋଲି କହିଲେ । ଏ ସବୁ ସିଦ୍ଧି କଣ ନାଦଯୋଗୀ ମାନେହିଁ ଲାଭ କରି ପାରନ୍ତି ?

ଗୁରୁ—ନିଶ୍ଚୟ, ତେବେ ଯେଉଁମାନେ ପ୍ରକୃତ ମୁମୁକ୍ଷୁ ସେମାନେ ସିଦ୍ଧି କାମନା କରନ୍ତି ନାହିଁ, ସେମାନଙ୍କର କାମନାର ଧନ ଏକମାତ୍ର ପରମାନନ୍ଦମୟ ପରମାତ୍ମା ପରପ୍ରଣବ, ସିଦ୍ଧିଗୁଡ଼ିକ ସମାଧିଲାଭରେ ବିଘ୍ନସ୍ୱରୂପ । ପାତଞ୍ଜଳରେ କଥିତ ହୋଇଅଛି:—

"ତେ ସମାଧାବୁପସର୍ଗାବ୍ୟୁତ୍‌ଥାନେ ସିଦ୍ଧୟଃ ।"

ଶିଷ୍ୟ—ଯେଉଁମାନେ ସିଦ୍ଧିକାମୀ ସେମାନେ କପରି ଭାବରେ ବିଭୂତିସମୂହ ଲାଭ କରିପାରିବେ ?

ଗୁରୁ—ସର୍ବତ୍ୟାଗପୂର୍ବକ ଅଳ୍ପାହାରନିରତ ନିର୍ଜ୍ଜନରେ ସର୍ବଦା ଅବସ୍ଥାନ କରି ନିୟତ ନାଦାନୁସନ୍ଧାନରେ ଦୀର୍ଘକାଳ ରତ ରହି ଦେହଦୋଷ ନଷ୍ଟ ହେଲେ ଯାଇ ବିଭୂତିସବୁ ଆବିର୍ଭୂତ ହୋଇଥାଏ । ବିଭୂତିସମୂହକୁ ଉପେକ୍ଷା କଲେ ତେବେ ଯାଇ ପରମପଦରେ ସ୍ଥିତିଲାଭ ହୁଏ । ବିଭୂତି ମଧ୍ୟ ବନ୍ଧନର କାରଣ ।

ଶିଷ୍ୟ—ବିଭୂତି କଣ ନ ଚାହିଁଲେ ବି ଆସେ ?

ଗୁରୁ—ହଁ, ପ୍ରକୃତ ମୁମୁକ୍ଷୁ ତାହା ଉପେକ୍ଷା କରି ଅଗ୍ରସର ହୁଅନ୍ତି ।

ଶୁଣ, ସ୍କନ୍ଦପୁରାଣରେ ଅଛି:—

ସର୍ବଦାନଫଳୁଭବଂ ପୁଣ୍ୟଂ ଭବତି ଯୋଗତଃ ।
ଯୋଗାତ୍ ସକଳକାମାପ୍ତିର୍ନ ଯୋଗାଦ୍ଭୂବି ପ୍ରାପ୍ୟତେ ॥ ୭୩
ଯୋଗାନ୍ନ ହୃଦୟଗ୍ରନ୍ଥିର୍ନ ଯୋଗାନ୍ନମତା ଶ୍ରୁତଃ ।
ନ ଯୋଗସିଦ୍ଧସ୍ୟ ମନୋ ହର୍ତ୍ତୁଂ କେନାପି ଶକ୍ୟତେ ॥ ୭୪
ସ ଏବ ବିମଲୋ ଯୋଗୀ ଯଚ୍ଚିତ୍ତଂ ଶିରସି ସ୍ଥିତଂ ।
ସ୍ଥିରଭୂତବ୍ୟଥଂ ନିତ୍ୟଂ ଦଶମଦ୍ୱାରସମ୍ପୁଟେ ॥ ୭୫
କର୍ଣ୍ଣୌ ପିଧାୟ ମର୍ତ୍ତ୍ୟସ୍ୟ ନାଦରୂପଂ ବିଚିନ୍ୱତଃ ।
ତଦେବ ପ୍ରଣବସ୍ୟାଗ୍ରଂ ତଦେବ ବ୍ରହ୍ମ ଶାଶ୍ୱତମ୍ ॥ ୭୬
ତଦେବାନନ୍ତରୂପାଖ୍ୟଂ ତଦେବାମୃତମୁତ୍ତମମ୍ ।
ପ୍ରାଣବାୟୌ ପ୍ରଯୋଷୋଽୟଂ ଜାଠରାଗ୍ନେର୍ମହତ୍ ପଦମ୍ ॥ ୭୭
ପଞ୍ଚଭୂତନିବାସଂ ଯଜ୍ଜ୍ଞାନରୂପମିଦଂ ପଦମ୍ ।
ପଦଂ ପ୍ରାପ୍ୟ ବିମୁକ୍ତଃ ସ୍ୟାଜ୍ଜନ୍ମସଂସାରବନ୍ଧନାତ୍ ॥ ୭୮
ଯଦାପ୍ତିର୍ଦୁର୍ଲଭା ଲୋକେ ଯୋଗସିଦ୍ଧିପ୍ରଦାୟିକା ॥ ୭୯
ଏବଂ ବ୍ରହ୍ମମୟଂ ବିଶ୍ୱମ୍ ସକଳଂ ବିଶ୍ୱଂ ଚରଂ ସ୍ଥାବରଂ
ବିଜ୍ଞାନାଖ୍ୟମିଦଂ ପଦଂ ସ ଭଗବାନ୍ ବିଷ୍ଣୁଃ ସ୍ୱୟଂ ବ୍ୟାପକଃ ।
ଜ୍ଞାତ୍ୱା ତଂ ଶିରସି ସ୍ଥିତଂ ବହୁବରଂ ଯୋଗେଶ୍ୱରାଣାଂ ପରମ୍ ।
ପ୍ରାଣୀ ମୁଞ୍ଚତି ସର୍ପବଜ୍ଜଗତିଜାଂ ନିର୍ମୋକମାପ୍ନୋତ୍ୟୁତମମ୍ ॥ ୮୦

ନାଗରଖଣ୍ଡ ୨୬୨ ଅଧ୍ୟାୟ

ଯୋଗରୁ ସମସ୍ତ ଦାନ ଓ ଯଜ୍ଞଜାତ ପୁଣ୍ୟ ହୁଏ, ଯୋଗ ଦ୍ୱାରା ସଂସାରରେ ସମସ୍ତ କାମ୍ୟ ବସ୍ତୁ ଲାଭ ହୋଇଥାଏ, ଯୋଗ-

ଛଡ଼ା କିଛି ମାତ୍ର ମିଳେ ନାହିଁ । ଯୋଗରୁ ହୃଦୟ ଗ୍ରନ୍ଥି (ଚିଜ୍ଜଡ଼ମିଳନାତ୍ମକ) ଭେଦ ହୁଏ, ମମତା ରୂପକ ଶତ୍ରୁ ଦୂରକୁ ପଳାୟନ କରେ; ଯୋଗସିଦ୍ଧ ବ୍ୟକ୍ତିର ମନୋହରଣରେ କେହି ସମର୍ଥ ନୁହନ୍ତି । କର୍ଣ୍ଣଯୁଗଳ ରୁଦ୍ଧ କରି ନାଦାନୁଚିନ୍ତନକାରୀ ଯେଉଁ ମାନବର ଭୟଶୋକ ଆଦି ବ୍ୟଥାବିହୀନ ଚିତ୍ତ ମସ୍ତକରେ ଦଶମ ଦ୍ୱାର ବ୍ରହ୍ମରନ୍ଧ୍ର ରୂପକ ଆଧାରରେ ନିତ୍ୟ ଅବସ୍ଥିତ, ସେ ବିମଳ ପରମଯୋଗୀ । ସେହି ନାଦହିଁ ପ୍ରବଣର ପ୍ରଧାନ, ତାହାହିଁ ଶାଶ୍ୱତ ବ୍ରହ୍ମ, ତାହାହିଁ ଅନନ୍ତରୂପ, ତାହାହିଁ ଉତ୍ତମ—ଅମୃତ । ଜଠର ଅଗ୍ନିର ପ୍ରାଣବାୟୁରେ ଏହି ପରମ ଶବ୍ଦ ଉତ୍ଥିତ ହୁଏ—ଏହା ହିଁ ମହତ୍ ପଦ—ପଞ୍ଚଭୂତର ନିବାସ ସ୍ଥାନ ଅର୍ଥାତ୍ ପଞ୍ଚଭୂତ ଏହି ନାଦରେ ହିଁ ଅବସ୍ଥିତ । ଜ୍ଞାନରୂପକ ଏହି ପଦ ସଂସାରରେ ଯୋଗସିଦ୍ଧିପ୍ରଦାୟକ । ଯାହାର ପ୍ରାପ୍ତି ଦୁର୍ଲଭ, ସେହି ନାଦ ରୂପ ପଦ ପ୍ରାପ୍ତହେଲେ ଜନ୍ମ ସଂସାର ବନ୍ଧନଠାରୁ ବିମୁକ୍ତିଲାଭ ହୋଇଥାଏ; ଏହି ପ୍ରକାରରେ ସ୍ଥାବରଜଙ୍ଗମାତ୍ମକ ନିଖିଳ ବିଶ୍ୱ ବ୍ରହ୍ମମୟ ବୋଲି ପ୍ରତିଭାତ ହୁଏ । ବିଜ୍ଞାନନାମକ ଏହି ପଦ ହିଁ ବ୍ୟାପକ ଭଗବାନ୍ ସ୍ୱୟଂ ବିଷ୍ଣୁ, ସମସ୍ତଙ୍କର ଶ୍ରେଷ୍ଠ ଯୋଗେଶ୍ୱରଗଣଙ୍କର ଶିରସ୍ଥିତ—ତାହାଙ୍କୁ ଅବଗତ ହୋଇ ଜୀବ ସର୍ପ ଯେପରି ନିର୍ମୋକ (ଖୋଳପା ବା କାତି) ତ୍ୟାଗ କରେ, ସେହିପରି ମାୟାରୂପୀ ନିର୍ମୋକ ତ୍ୟାଗ କରିଥାଏ ।

କାଶୀଖଣ୍ଡରେ କଥିତ ହୋଇଅଛି:—

ଯଃଥଷ୍ଟଧାରଣଂ ବାୟୋରନଳସ୍ୟ ପ୍ରଦୀପନମ୍ ।
ନାଦାଭିବ୍ୟକ୍ତିରବେଗ୍ୟଂ ଭବେନ୍ନାଡ଼ୀବିଶୋଧନାତ୍ ॥ ୮୯

ପୂର୍ବାର୍ଦ୍ଧ ୪୧ ଅଧ୍ୟାୟ

ନାଡ଼ୀଶୁଦ୍ଧି ହେଲେ ଯଥେଷ୍ଟ ବାୟୁ ଧାରଣର ଶକ୍ତି, ଜାଠରାଗ୍ନିର ଦୀପ୍ତି ଏବଂ ନାଦର ଅଭିବ୍ୟକ୍ତି ହୋଇଥାଏ ।

ଶିଷ୍ୟ—**ବହୁ** ଶ୍ରୁତିରେ ଏ କଥା ଶୁଣାଯାଇ ଅଛି ।

ଗୁରୁ—

ପବନେ ବ୍ୟୋମସଂପ୍ରାପ୍ତେ ଧ୍ୱନିରୁତ୍ପଦ୍ୟତେ ମହାନ୍ ।
ଘଣ୍ଟାଦୀନାଂ ପ୍ରବାଦ୍ୟାନାଂ ତତଃ ସିଦ୍ଧିରଦୂରତଃ ॥ ୯୭

ପବନ ଆକାଶପ୍ରାପ୍ତ ହେଲେ ଘଣ୍ଟା ପ୍ରଭୃତି ବାଦ୍ୟର ମହାନାଦ ଉତ୍ପନ୍ନ ହୁଏ । ତଦ୍ଦ୍ୱାରା ସିଦ୍ଧି ନିକଟବର୍ତ୍ତୀ ଅବଗତ ହୋଇପାରେ ।

ଆକାଶଂ ଧାରୟାନସ୍ୟ ବ୍ୟୋମ ସୂକ୍ଷ୍ମଂ ପ୍ରବର୍ତ୍ତତେ ।
ପଶ୍ୟତେ ମଣ୍ଡଳଂ ସୂକ୍ଷ୍ମଂ ଘୋଷଶ୍ଚାସ୍ୟ ପ୍ରବର୍ତ୍ତତେ ॥

ଗୁରୁତତ୍ତ୍ୱଧୃତ ବ୍ରହ୍ମାଣ୍ଡପୁରାଣ

"ଆକାଶରେ ମନ ଧୃତ ହେଲେ ସୂକ୍ଷ୍ମ ଆକାଶତତ୍ତ୍ୱ ପ୍ରବର୍ତ୍ତିତ ହୁଏ, ସେତେବେଳେ ଯୋଗୀ ଅନ୍ତରରେ ସୂକ୍ଷ୍ମ ଜ୍ୟୋତି ଦେଖେ ଏବଂ ଶବ୍ଦ ଶୁଣେ ।"

ଉତ୍କ୍ରାନ୍ତିଭବତଃ ପୂର୍ବଂ ପଶ୍ଚାଦ୍ ବହୁଧାଃ କପେ ।
ଅଭିବ୍ୟଜ୍ୟନ୍ତ ଏତସ୍ୟ ନାଦାସ୍ତତ୍ ସିଦ୍ଧିସୂଚକାଃ ॥

ଏକାନ୍ ତତ୍ତ୍ୱସାରପୁରାଣାନ୍ତର୍ଗତ ରାମଗୀତା

"ଜ୍ୟୋତିରୂପ ଆତ୍ମାର ପ୍ରକାଶର ପୂର୍ବରେ ବା ପରେ ସାଧକ ମଧ୍ୟରେ ବହୁଧ ନାଦର ଅଭିବ୍ୟକ୍ତି ହୁଏ; ସେମାନେ ସାଧକର ସିଦ୍ଧି ସୂଚନା ଦିଅନ୍ତି ।"

ଶିଷ୍ୟ—ସେ ଜ୍ୟୋତିକୁହିଁ ଆତ୍ମା ବୋଲି କହିଲେ । ହଂସୋପନିଷଦରେ ତ ମୂଳାଧାରଠାରୁ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ଶୁଦ୍ଧ ସ୍ଫଟିକ ପରି ଜ୍ୟୋତିକୁହିଁ ନାଦ ବୋଲି କହିଛନ୍ତି ।

ଗୁରୁ—ଜ୍ୟୋତି ନାଦ ଏକା, କବଳ ନାଦହିଁ ଜ୍ୟୋତିଃ । ଯେ ଯେଉଁ ଭାବରେ ଦର୍ଶନ ପାଇଛନ୍ତି; ସେ ସେହିଭାବରେ ବର୍ଣ୍ଣନା କରିଛନ୍ତି । ତେବେ ମନେରଖ, ପ୍ରଣବ ନାଦ ଓ ଜ୍ୟୋତି—ଏ ତିନୋଟି ଏକା ।

ବ୍ରହ୍ମାଣ୍ଡ ପୁରାଣାନ୍ତର୍ଗତ ଉତ୍ତରଗୀତାରେ ଅଛି:—

ତୈଳଧାରାମିବାଚ୍ଛିନ୍ନଂ ଦୀର୍ଘଘଣ୍ଟାନିନାଦବତ୍ ।
ଅବାଚ୍ୟଂ ପ୍ରଣବସ୍ୟାଗ୍ରଂ ଯସ୍ତଂ ବେଦ ସ ବେଦବିତ୍ ॥ ୨୩

ପ୍ରଣବର ଗୂଢ଼ାର୍ଥ ପ୍ରକାଶକ ବୃତ୍ତିଦ୍ୱାରା ବୋଧ ଅର୍ଥାତ୍ ପ୍ରଣବ ଦ୍ୱାରା ଲକ୍ଷ୍ୟ ଅବଚ୍ଛିନ୍ନ ତୈଳଧାରା ପରି ଓ ଦୀର୍ଘ ଘଣ୍ଟାଧ୍ୱନିପରି ସନ୍ତତ, ବାକ୍ୟର ଅଗୋଚର—ତାହାଙ୍କୁ ଯେ ଜାଣନ୍ତି, ସେହି ପ୍ରକୃତ ବେଦତତ୍ତ୍ୱଜ୍ଞ ।

ଶୁଣ—କୁଳାର୍ଣ୍ଣବତନ୍ତ୍ରରେ ଅଛି:—

ପୂଜାକୋଟିସମଂ ସ୍ତୋତ୍ରଂ ସ୍ତୋତ୍ରକୋଟିସମୋ ଜପଃ ।
ଜପକୋଟିସମଂ ଧ୍ୟାନଂ ଧ୍ୟାନକୋଟିସମୋ ଲୟଃ ॥
ନ ହି ନାଦାତ୍ ପରୋ ମନ୍ତ୍ରୋ ନ ଦେବଃ ସ୍ୱାତ୍ମନଃ ପରଃ ।
ନାନୁସନ୍ଧେଃ ପରା ପୂଜା ନ ହି ତୃପ୍ତେଃ ପରଂ ଫଳମ୍ ॥

ସ୍ତୋତ୍ର କୋଟି ପୂଜାର ସମାନ, ଜପ କୋଟି ସ୍ତୋତ୍ର ସଦୃଶ, ଧ୍ୟାନ କୋଟି ଜପ ସମାନ ଏବଂ ଲୟ କୋଟି ଧ୍ୟାନତୁଲ୍ୟ । ନାଦ ଅପେକ୍ଷା ଶ୍ରେଷ୍ଠ ମନ୍ତ୍ର ନାହିଁ । ଆତ୍ମଦେବତା ଅର୍ଥାତ୍ ଓଁକାରଠାରୁ ଶ୍ରେଷ୍ଠ ଦେବତା ନାହାନ୍ତି, ନାଦାନୁସନ୍ଧାନଠାରୁ ମହତ୍ତ ପୂଜା ନାହିଁ, ତୃପ୍ତି ଅପେକ୍ଷା ପରମ ଫଳ ନାହିଁ ।

ତ୍ରିପୁରାସାର ସମୁଚ୍ଚୟରେ କଥିତ ହୋଇଅଛି:—

ବକତୋ ଭବଶଦ୍ଧ ତେନ ବାୟୁଃ
ସହଜୋ ଯସ୍ୟ ସମୁତ୍ଥିତଃ ପ୍ରଣାଦଃ ।
ଅଣିମାଦି ଗୁଣା ଭବନ୍ତି ତସ୍ୟା
ମିତପୁଣ୍ୟଞ୍ଚ ମହାଗୁଣୋଽପ୍ୟସ୍ୟ ॥

ଯାହାଙ୍କର ସ୍ୱାଭାବିକ ଭାବରେ ଉତ୍ତମ ଚିତ୍ତପ୍ରକାଶକ ନାଦ ସମ୍ୟକ୍ ଉତ୍ଥିତ ହୁଏ, ତାଙ୍କଦ୍ୱାରା ବାୟୁ ବିଶେଷ ରୂପେ ଜିତ ହୋଇଅଛି । ସେହି ମହାଗୁଣବାନ୍ ଯୋଗୀଙ୍କର ଅଣିମାଦି ବିଭୂତି-ସମୂହ ଏବଂ ଅମିତ ପୁଣ୍ୟ ଲାଭ ହୋଇଥାଏ ।

ସୁରରାଜତନୁଜବୈରରନ୍ଧ୍ରେ
ବିନିରୁଦ୍ଧେ ସ୍ୱକରାଙ୍ଗୁଳିଦ୍ୱୟେନ ।
ଜଳଧେରିବ ଧୀରନାଦମନ୍ତଃ
ପ୍ରସରନ୍ତଂ ସହସା ଶୃଣୋତି ମର୍ତ୍ତ୍ୟଃ ॥

ସ୍ୱୀୟ କରାଙ୍ଗୁଳିଦ୍ୱୟଦ୍ୱାରା କର୍ଣ୍ଣଯୁଗଳ ବିଶେଷ ଭାବରେ ନିରୁଦ୍ଧ କରି ଧୈର୍ଯ୍ୟଶାଳୀ ମାନବ ସୁଷୁମ୍ନା ମଧ୍ୟରେ ଉତ୍ତମ ରୂପେ ଶବ୍ଦକାରୀ ନାଦ ସହସା ଶ୍ରବଣ କରିଥାଏ ।

ଶିଷ୍ୟ—ସୁରରାଜ-ତନୁଜ-ବୈରି ଅର୍ଥ—

ଗୁରୁ—ସୁରରାଜ ଇନ୍ଦ୍ର, ତାଙ୍କର ତନୁଜ ଅର୍ଜ୍ଜୁନ, ତାଙ୍କର ଶତ୍ରୁ କର୍ଣ୍ଣ, ଅର୍ଥାତ୍ କର୍ଣ୍ଣରନ୍ଧ୍ରରେ ।

ଶିଷ୍ୟ—ସହଜରେ ବୁଝିବାର ଉପାୟ ନାହିଁ ।

ଗୁରୁ—ଆହୁରି ଶୁଣ—

ଆଦୌ ମତ୍ତଲିମାଳାଜନିତରବସମସ୍ତାର ଝଙ୍କାରକାରୀ
ନାଦୋଽସୌ ବାଂଶିକସ୍ୟାନିଲଭରିତଲସଦ୍ୱଂଶନିଃସ୍ୱାନତୁଲ୍ୟଃ
ଘଣ୍ଟାନାଦାନୁକାରୀ ତଦନୁ ଚ ଜଲଧି ଧ୍ୱାନଧୀରୋ ଗଭୀରୋ
ଗର୍ଜ୍ଜନ୍ ପର୍ଜନ୍ୟଘୋଷଃ ପର ଇହ କୁହରେ ବର୍ତ୍ତତେ ବ୍ରହ୍ମନାଡ୍ୟାଃ ॥

ପ୍ରଣବର ଊର୍ଦ୍ଧ୍ୱାଭିବ୍ୟକ୍ତିକାରକ ନାଦ ପ୍ରଥମେ ଭ୍ରମରସମୂହଙ୍କର ଶବ୍ଦ ପରି ଏବଂ ପରେ ଏହି ନାଦ ପବନ-ଭରିତ ଶୋଭିତ ମଧୁର ବଂଶୀଧ୍ୱନିତୁଲ୍ୟ, ଅନନ୍ତର ଘଣ୍ଟାଧ୍ୱନି ପରି, ତାହାପରେ ସମୁଦ୍ରର ଶବ୍ଦ ତୁଲ୍ୟ, ତତ୍‌ପଶ୍ଚାତ୍ ଗର୍ଜନଶୀଳ ମେଘ ଶବ୍ଦପରି ଗମ୍ଭୀର—ଏହି ପ୍ରକାର ପୂର୍ବୋକ୍ତ ନାଦସବୁ ଏହି ଦେହରେ ସୁଷୁମ୍ନାନାଡ଼ୀ ମଧ୍ୟରେ ଅଛି ।

ଶିଷ୍ୟ—ଅନେକ ଶ୍ରୁତି ଓ ପୁରାଣ ମେଘନାଦକୁ ହିଁ ଶେଷ ନାଦ ବୋଲି କହିଛନ୍ତି ।

ଗୁରୁ—ମେଘନାଦ ହିଁ ଶେଷନାଦ, ଏହା ସମସ୍ତ ଅଧିକାରୀଙ୍କ ପକ୍ଷରେ ନୁହେଁ । ଅନେକ ସ୍ଥଳରେ ଶ୍ରୁତି ବୀଣା ବେଣୁ ପ୍ରଭୃତିକୁ ଶେଷନାଦ ବୋଲି କହିଛନ୍ତି । ସମସ୍ତ ନାଦ ହିଁ ଓମ୍ ନାଦରେ ଲୟ ହୋଇଯାଏ । ଶିବସଂହିତା ଏହିପରି କହିଛନ୍ତି:—

ମତ୍ତଭୃଙ୍ଗବେଣୁବୀଣା ସଦୃଶଃ ପ୍ରଥମୋ ଧ୍ୱନିଃ ।
ଏବମଭ୍ୟାସତଃ ପଶ୍ଚାତ୍ ସଂସାରଧ୍ୱାନ୍ତନାଶନଃ ।
ଘଣ୍ଟାରବସମଃ ପଶ୍ଚାତ୍ ଧ୍ୱନିର୍ମେଘରବୋପମଃ ॥

ପ୍ରଥମ ମତ୍ତ ଭ୍ରମର ବେଣୁ ଓ ବୀଣା ସଦୃଶ ଧ୍ୱନି—ଏହିପରି ଅଭ୍ୟାସ କରୁ କରୁ ସଂସାର-ଅନ୍ଧକାର-ନାଶକ ଘଣ୍ଟାରବ ପରି ଏବଂ ତଦନନ୍ତର ମେଘଗର୍ଜ୍ଜନତୁଲ୍ୟ ନାଦ ଶ୍ରୁତିଗୋଚର ହୁଏ ।

ଶିଷ୍ୟ—ଏ ପୂର୍ବୋକ୍ତ ତନ୍ତ୍ରର ଅନୁରୂପ କହିଛନ୍ତି ।

ଗୁରୁ—ହିଁ—

ନାସନଂ ସିଦ୍ଧସଦୃଶଂ ନ କୁମ୍ଭସଦୃଶଂ ବଳଂ ।
ନ ଖେଚରୀସମା ମୁଦ୍ରା ନ ନାଦସଦୃଶୋ ଲୟଃ ॥ ଏକନ୍

ସିଦ୍ଧାସନ ପରି ଆସନ, କୁମ୍ଭକ ସଦୃଶ ବଳ, ଖେଚରୀତୁଲ୍ୟ ମୁଦ୍ରା ଏବଂ ନାଦ ପରି ଲୟ ନାହିଁ ।

ତନ୍ତ୍ରସାରରେ କଥିତ ହୋଇଅଛି:—
ଅଙ୍ଗୁଳଭର୍ତ୍ତ୍ରିଡ଼ଂ ବଦ୍ଧ୍ଵା କରଣାନ ସମାହିତଃ ।
ଅଙ୍ଗୁଷ୍ଠାଭ୍ୟାମୁଭେ ଶ୍ରୋତ୍ରେ ତର୍ଜ୍ଜନୀଭ୍ୟାଂ ବିଲୋଚନେ ॥
ନାସାରନ୍ଧ୍ରେ ଚ ମଧ୍ୟାଭ୍ୟାମନ୍ୟାଭିର୍ବଦନଂ ଦୃଢ଼ମ୍ ।
ବଦ୍ଧ୍ଵାତ୍ମପ୍ରାଣମନସାମେକତ୍ତ୍ଵଂ ସମନୁସ୍ମରନ୍ ।
ଧାରୟେନ୍ମାରୁତଂ ସମ୍ୟଗ୍ ଯୋଗୋଽୟଂ ଯୋଗିବଲ୍ଲଭଃ ॥

ଷଣ୍ମୁଖୀ ମୁଦ୍ରା ବନ୍ଧନ ପୂର୍ବକ ପ୍ରାଣ ଏବଂ ମନର ଏକତ୍ତ୍ଵ ସମ୍ୟକ୍ ଚିନ୍ତାକରି ଉତ୍ତମ ରୂପେ ବାୟୁ ଧାରଣ କରିବ; ଯୋଗିଗଣଙ୍କର ଏହି ଯୋଗ ପ୍ରିୟତମ । ଅବିଚ୍ଛେଦରେ ଅଭ୍ୟାସକାରୀ ଯୋଗୀର ସତ୍ତ୍ଵର ନାଦ ଉତ୍ପନ୍ନ ହୁଏ ।

ମତ୍ତଭୃଙ୍ଗାବଳୀଗୀତ ସଦୃଶଃ ପ୍ରଥମୋ ଧ୍ଵନିଃ ।
ବଂଶୀକାଂସ୍ୟାନିଳପୂର୍ଣ୍ଣବଂଶ ଧ୍ଵନିନିଭୋଽପରଃ ।
ଘଣ୍ଟାରବସମଃ ପଶ୍ଚାଦ୍ଘନମେଘସ୍ଵନୋଽପରଃ ।
ଏବମଭ୍ୟସତଃ ପୁଂସଃ ସଂସାରଧ୍ଵାନ୍ତନାଶନଂ ।
ଜ୍ଞାନମୁତ୍ପଦ୍ୟତେ ପୂର୍ବଂ ହଂସ ଲକ୍ଷଣମବ୍ୟୟମ୍ ॥

ପ୍ରଥମେ ମତ୍ତ ଭ୍ରମରଗଣଙ୍କର ଗୀତ ସଦୃଶ ଧ୍ଵନି, ଦ୍ଵିତୀୟରେ ବେଣୁ କାଂସ୍ୟ ବାୟୁପୂର୍ଣ୍ଣ ବଂଶଧ୍ଵନି ପରି ନାଦ, ଅନନ୍ତର ଘଣ୍ଟାରବ ପରି ଓ ନବଡ଼ ଜଳପୂର୍ଣ୍ଣ ମେଘଧ୍ଵନି ପରି ତୃତୀୟ ନାଦ ଶ୍ରୁତି-ଗୋଚର ହୁଏ—ଏହିପରି ଅଭ୍ୟାସକାରୀ ପୁରୁଷର ସଂସାର-ଅନ୍ଧକାର-ନାଶକ ଅପୂର୍ବ ଅକ୍ଷୟ ହଂସଲକ୍ଷଣ ଜ୍ଞାନ ଉତ୍ପନ୍ନ ହୋଇ-ଥାଏ ଅର୍ଥାତ୍ ଅଦ୍ଵୈତ ଜ୍ଞାନ ହୁଏ । ଏକମାତ୍ର ଓଙ୍କାର ହିଁ କାର୍ଯ୍ୟ କାରଣ ରୂପରେ ଅବସ୍ଥିତ—ଏହି ଜ୍ଞାନ ଦୃଢ଼ପ୍ରତିଷ୍ଠ ହୁଏ ।

ଶିଷ୍ୟ—ଠିକ୍ ମେଘ ପରି ଶବ୍ଦ ଶୁଣାଯାଏ ?

ଗୁରୁ—ନିଶ୍ଚୟ, ସେହି ଗୁରୁ ଗମ୍ଭୀର ମେଘଧ୍ୱନି ଯେତେବେଳେ ଯୋଗୀଙ୍କର କର୍ଣ୍ଣଗୋଚର ହୁଏ ସେତେବେଳେ ତାଙ୍କର ପ୍ରାଣ ଆନନ୍ଦରେ ପୂର୍ଣ୍ଣ ହୋଇଯାଏ । ଗୃହ ମଧ୍ୟରେ ଥିଲେ ବାହାରେ ବର୍ଷା ହେଲପରି ମନେହୁଏ । ଘେରଣ୍ଡ ସଂହିତାରେ ଅଛି:—

ଅନିଲଂ ମନ୍ଦବେଗେନ ଭ୍ରାମରୀକୁମ୍ଭକଂ ଚରେତ୍ ।
ମନଞ୍ଚ ରେଚୟେତ୍ ବାୟୁଂ ଭୃଙ୍ଗ ନାଦସ୍ତତୋ ଭବେତ୍ ॥
ଅନ୍ତଃସ୍ଥଂ ଭ୍ରାମରୀନାଦଂ ଶ୍ରୁତ୍ୱା ତତ୍ର ମନୋନୟେତ୍ ।
ସମାଧିର୍ଜାୟତେ ତତ୍ର ଆନନ୍ଦଃ ସୋଽହମିତ୍ୟତଃ ॥

ବେଦୋଦ୍‌ଘୋଷଂ ପୂରକଂ କୁମ୍ଭକଞ୍ଚ
ଭୃଙ୍ଗୀନାଦଂ ରେଚକଂ ମନ୍ଦମନ୍ଦମ୍ ।
ଯୋଗୀନ୍ଦ୍ରା ନାମେବମଭ୍ୟାସ ଯୋଗାଚ୍ଚିତ୍ତେ ଜାତା କାଚିଦାନନ୍ଦବଲ୍ଲୀ ॥

ଧୀରେ ଧୀରେ ବାୟୁ ପୂରଣ କରି ଭ୍ରାମରୀ କୁମ୍ଭକ କରିବ, ମନ୍ଦବେଗରେ ବାୟୁ ରେଚନ କରିବ, ତାହା ଦ୍ୱାରା ଭ୍ରମରଧ୍ୱନି ପରି ନାଦ ଶ୍ରୁତିଗୋଚର ହେବ । ଦେହ ମଧ୍ୟସ୍ଥ ଭ୍ରାମରୀ ନାଦ ଶ୍ରବଣ କରି ସେହି ସ୍ଥାନରେ ମନକୁ ଏକାଗ୍ର କରିବ, ଅନନ୍ତର ସୋଽହମ୍ ଏହି ଆନନ୍ଦ ସମାଧି ଉତ୍ପନ୍ନ ହେବ ।

ଶିଷ୍ୟ—ସୋଽହମ୍ ଆନନ୍ଦ ସମାଧି କଣ ?

ଗୁରୁ— ଅବିରାମ ସୋଽହଂ ସୋଽହଂ ସୋଽହଂ—ଏହି ଧ୍ୱନି ଉତ୍‌ଥିତ ହେବାକୁ ଲାଗିବ । ଯୋଗୀ ସେହି ସୋଽହଂ ନାଦ ଶ୍ରବଣ କରି ପରମ ଆନନ୍ଦ ଲାଭ କରିଥାନ୍ତି ।

ଗୋରକ୍ଷ-ସଂହିତାରେ ଅଛି—

ଅର୍ଦ୍ଧରାତ୍ରେ ଗତେ ଯୋଗୀ ଜନ୍ତୂନାଂ ଶବ୍ଦବର୍ଜ୍ଜିତେ ।
କର୍ଣ୍ଣୌ ପିଧାୟ ହସ୍ତାଭ୍ୟାଁ କୁର୍ଯ୍ୟାତ୍ ପୂରକ କୁମ୍ଭକମ୍ ।

ଅର୍ଦ୍ଧରାତ୍ର ଗତ ହେଲେ ଯୋଗୀ ପ୍ରାଣୀମାନଙ୍କର ଶବ୍ଦଶୂନ୍ୟ ନିର୍ଜ୍ଜନ ସ୍ଥାନରେ ହସ୍ତଦ୍ୱୟ ଦ୍ୱାରା କର୍ଣ୍ଣଯୁଗଳ ଆଚ୍ଛାଦନ ପୂର୍ବକ ପୂରକ କୁମ୍ଭକ କରିବେ । ଦକ୍ଷିଣ କର୍ଣ୍ଣରେ ଦେହାନ୍ତର୍ଗତ କଲ୍ୟାଣ-ପ୍ରଦ ନାଦ ଶ୍ରବଣ କରିବାକୁ ହେବ । ପ୍ରଥମେ ଝିଲ୍ଲୀ ଓ ବଂଶୀନାଦ, ଅନନ୍ତର ମେଘ ଝର୍ଝର ଭ୍ରାମରୀ ଘଣ୍ଟା ଘଣ୍ଟ ପରି ନାଦ, ତତ୍-ପଶ୍ଚାତ୍ ତୁରୀ ଭେରୀ ମୃଦଙ୍ଗ ଢକ୍କା ପ୍ରଭୃତିର ନିନାଦ—ନିତ୍ୟ ଏହିପରି ନାଦ ଅଭ୍ୟାସ କଲେ ନାନାବିଧ ନାଦ ଶ୍ରୁତିଗୋଚର ହୁଏ । ଅନାହତ ଶବ୍ଦ; ସେହି ଶବ୍ଦର ଧ୍ୱନି, ଧ୍ୱନିର ଅନ୍ତର୍ଗତ ଜ୍ୟୋତିଃ, ଜ୍ୟୋତିର ଅନ୍ତର୍ଗତ ମନ ।

ତନ୍ମନୋ ବିଲୟଂ ଯାତି ତଦ୍ୱିଷ୍ଣୋଃ ପରମଂ ପଦମ୍ ।
ଏବଂ ଭ୍ରାମରୀସଂସିଦ୍ଧିଃ ସମାଧିସିଦ୍ଧିମାପ୍ନୁୟାତ୍ ॥

ସେହି ସ୍ଥାନରେ ମନ ବିଲୀନ ହୁଏ, ତାହାହିଁ ବିଷ୍ଣୁଙ୍କର ପରମ ପଦ; ଏହିପରି ଉତ୍ତମରୂପେ ଭ୍ରାମରୀସିଦ୍ଧ ଯୋଗୀ ସମାଧିସିଦ୍ଧି ପ୍ରାପ୍ତ ହୁଅନ୍ତି ।

ଶିଷ୍ୟ—ଏ ମଧ୍ୟ କର୍ଣ୍ଣ ବନ୍ଦ କରି ନାଦ ଶ୍ରବଣ କରିବାକୁ କହିଛନ୍ତି ?

ଗୁରୁ—ହିଁ । ଯୋଗତତ୍ତ୍ୱବାରିଧିରେ କଥିତ ହୋଇଅଛି:—

ମତ୍ତଭୃଙ୍ଗବେଣୁବୀଣାସଦୃଶ ପ୍ରଥମୋ ଧ୍ୱନିଃ ।
ଏବମଭ୍ୟସତଃ ପଶ୍ଚାତ୍ ସଂସାରଧ୍ୱାନ୍ତନାଶନଃ ।
ଘଣ୍ଟାରବଃ ସମଃ ପଶ୍ଚାତ୍ ଧ୍ୱନିର୍ମେଘରବୋପମଃ ॥

ପ୍ରଥମେ ମତ୍ତଭୃଙ୍ଗ ବେଣୁ ଓ ବୀଣା ସଦୃଶ ଧ୍ୱନି ଉତ୍‌ଥିତ ହୁଏ । ଏହିପରି ଅଭ୍ୟାସ କରୁ କରୁ ଶେଷରେ ସଂସାର-ଅନ୍ଧକାର-ନାଶନ ଘଣ୍ଟାନାଦ ; ଅନନ୍ତର ମେଘଧ୍ୱନିପରି ନାଦ କର୍ଣ୍ଣଗୋଚର ହୁଏ ; ଆହୁରି ଅଭ୍ୟାସ କଲେ ପ୍ଲୁତସ୍ୱରରେ ପ୍ରଣବ ଧ୍ୱନି ଶୁଣାଯାଏ । ସେହି

ଧ୍ୟାନରେ ମନଦେଇ ଯେତେବେଳେ ସାଧକ ପୂର୍ଣ୍ଣଭାବରେ ଅବସ୍ଥିତ ହୁଅନ୍ତି ସେତେବେଳେ ଚିତ୍ତ ଲୟ ହୋଇଯାଏ । ସେହି ନାଦରେ ଯୋଗୀର ଚିତ୍ତ ଅତ୍ୟନ୍ତ ସଂଲଗ୍ନ ହୋଇଯାଏ, ସେତେବେଳକୁ ସମସ୍ତ ବାହ୍ୟ ଜଗତ୍ ବିସ୍ମୃତ ହୋଇ ନାଦ ସହିତ ମନ ଶମପ୍ରାପ୍ତ ହୋଇ ରହେ ।

ଶିଷ୍ୟ—ଏ କପରି ଭାବରେ ନାଦାନୁସନ୍ଧାନ କରିବାକୁ କହିଛନ୍ତି ?

ଗୁରୁ—ଷଣ୍ମୁଖୀ ମୁଦ୍ରାଦ୍ୱାରା ଚକ୍ଷୁକର୍ଣ୍ଣାଦି ରୋଧପୂର୍ବକ ପୁନଃ ପୁନଃ ବାୟୁ ସାଧନ କଲେ—

ତଦା ଲକ୍ଷଣମାତ୍ମାନଂ ଜ୍ୟୋତିରୂପଂ ପ୍ରପଶ୍ୟତି ।
ତତ୍ତେଜୋ ଦୃଶ୍ୟତେ ଯେନ କ୍ଷଣମାତ୍ରଂ ନିରାବିଲମ୍ ।
ସର୍ବପାପୈର୍ବିନିର୍ମୁକ୍ତଃ ସ ଯାତି ପରମାଂ ଗତିମ୍ ॥

ଜ୍ୟୋତିର୍ମୟ ଜୀବାତ୍ମାକୁ ଦେଖିବାକୁ ମିଳେ । ଯେଉଁ ବ୍ୟକ୍ତି କ୍ଷଣକାଳମାତ୍ର ଏହି ଆତ୍ମଜ୍ୟୋତିର ଦର୍ଶନ ପାନ୍ତି ତାଙ୍କର ସମସ୍ତ ପାପ ଦୂର ହୁଏ ଏବଂ ପରମା ଗତି ଲାଭ ହୁଏ । ପୂର୍ବୋକ୍ତ ରୂପ ସାଧନା ନିରନ୍ତର ଅଭ୍ୟାସ କଲେ ଯୋଗୀ ନିଷ୍ପାପ ହୋଇ ସ୍ଥୂଳ ଦେହ ପ୍ରଭୃତି ବିସ୍ମରଣପୂର୍ବକ ତନ୍ମୟ ହୋଇ ଉଠନ୍ତି । ଯେଉଁ ଯୋଗୀ ସର୍ବଦା ଗୁପ୍ତଭାବରେ ଏହି ଯୋଗ ଅଭ୍ୟାସ କରନ୍ତି, ସେ ଯଦ୍ୟପି କାର୍ଯ୍ୟାନୁଷ୍ଠାନରେ ରତ ଥାନ୍ତି—ତଥାପି ପରବ୍ରହ୍ମଙ୍କଠାରେ ଲୟ ପ୍ରାପ୍ତ ହୁଅନ୍ତି ।

ଗୋପନୀୟଃ ପ୍ରଯତ୍ନେନ ସଦ୍ୟଃ ପ୍ରତ୍ୟୟକାରକଃ ।
ନାଦଃ ସଞ୍ଜାୟତେ ତସ୍ୟ କ୍ରମେଣାଭ୍ୟାସତଶ୍ଚ ବୈ ।

ଏହା ଯତ୍ନପୂର୍ବକ ଗୋପନ ରଖିବ; ଏହି ଯୋଗ ସଦ୍ୟ ପ୍ରତ୍ୟୟ କାରକ । ଏହାର ଅବିଚ୍ଛେଦ ଅଭ୍ୟାସଦ୍ୱାରା ନାଦ (ବ୍ରହ୍ମ) ପ୍ରତ୍ୟକ୍ଷ-ହୋଇଥାନ୍ତି ।

ଶିଷ୍ୟ—ଷଣ୍ମୁଖୀ ମୁଦ୍ରାଦ୍ୱାରା ନାଦର ଆବିର୍ଭାବ ଯୋଗିଗଣ ଭିନ୍ନ ଭିନ୍ନ ଭାବରେ ଦର୍ଶନ କରିଛନ୍ତି ।

ଗୁରୁ—ହଁ, ଯୋଗବିଦ୍ୟାରେ କଥିତ ହୋଇଅଛି:—

ବ୍ରହ୍ମରନ୍ଧ୍ରେ ସୁଷୁମ୍ନାୟାଂ ମୃଣାଳାନ୍ତରସୂତ୍ରବତ୍ ।
ନାଦୋତ୍ପତ୍ତିସ୍ତୁ ନୈନୈବ ଶୁଦ୍ଧସ୍ଫଟିକସନ୍ନିଭା ॥
ଆମୂର୍ଦ୍ଧ୍ୱା ବର୍ତ୍ତତେ ନାଦୋ ବୀଣାଦଣ୍ଡବଦୁତ୍ଥିତଃ ।
ଶଙ୍ଖଧ୍ୱନିନିଭସ୍ତ୍ୱାଦୌ ମଧ୍ୟେ ମେଘଧ୍ୱନିର୍ଯଥା ॥
ବ୍ୟୋମରନ୍ଧ୍ରଗତେ ନାଦେ ଗିରିପ୍ରସ୍ରବଣଂ ଯଥା ।
ବ୍ୟୋମରନ୍ଧ୍ରଗତେ ବାୟୌ ଚିତ୍ତେ ଚାତ୍ମନି ସଂସ୍ଥିତେ ॥
ତଦାନନ୍ଦୀ ଭବେଦ୍‌ଦେହୀ ବାୟୁସ୍ତେନ ଜିତୋ ଭବେତ୍ ॥

ସୁଷୁମ୍ନାରେ ବ୍ରହ୍ମରନ୍ଧ୍ରରେ ମୃଣାଳମଧ୍ୟଗତ ସୂତ୍ର ପରି ଶୁଦ୍ଧ ସ୍ଫଟିକମଣି ତୁଲ୍ୟ ନାଦୋତ୍ପତ୍ତି ହୁଏ । ମୂଳାଧାରଠାରୁ ମସ୍ତକ ପର୍ଯ୍ୟନ୍ତ ବୀଣାଦଣ୍ଡ ପରି ଉତ୍ଥିତ ସୁଷୁମ୍ନାରେ ନାଦ ଅବସ୍ଥିତ । ପ୍ରଥମେ ଶଙ୍ଖଧ୍ୱନିପରି, ମଧ୍ୟରେ ମେଘ ଗର୍ଜ୍ଜନ ତୁଲ୍ୟ ନାଦ ଶ୍ରୁତ ହୁଏ, ବ୍ରହ୍ମରନ୍ଧ୍ରଗତ ହେଲେ ପର୍ବତ ନିର୍ଝର ପରି ଶବ୍ଦ ଶ୍ରୁତ ହୋଇଥାଏ । ବାୟୁ ବ୍ରହ୍ମରନ୍ଧ୍ରକୁ ଗମନ କଲେ ଓ ଚିତ୍ତ ଆତ୍ମାରେ ଉତ୍ତମରୂପେ ସ୍ଥିତ ହେଲେ ଯୋଗୀ ଆନନ୍ଦମୟ ହୁଅନ୍ତି, ତାଙ୍କ କର୍ତ୍ତୃକ ବାୟୁ ଜିତ ହୋଇଥାଏ । ଏଥିରେ ଅନ୍ୟତ୍ର କଥିତ ଅଛି:—

ପ୍ରଣବସ୍ୟ ତୁ ନାଦାନ୍ତେ ପରମାନନ୍ଦବିଗ୍ରହମ୍ ।
ଋତଂ ସତ୍ୟଂ ପରଂବ୍ରହ୍ମ ପୁରୁଷଂ କୃଷ୍ଣପିଙ୍ଗଳମ୍ ।
ଚେତସା ତଂ ପ୍ରପଶ୍ୟନ୍ତି ସନ୍ତଃ ସଂସାରଭେଷଜମ୍ ॥

ପ୍ରଣବର ନାଦାନ୍ତରେ ପରମାନନ୍ଦ ବିଗ୍ରହ ଋତ ସତ୍ୟ ପରବ୍ରହ୍ମ କୃଷ୍ଣପିଙ୍ଗଳ ସଂସାର ବ୍ୟାଧିର ଭେଷଜ ସେହି ଓଙ୍କାର ପରମାତ୍ମାଙ୍କୁ ସାଧୁଗଣ ଚିତ୍ତଦ୍ୱାରା ଦର୍ଶନ କରନ୍ତି ।

ମୁକ୍ତେରଯ଼ଂ ମହାମାର୍ଗୋ ମକାରାଖ୍ୟୋଽନ୍ତରାତ୍ମନଃ ।
ନାଦସଞ୍ଜାତପାଦଯ଼ୁକ୍ତେଷୁ କୁମ୍ଭକଃ ପ୍ରାଣସଂଯମଃ ॥

ମକାରାଖ୍ୟ ଅନ୍ତରାତ୍ମାର ମୁକ୍ତିର ଏହି ମହାମାର୍ଗ—ଏହି ପ୍ରାଣ ସଂଯମ କୁମ୍ଭକ ନାଦ ଉତ୍ପନ୍ନ କରିଥାଏ ।

ଶିଷ୍ୟ—ନାଦାନ୍ତ ଶବ୍ଦର ଅର୍ଥ କଣ ନାଦର ଶେଷ ?

ଗୁରୁ—ନାଦର ଆଉ ଶେଷ କଣ ? ବାଯ଼ୁ ଯେତେ ସ୍ଥିର ହେଉଥାଏ ନାଦ ସେତେ ସୂକ୍ଷ୍ମଠାରୁ ସୂକ୍ଷ୍ମତର ହୁଅନ୍ତି, ମନବାଯ଼ୁ ହିଁ ଲଯ଼ ହୋଇଯାଏ । ବିଶ୍ୱର ଅନ୍ତରେ ବାହାରେ ଯେଉଁ ଓଁକାର ନାଦ ଅବସ୍ଥାନ କରି ବିଶ୍ୱକୁ ଧରି ରଖିଛନ୍ତି, ସେହି ଅନାଦି ଅନନ୍ତ ନାଦ-ବ୍ରହ୍ମର ଶେଷ ହୁଏନାହିଁ—ହୁଏ ଯୋଗୀର ବିକ୍ଷିପ୍ତ ଚିତ୍ତର ଅବସାନ । ଏକାଗ୍ର କ୍ଷେତ୍ରରେ ବୁଦ୍ଧିଗ୍ରାହ୍ୟ ଅତୀନ୍ଦ୍ରିଯ଼ ସୁଖ ବର୍ତ୍ତମାନ ଥାଏ, ନିରୁଦ୍ଧ କ୍ଷେତ୍ରରେ କିଛିମାତ୍ର ନ ଥାଏ, ମନ ନାଦ ଅନ୍ତର୍ଗତ ପରମାତ୍ମ ଜ୍ୟୋତିରେ ଏକୀଭୂତ ହୋଇଯାଏ । ଏହାପରେ ହଠଯୋଗପ୍ରଦୀପିକାରେ କଥିତ ନାଦବ୍ରହ୍ମ କଥା କହିବି । ନାଦବିନ୍ଦୂପନିଷଦରେ ଏହାର ଅନେକ କଥା ବର୍ଣ୍ଣନା କରାଯାଇଛି ।

ଏହି ଗ୍ରନ୍ଥରେ ଅନେକ ପ୍ରକାର ସମାଧିର ଉପାଯ଼ ବର୍ଣ୍ଣନା କରି ଶେଷକୁ ନାଦାନୁସନ୍ଧାନ ରୂପକ ଉପାଯ଼ କହୁଛନ୍ତି—ମୂର୍ଖତ୍ୱ ହେତୁ ଯେଉଁମାନେ ତତ୍ତ୍ୱଜ୍ଞାନ ଅର୍ଜନରେ ଅକ୍ଷମ ସେମାନଙ୍କର ମଧ୍ୟ ପ୍ରିଯ଼ ଅଭିମତ ଏହି ନାଦାନୁଚିନ୍ତନ ରୂପ ମହାଯୋଗ ଗୋରକ୍ଷନାଥ କହିଛନ୍ତି ।

ଶ୍ରୀଶଙ୍କର ଭଗବାନ୍ ସଉଆ କୋଟି (ସଉଆ ଅର୍ଥ ଚଉଠା) ଲଯ଼ଯୋଗର ପ୍ରକାର କହିଛନ୍ତି । ତାହା ମଧ୍ୟରେ ସର୍ବୋତ୍ତମ ଏକମାତ୍ର ନାଦାନୁସନ୍ଧାନ ହିଁ ଲଯ଼ସାଧନ ମଧ୍ୟରେ ଅତିଶଯ଼ ମୁଖ୍ୟତମ ବୋଲି ଆମେ ମନେକରୁ ।

ଯୋଗୀ ସିଦ୍ଧାସନରେ ଉପବେଶନ କରି ଅନ୍ତର୍ଲକ୍ଷ୍ୟ ବହିର୍ଦୃଷ୍ଟି ଏହି ସାମ୍ଭବୀ ମୁଦ୍ରା କରି ଏକାଗ୍ରଚିତ୍ତରେ ଦକ୍ଷିଣ କର୍ଣ୍ଣରେ ଦେହ ମଧ୍ୟସ୍ଥିତ ସୁଷୁମ୍ନାରେ ବର୍ତ୍ତମାନ ନାଦ ଶ୍ରବଣ କରିବେ ।

ପରାଙ୍ମୁଖୀ ମୁଦ୍ରାଦ୍ୱାରା ନାଦ ସ୍ପଷ୍ଟ ଶ୍ରୁତିଗୋଚର ହୁଏ । ସମସ୍ତ ଯୋଗରେ ହିଁ ଆରମ୍ଭ, ଘଟ, ପରିଚୟ ନିଷ୍ପତ୍ତି ରୂପକ ଅବସ୍ଥା-ଚତୁଷ୍ଟୟ ଅଛି ।

ଯେତେବେଳେ ଅନାହତ ଚକ୍ରରେ ବର୍ତ୍ତମାନ ବ୍ରହ୍ମଗ୍ରନ୍ଥିର ଭେଦ ହୁଏ, ସେତେବେଳେ ହୃଦୟାକାଶରେ ଉତ୍ପନ୍ନ ଆନନ୍ଦଜନକ ନାନାବିଧ ଭୂଷଣ-ଶବ୍ଦ ପରି ସ୍ୱତ ଉତ୍ଥିତ ନାଦ କର୍ଣ୍ଣଗୋଚର ହୋଇଥାଏ ।

ହୃଦୟ କଣ୍ଠ ଏବଂ ଭ୍ରୂମଧ୍ୟସ୍ଥିତ ଆକାଶ ଯଥାକ୍ରମେ ଶୂନ୍ୟ ଅତିଶୂନ୍ୟ ଏବଂ ମହାଶୂନ୍ୟ ନାମରେ କଥିତ ହୁଏ । ହୃଦୟାକାଶରେ ନାଦ ଆରମ୍ଭ ହେଲେ ଆନନ୍ଦପୂର୍ଣ୍ଣ ହୃଦୟ ଦିବ୍ୟ ରୂପଲାବଣ୍ୟସମ୍ପନ୍ନ ପ୍ରତାପବାନ୍ ଏବଂ ଉତ୍ତମ ଗନ୍ଧବାନ୍ ରୋଗଶୂନ୍ୟ ହୁଅନ୍ତି ।

ଦ୍ୱିତୀୟ ଘଟାବସ୍ଥାରେ ପ୍ରାଣ ଅଗ୍ନି ସହିତ ନାଦବିନ୍ଦୁ ଏକୀଭୂତ କରି କଣ୍ଠଚକ୍ରରେ ଉପସ୍ଥିତ ହେଲେ ଯୋଗୀ ଦୃଢ଼ାସନ ଦେବତୁଲ୍ୟ ପୂର୍ବାପେକ୍ଷା କୁଶଳ ବୁଦ୍ଧିସମ୍ପନ୍ନ ହୋଇଥାନ୍ତି । ବ୍ରହ୍ମଗ୍ରନ୍ଥି ଭେଦପରେ କଣ୍ଠସ୍ଥିତ ବିଷ୍ଣୁଗ୍ରନ୍ଥି ଭେଦ ହେଲେ ସେଠାରେ ବ୍ରହ୍ମାନନ୍ଦ ସୂଚକ ଅନେକ ପ୍ରକାର ବିମର୍ଦ୍ଦ ମଡ଼ ମଡ଼ ଶବ୍ଦ ଭେରୀ ଅର୍ଥାତ୍ ବଡ଼ ଢକ୍କା ନାଗରା ପରି ଶବ୍ଦ ଏହି ସମୟରେ ହୋଇ-ଥାଏ ।

ତୃତୀୟ ପରିଚୟ ଅବସ୍ଥାରେ ଭ୍ରୂମଧ୍ୟାକାଶରେ ମାଦଳ ଶବ୍ଦ ପରି ନାଦ ବିଶେଷ ଭାବରେ କର୍ଣ୍ଣଗୋଚର ହୁଏ । ସେହି ଅବସ୍ଥାରେ ଅଣିମାଦି ସିଦ୍ଧିସମୂହର ସ୍ଥାନ ମହାଶୂନ୍ୟ ଭ୍ରୂମଧ୍ୟାକାଶରେ ଯେ ରୁଦ୍ର-

ଗ୍ରନ୍ଥି ତାହା ଭେଦ କରି ଈଶ୍ୱରଙ୍କ ପୀଠ ଭ୍ରୂମଧ୍ୟକୁ ଯେତେବେଳେ ପ୍ରାଣ ଗମନ କରେ ସେତେବେଳେ ନାଦଶ୍ରୁତି ଜନିତ ଆନନ୍ଦକୁ ଅତିଭୂତ କରି ଆତ୍ମସୁଖର ଆବିର୍ଭାବ ହୁଅନ୍ତି, ଯୋଗୀ ଦୋଷ ଦୁଃଖ ଜରା ବ୍ୟାଧି କ୍ଷୁଧା ନିଦ୍ରା ବିବର୍ଜିତ ହୁଅନ୍ତି ।

ବ୍ରହ୍ମରନ୍ଧ୍ରକୁ ପ୍ରାଣଗମନ କଲେ ନିଷ୍ପତ୍ତି ଅବସ୍ଥା ହୁଏ, ସେତେବେଳେ ବେଣୁ ଓ ବୀଣା ଧ୍ୱନି ତୁଲ୍ୟ ନାଦ ଶୁଣିବାକୁ ମିଳେ । ସେତେବେଳେ ଚିତ୍ତ ଏକୀଭୂତ ହୋଇଯାଏ—ତାହାର ନାମ ରାଜଯୋଗ । ଏହି ନାଦାନୁସନ୍ଧାନକାରୀ ଯୋଗୀ ସୃଷ୍ଟି ସଂହାର କର୍ତ୍ତା ଈଶ୍ୱରଙ୍କ ତୁଲ୍ୟ ହୁଅନ୍ତି । ମୁକ୍ତି ହେଉ ବା ନ ହେଉ, ନାଦାନୁସନ୍ଧାନରେ ଅଖଣ୍ଡ ସୁଖ ରାଜଯୋଗରୁ ମିଳେ ।

ଉନ୍ମନୀ ଅବସ୍ଥା ଲାଭ ପାଇଁ ଭ୍ରୂଧ୍ୟାନ କରିବା ସ୍ୱାତ୍ମାରାମ ଯୋଗୀଙ୍କର ଅଭିମତ, ଅଲ୍ପବୁଦ୍ଧିଗଣଙ୍କର ମଧ୍ୟ ରାଜଯୋଗପ୍ରାପ୍ତିର ସୁଖସାଧ୍ୟ ଉପାୟ—ନାଦରୁ ଚିତ୍ତଲୟ, ଏହା ଶୀଘ୍ର ପ୍ରତ୍ୟକ୍ଷକର ହୋଇଥାଏ ।

ନାଦାନୁସନ୍ଧାନକାରୀ ଯୋଗୀଶ୍ୱରଗଣଙ୍କ ହୃଦୟରେ ବୃଦ୍ଧି-ଶୀଳ ଅନିର୍ବଚନୀୟ ସେହି ଆନନ୍ଦ ଏକମାତ୍ର ଶ୍ରୀଗୁରୁଦେବ ହିଁ ଜାଣନ୍ତି । ନାଦାନୁସନ୍ଧାନର ଆନନ୍ଦ ଶ୍ରୀଗୁରୁଦେବଙ୍କର ଦୟାରେ ହିଁ ପ୍ରକାଶିତ ହୋଇଥାଏ ।

ଯୋଗୀ ହସ୍ତଦ୍ୱାରା କର୍ଣ୍ଣ ରୁଦ୍ଧପୂର୍ବକ ଧ୍ୱନି ଶ୍ରବଣ କରି ଯେ ପର୍ଯ୍ୟନ୍ତ ତୂର୍ଯ୍ୟାବସ୍ଥା ନ ହେବ, ସେ ପର୍ଯ୍ୟନ୍ତ ଅସ୍ଥିର ଚିତ୍ତକୁ ସ୍ଥିର କରିବେ ।

ଚିନ୍ତ୍ୟମାନ ଏହି ନାଦ ବାହ୍ୟ ଶବ୍ଦକୁ ଆବରଣ କରେ । ଯୋଗୀ ଏକ ପକ୍ଷ ମଧ୍ୟରେ ସମସ୍ତ ଚିତ୍ତଚାଞ୍ଚଲ୍ୟକୁ ଜୟ କରି ଆତ୍ମା-ନନ୍ଦ ରୂପ ସୁଖ ପ୍ରାପ୍ତ ହୁଅନ୍ତି । ପ୍ରଥମ ଅଭ୍ୟାସ ବେଳେ ବହୁବିଧ

ମହାଧ୍ୱନି ଶ୍ରୁତିଗୋଚର ହୁଏ, ଅନନ୍ତର ଅଭ୍ୟାସ ବୃଦ୍ଧିଶୀଳ ହେଲେ ସୂକ୍ଷ୍ମ ସୂକ୍ଷ୍ମ ନାଦ ଶୁଣିବାକୁ ମିଳେ । ପ୍ରଥମେ ସମୁଦ୍ର କଲ୍ଲୋଳ, ମେଘ ଗର୍ଜ୍ଜନ, ଭେରୀ ଝର୍ଝର; ମଧ୍ୟରେ ବ୍ରହ୍ମରନ୍ଧ୍ରରେ ବାୟୁ ସ୍ଥିର ହେଲେ ମାଦଳ, ଶଙ୍ଖଧ୍ୱନି, ଘଣ୍ଟା (କାହଳ) ଢୋଲ ଶବ୍ଦପରି ନାଦ ଏବଂ ଶେଷକୁ ଅର୍ଥାତ୍ ବ୍ରହ୍ମରନ୍ଧ୍ରରେ ବାୟୁ ସ୍ଥିର ହେଲେ କ୍ଷୁଦ୍ର ଘଣ୍ଟିକା (ଘୁଙ୍ଗୁର), ବେଣୁବୀଣା, ତନ୍ତ୍ରୀ, ଭ୍ରମରଧ୍ୱନି ପରି ଦେହମଧ୍ୟସ୍ଥ ନାନା-ବିଧ ନାଦ ଯୋଗୀ ଶ୍ରବଣ କରନ୍ତି । ମେଘ ଭେରୀ ଆଦି ମହାଧ୍ୱନି ଶ୍ରୂୟମାଣ ହେଲେ ସେହି ନାଦ ମଧ୍ୟରେ ସୂକ୍ଷ୍ମ ଅତିସୂକ୍ଷ୍ମନାଦ ଚିନ୍ତା କରିବ ।

ଶିଷ୍ୟ—ନାଦବିନ୍ଦୁ-ଶ୍ରୁତିରେ ମଧ୍ୟ ଠିକ୍ ଏହିପରି କହିଛନ୍ତି ।

ଗୁରୁ—ହଁ—ମହାନାଦ ତ୍ୟାଗ କରି ସୂକ୍ଷ୍ମ ନାଦରେ, ସୂକ୍ଷ୍ମ-ନାଦ ତ୍ୟାଗପୂର୍ବକ ମେଘ ଭେରୀ ପ୍ରଭୃତି ମହାନାଦରେ କ୍ରୀଡ଼ାକାଙ୍କ୍ଷୀ ମନକୁ ବିଷୟାନ୍ତରକୁ ଗମନ କରିବ ନାହିଁ । ଅର୍ଥାତ୍ ବିଷୟାନ୍ତରକୁ ଗଲେ ଚିତ୍ତ ସମାହିତ ହେବନାହିଁ, ଯେ କୌଣସି ନାଦରେ ରମମାଣ ହେଲେ ମଧ୍ୟ ପ୍ରମାହିତ ହୋଇଯିବ ।

ଅଥବା ଯେଉଁ ନାଦରେ ମନ ପ୍ରଥମେ ଲଗ୍ନ ହେବ, ସେହି ନାଦ ସହିତ ସୁସ୍ଥିର ହୋଇ ବିଲୀନ ହୋଇଯିବ । ମଧୁପାନ କରୁ କରୁ ଭ୍ରମର ଯେପରି ଗନ୍ଧପାଇଁ ଅପେକ୍ଷା କରେ ନାହିଁ, ସେହିପରି ନାଦାସକ୍ତ ଚିତ୍ତ ଭୋଗ୍ୟବିଷୟ କାମନା କରେ ନାହିଁ । ବିଷୟୋ-ଦ୍ୟାନଚାରୀ ମନୋରୂପକ ମତ୍ତ ଗଜେନ୍ଦ୍ରର ଶାସନପାଇଁ ନାଦ ହିଁ ନିଶ୍ଚିତ ଅଙ୍କୁଶ । ଏହି ସ୍ଥାନରେ ପ୍ରତ୍ୟାହାର କଥିତ ହୋଇଅଛି—

ଇନ୍ଦ୍ରିୟାଣାଂ ବିଷୟେଭ୍ୟଃ ପ୍ରତ୍ୟାହରଣଂ ପ୍ରତ୍ୟାହାରଃ ।

ନାଦରୂପକ ବନ୍ଧନ ସାଧନ ଦ୍ୱାରା ବଦ୍ଧ ହୋଇ ଛିନ୍ନପକ୍ଷ ପକ୍ଷୀପରି ଚପଳତା ତ୍ୟାଗପୂର୍ବକ ସ୍ଥିରତା ପ୍ରାପ୍ତ ହୁଏ । ଏହି ସ୍ଥାନରେ ଧାରଣା କୁହାଯାଇଅଛି—

ଶୁଭାଶ୍ରଯେ଼ ଚିତ୍ତସ୍ଥାପନଂ ଧାରଣା ।

ସମସ୍ତ ବାହ୍ୟାନ୍ତର ଚିନ୍ତା ପରିତ୍ୟାଗପୂର୍ବକ ସାବଧାନ ଏକାଗ୍ର ଚିତ୍ତରେ ଯୋଗ-ସାମ୍ରାଜ୍ୟ ରାଜଯୋଗ-ଅଭିଳାଷୀ ଯୋଗୀଙ୍କର କେବଳମାତ୍ର ନାଦ ହିଁ ଅନୁଚିନ୍ତନ କରିବା କର୍ତ୍ତବ୍ୟ, ଅର୍ଥାତ୍ ନାଦାକାର ବୃତ୍ତିପ୍ରବାହ କରଣୀୟ । ଏହି ସ୍ଥଳରେ ଧ୍ୟାନ କୁହାଯାଇଅଛି—

ତତ୍ର ପ୍ରତ୍ୟଯୈ଼କତାନତା ଧ୍ୟାନମ୍ ।

ଯୋଗୀଗଣଙ୍କର ମନରୂପକ ଚଞ୍ଚଳ ଅଶ୍ୱପାଇଁ ନାଦହିଁ ଅଶ୍ୱଶାଳାର ଦ୍ୱାର ଅର୍ଗଳ ସ୍ୱରୂପ । ଏହି ହେତୁରୁ ଯୋଗୀଙ୍କର ନିତ୍ୟ ନାଦୋପାସନା କରିବା କର୍ତ୍ତବ୍ୟ ।

ନାଦରୂପକ ଗନ୍ଧକ ସମ୍ବନ୍ଧଦ୍ୱାରା ଗୃଞ୍ଚଲ୍ୟ ହରଣ ହେତୁ ବଦ୍ଧ ଅର୍ଥାତ୍ ଏକମାତ୍ର ନାଦାସକ୍ତ ମନ, ପାରଦପକ୍ଷରେ ଗୋଟିକାକୃତି ପ୍ରାପ୍ତ, ଏହି ହେତୁ ତ୍ୟକ୍ତ ଚପଳ୍ୟ ଅର୍ଥାତ୍ ବିଷୟାକାରପରିଣାମ ପକ୍ଷରେ ଲୌଳ୍ୟ—ମନହିଁ ପାରଦ ନିରାଲମ୍ବ ନାମକ ବ୍ରହ୍ମାକାଶକୁ ଗମନ କରେ, ପାରଦପକ୍ଷରେ ଆକାଶ ଗମନ କରିଥାଏ । ଯେପରି ବଦ୍ଧ ପାରଦ ଆକାଶକୁ ଗମନ କରେ ସେହିପରି ବଦ୍ଧ ମନ ବ୍ରହ୍ମାକାରବୃତ୍ତିପ୍ରବାହ ଅବିଚ୍ଛିନ୍ନ କରିଥାଏ ।

ନାଦ ଶ୍ରବଣ ହେତୁ ମନରୂପକ ସର୍ପ ଶୀଘ୍ର ସମସ୍ତ ବିସ୍ମୃତ ହୋଇ କୌଣସି ସ୍ଥାନକୁ ଧାବିତ ହୁଏ ନାହିଁ । ସର୍ପ ଯେପରି ଚପଳ ଓ ନାଦପ୍ରିୟ ମନ ମଧ୍ୟ ସେହିପରି । ଏହି ଶ୍ଳୋକରେ ସମାଧି

କୁହାଯାଇଅଛି—ତଦେବାର୍ଥମାତ୍ରନିର୍ଭାସଂ ସ୍ୱରୂପ ଶୂନ୍ୟ ମିବ ସମାଧିଃ—ପାତଞ୍ଜଳୋକ୍ତ ସମ୍ପ୍ରଜ୍ଞାତ ସମାଧି ।

କାଷ୍ଠରେ ପ୍ରଜ୍ୱଳିତ ଅଗ୍ନି ଯେପରି କାଷ୍ଠ ସହିତ ଉପଶମିତ ହୁଏ, ସେହିପରି ନାଦରେ ପ୍ରବର୍ତ୍ତିତ ଚିତ୍ତ ନାଦ ସହିତ ଲୀନ ହୋଇଯାଏ ।

ଘଣ୍ଟା ଶଙ୍ଖ ମର୍ଦ୍ଦଳ ଝର୍ଝର ଦୁନ୍ଦୁଭି ପ୍ରଭୃତି ନାଦରେ ଆସକ୍ତ ନିଶ୍ଚଳ ମନରୂପକ ହରିଣର ପ୍ରହରଣ ନାନା ବୃତ୍ତି ପ୍ରତିବନ୍ଧ ଅନ୍ତଃ-କରଣ ପକ୍ଷରେ, ହରିଣ ପକ୍ଷରେ ହନନ ଶର ପର ଦ୍ରୁତଗାମୀ ବାୟୁର ସନ୍ଧାନ ସୁଷୁମ୍ନାମାର୍ଗରେ ବ୍ରହ୍ମରନ୍ଧ୍ରରେ ନିରୋଧନ, ହରିଣ ପକ୍ଷରେ ବାଣର ସନ୍ଧାନ ଧନୁରେ ଯୋଜନ—ସେଥିରେ ଯଦି ନିପୁଣ ହୁଅନ୍ତି ତାହାହେଲେ ସୁଖରେ ମନୋରୂପକ ହରିଣକୁ ସଂହାର କରିବାକୁ ସମର୍ଥ ହେବେ ।

ଅନାହତ ଶବ୍ଦର ଯେଉଁ ଧ୍ୱନି ଶ୍ରୁତିଗୋଚର ହୁଏ ସେହି ଧ୍ୱନିର ଅନ୍ତର୍ଗତ ଜ୍ଞେୟ ଅର୍ଥାତ୍ ଜ୍ୟୋତି ସ୍ୱପ୍ରକାଶ ଚୈତନ୍ୟଜ୍ୟୋତିର ଅନ୍ତର୍ଗତ ମନ, ସେହି ଜ୍ୟୋତିରେ ମନ ବିଲୁପ୍ତ ହୁଏ—ତାହାହିଁ ବିଷ୍ଣୁଙ୍କର ପରମପଦ ।

ଯେ ପର୍ଯ୍ୟନ୍ତ ଅନାହତ ଧ୍ୱନି ଶୁଣାଯାଏ, ସେ ପର୍ଯ୍ୟନ୍ତ ଆକାଶର ସମ୍ୟକ୍ କଳ୍ପନା ହୁଏ । ଦୟାଲ ମହାରାଜ କହନ୍ତି:—ଯେତେଦିନ ପର୍ଯ୍ୟନ୍ତ ଅନାହତ ଧ୍ୱନି ଶୁଣାଯାଏ, ସେତେଦିନ ପର୍ଯ୍ୟନ୍ତ ଆକାଶ ପର ହୋଇ ରହି ହୁଏ । ଆକାଶର ଗୁଣ ଶବ୍ଦ । ଶବ୍ଦ ଶୁଣିବାକୁ ଗୁଣୀର ଭାବ ଆସିଯାଏ । ଶବ୍ଦର ଆକାଶ ଗୁଣତ୍ୱହେତୁ ଅଥବା ଗୁଣ ଓ ଗୁଣୀର ଅଭେଦ ହେତୁ ମନ ସହିତ ଶବ୍ଦର ବିଲୟ ପାଇଁ ଶବ୍ଦରହିତ ଯେଉଁ ପରବ୍ରହ୍ମ ସେହିହିଁ ପରମାତ୍ମା ଶବ୍ଦଦ୍ୱାରା କଥିତ ହୁଅନ୍ତି ।

ଯାହା କିଛି ନାଦରୂପେ ଶୁଣାଯାଏ ତାହାହିଁ ଶକ୍ତି, ଯେଉଁଥିରେ ତତ୍ତ୍ୱ ସମସ୍ତର ଲୟ ହୁଏ ସେ ନିରାକାର—ସେହି ହେଉଛନ୍ତି ପରମେଶ୍ୱର । ସର୍ବବୃତ୍ତି କ୍ଷୟ ହେଲେ ଯେ ସ୍ୱରୂପରେ ଅବସ୍ଥିତ ହୁଅନ୍ତି ସେ ଆତ୍ମା ।

ସର୍ବଦା ନାଦାନୁସନ୍ଧାନ ଦ୍ୱାରା ପାପସମୂହ ନାଶ ହୁଏ, ନିରଞ୍ଜନ ଅର୍ଥାତ୍ ନିର୍ଗୁଣ ଚୈତନ୍ୟରେ ମନ ଏବଂ ପ୍ରାଣ ଅବଶ୍ୟ ହିଁ ଲୀନ ହୋଇଯାଏ ।

ଉନ୍ମନୀ ଅବସ୍ଥାପ୍ରାପ୍ତ ଯୋଗୀ ଶଙ୍ଖ ଦୁନ୍ଦୁଭି ପ୍ରଭୃତି କୌଣସି ନାଦ କେତେବେଳେ ହେଲେ ଶୁଣନ୍ତି ନାହିଁ । ଦେହ କାଷ୍ଠ ପରି ନିଶ୍ଚେଷ୍ଟ ହୋଇ ଯାଇଥାଏ ।

ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ମୂର୍ଚ୍ଛା ମରଣ—ଏହି ପଞ୍ଚବୃତ୍ତିଯୁକ୍ତ ଅବସ୍ଥା ବିଶେଷ ଭାବରେ ରହିତ କରି ସର୍ବଚିନ୍ତାବିବର୍ଜିତ ଯେଉଁ ଯୋଗୀ ମୃତ ପରି ଅବସ୍ଥାନ କରନ୍ତି, ସେ ମୁକ୍ତ—ଏ ସମ୍ବନ୍ଧରେ କିଛି ସଂଶୟ ନାହିଁ ।

ଶିଷ୍ୟ—ଏଗୁଡ଼ିକ ନୂଆ ଶୁଣୁଛି ।

ଗୁରୁ—ଆହୁରି ଶୁଣ ।

ସମାଧିଯୁକ୍ତ ଯୋଗୀଙ୍କୁ ମୃତ୍ୟୁ ଭକ୍ଷଣ କରେ ନାହିଁ । ଶୁଭାଶୁଭ କର୍ମରେ ଜନ୍ମମରଣାଦି କ୍ଳେଶ ହୁଏ ନାହିଁ । କୌଣସି ପୁରୁଷ ଦ୍ୱାରା ଅଥବା ଯନ୍ତ୍ର-ମନ୍ତ୍ରାଦି ଦ୍ୱାରା ସେ ଜେୟ ବା ନିବର୍ତ୍ତୀମୟ ହୁଅନ୍ତି ନାହିଁ ।

ସମାଧିଯୁକ୍ତ ଯୋଗୀ ଗନ୍ଧରସ ରୂପ ସ୍ପର୍ଶ ବାହ୍ୟ ଆଭ୍ୟନ୍ତର ଶବ୍ଦ ଆପଣା ଦେହ ଓ ପରର ଦେହ ଆଦି କିଛି ଜାଣି ପାରନ୍ତି ନାହିଁ ।

ପ୍ରସନ୍ନେନ୍ଦ୍ରିୟ ଅନ୍ତଃକରଣ ଜାଗ୍ରତ ଅବସ୍ଥାରେ ଯେଉଁ ଯୋଗୀ ସୁପ୍ତ ପରି ଅବସ୍ଥାନ କରନ୍ତି ଏବଂ ନିଃଶ୍ୱାସ-ଉଚ୍ଛ୍ୱାସହୀନ ଅଟନ୍ତି, ସେ ନିଶ୍ଚିତ ମୁକ୍ତ—ଜୀବନ୍ମୁକ୍ତ ।

ସମାଧିଯୁକ୍ତ ଯୋଗୀ ଶସ୍ତ୍ରଦ୍ୱାରା ଅବଧ, ଦେବଗଣ ତାଙ୍କୁ ବଳଦ୍ୱାରା ଜୟ କରିବାକୁ ସମର୍ଥ ନୁହନ୍ତି, ବଶୀକରଣ ଆଦିରେ ତାଙ୍କୁ କେହି ବଶ କରିପାରେ ନାହିଁ ।

ଶିଷ୍ୟ—ସମାଧିସ୍ଥ ଯୋଗୀ ମୃତବତ୍ ହୁଅନ୍ତି । ଶ୍ୱାସ ପ୍ରଶ୍ୱାସ ଆଦି କୌଣସି କ୍ରିୟା ନ ଥାଏ—ତା ହେଲେ ସମାଧିସ୍ଥ କି ମୃତ ଏହାର ପ୍ରଭେଦ କିପରି ଭାବରେ ନିର୍ଣ୍ଣୟ କରାଯାଏ ?

ଗୁରୁ—ମୃତ ବ୍ୟକ୍ତିର ଶରୀରରୁ ଗନ୍ଧ ନିର୍ଗତ ହୁଏ, ଯୋଗୀର ତାହା ହୁଏ ନାହିଁ ଏବଂ ଦେହ କାନ୍ତିର କୌଣସି ବିକୃତି ହୁଏ ନାହିଁ । ଏଥିପାଇଁ ଯେ ପର୍ଯ୍ୟନ୍ତ ଶରୀରରୁ ଗନ୍ଧ ନିର୍ଗତ ନ ହୋଇଛି, ସେ ପର୍ଯ୍ୟନ୍ତ ଯୋଗୀଙ୍କ ଦେହ ମାଟିରେ ପୋତିବା ବା ପାଣିରେ ଭସାଇ ଦେବାକୁ ମନା । ଦୁଇ ଚାରିଦିନ ତ ସାମାନ୍ୟ କଥା ବର୍ତ୍ତମାନ ମଧ୍ୟ ୩୦।୪୦ ଦିନ ପର୍ଯ୍ୟନ୍ତ ସମାହିତ ଯୋଗୀଙ୍କ କଥା ଶୁଣାଯାଏ । ଅବଶ୍ୟ ମୁଁ ହିମାଳୟସ୍ଥିତ ଯୋଗୀଗଣଙ୍କ କଥା କହୁ-ନାହିଁ । ସେମାନେ ବହୁବର୍ଷ ଧରି ସମାଧିସ୍ଥ ହୋଇ ରହନ୍ତି ।

ହଠଯୋଗପ୍ରଦୀପିକାର ଶେଷ ଶ୍ଳୋକ:—

ଯାବନ୍ନୈବ ପ୍ରବିଶତି ଚରନ୍ମାରୁତୋ ମଧ୍ୟମାର୍ଗେ
ଯାବଦ୍ ବିନ୍ଦୁର୍ନ ଭବତି ଦୃଢ଼ଃ ପ୍ରାଣବାତପ୍ରବନ୍ଧାତ୍ ।
ଯାବଦ୍‌ଧ୍ୟାନେ ସହଜ ସଦୃଶଂ ଜାୟତେ ନୈବ ତତ୍ତ୍ୱଂ
ତାବଦ୍ ଜ୍ଞାନଂ ବଦତି ତଦିଦଂ ଦମ୍ଭମିଥ୍ୟା ପ୍ରଳାପଃ ॥ ୧୧୪

ଯେ ପର୍ଯ୍ୟନ୍ତ ସୁଷୁମ୍ନାରେ ପ୍ରାଣବାୟୁ ବିଚରଣ ପୂର୍ବକ ବ୍ରହ୍ମରନ୍ଧ୍ରକୁ ଗମନ କରି ସ୍ଥିର ନ ହୁଏ, ଯେ ପର୍ଯ୍ୟନ୍ତ କୁମ୍ଭକ

ଦ୍ୱାରା ପ୍ରାଣବାୟୁର ସ୍ଥିରକରଣ ହେତୁ ଖାଁଟି ଦୃଢ଼ ଅଚଞ୍ଚଳ ନ ହୁଏ ଯାବତ୍ ଚିତ୍ତ ସହଜ ସଦୃଶ ସ୍ୱାଭାବିକ ଧ୍ୟେୟାକାର ବୃତ୍ତିପ୍ରବାହମୟ ନ ହୁଏ, ସେ ପର୍ଯ୍ୟନ୍ତ ଯାହା କେବଳ ଜ୍ଞାନ ଶବ୍ଦ ବ୍ରହ୍ମାସ୍ମି ସୋଽହଂ ଇତ୍ୟାଦି କୁହେ, ଅର୍ଥାତ୍ ମୁଁ ଜ୍ଞାନୀ ଏହି ଅଭିମାନ କରେ, ତାହା ମିଥ୍ୟାଦମ୍ଭ ପ୍ରଳାପ—ଜ୍ଞାନ କଥନ ଦ୍ୱାରା ମୁଁ ଜଗତରେ ପୂଜ୍ୟ ହେବି—ଏହି ବୁଦ୍ଧିରେ ଦମ୍ଭପୂର୍ବକ ମିଥ୍ୟାଭାଷଣ ।

ଶିଷ୍ୟ—ଅସମ୍ପ୍ରଜ୍ଞାତ ସମାଧି ନ ହେବା ପର୍ଯ୍ୟନ୍ତ କେବଳ ତାହେଲେ ଊର୍ଦ୍ଧ୍ୱରେତା ହୋଇ ପାରନ୍ତି ନାହିଁ ?

ଗୁରୁ—ନା ।

ଚଳତ୍ୟେଷ ଯଦା ବାୟୁସ୍ତଦା ବିନ୍ଦୁଶ୍ଚଳସ୍ମୃତଃ ।
ବିନ୍ଦୁଶ୍ଚଳତି ଯସ୍ୟାଙ୍ଗେ ଚିତ୍ତଂ ତସ୍ୟୈବ ଚଞ୍ଚଳମ୍ ॥
ଚଳେ ବିନ୍ଦୌ ଚଳେ ଚିତ୍ତେ ଚଳେ ବାୟୌ ଚ ସର୍ବଦା ।
ଜାୟତେ ମ୍ରିୟତେ ଲୋକଃ ସତ୍ୟଂ ସତ୍ୟମିଦଂ ବଚଃ ॥
ଅମୃତସିଦ୍ଧୌ

ଯାମବସ୍ଥାଂ ବ୍ରଜେଦ୍‌ବାୟୁର୍ବିନ୍ଦୁସ୍ତାମଭିଗଚ୍ଛତି ।
ଯଥା ହି ସାଧ୍ୟତେ ବାୟୁସ୍ତଥା ବିନ୍ଦୁ ପ୍ରସାଧନମ୍ ॥
ମୂର୍ଚ୍ଛିତୋ ହରତି ବ୍ୟାଧିଂ ବଦ୍ଧଂ ଖେଚରତାଂ ନୟେତ୍ ।
ସର୍ବସିଦ୍ଧିକରୋ ଲୀନୋ ନଷ୍ଟଲୋ ମୁକ୍ତିଦାୟକଃ ॥

ଶିଷ୍ୟ—ଦେଖୁଛି ବାୟୁ ସ୍ଥିର ନ ହେଲେ କିଛି ହେବନାହିଁ ।

ଗୁରୁ— ନାଦବ୍ରହ୍ମର ଉପାସକଗଣଙ୍କର ସ୍ଥିର ଅସ୍ଥିର ବାୟୁ ପାଇଁ ଚିନ୍ତା କରିବାକୁ ହୁଏ ନାହିଁ, ନାଦବ୍ରହ୍ମ ଧ୍ୟାନ କରୁ କରୁ ବାୟୁ ସ୍ୱତଃ ହିଁ ଲୟ ହୋଇଯାଏ । ଏହାପରେ ତୁମକୁ ଲୟଯୋଗ-ସଂହିତା କଥିତ ନାଦ କଥା କହିବି ।

ନଷ୍ଟେନ୍ନ ଶ୍ରୂୟତେ ନାଦଃ ପ୍ରତ୍ୟାହାରସ୍ୟ ସାଧନେ ।
ଅନ୍ତର୍ଜଗତ୍ ପ୍ରବେଶାୟ ସ ସ୍ୟାଦ୍ ରାଜପଥୋପମଃ ॥ ୧୫

ପ୍ରତ୍ୟାହାର ବର୍ଣ୍ଣନାରେ ଯମ ନିୟମ ଆସନ ପ୍ରାଣାୟାମ ଆଦି ସାଧନା କରିବାପରେ ପ୍ରତ୍ୟାହାର ସାଧନନିଷ୍ପନ୍ନ—ସିଦ୍ଧିସମ୍ପନ୍ନ—ହେଲେ ନାଦ ଶ୍ରୂତିଗୋଚର ହୁଏ, ସେହି ନାଦ ଅନ୍ତର୍ଜଗତରେ ପ୍ରବେଶ ପାଇଁ ରାଜପଥତୁଲ୍ୟ ।

ମନୋନ୍ମନେ୍ୟ ମନସ୍ତୁଭ୍ୟଂ ମହାଶକ୍ତ୍ୟେ ଚିଦାତ୍ମନେ ।
ଅଶକ୍ୟତତ୍ତ୍ୱବୋଧାନାଂ ମୂଢ଼ାନାମପି ସମ୍ମତମ୍ ॥

ମନୋନ୍ମନୀ ମହାଶକ୍ତି ଚିଦାତ୍ମାଙ୍କୁ ନମସ୍କାର । ତତ୍ତ୍ୱବୋଧରେ ଅସମର୍ଥ ମୂର୍ଖଗଣଙ୍କର ପକ୍ଷ ନାଦାନୁସନ୍ଧାନ ପ୍ରିୟ ଅଭିମତ ।

ହଠଯୋଗପ୍ରଦୀପିକାରେ କଥିତ ନାଦାନୁସନ୍ଧାନ ପ୍ରକାର ହିଁ କହୁଛନ୍ତି—ଅଧିକନ୍ତୁ—

ପ୍ରତ୍ୟାହାରାଦା ସମାଧେର୍ନାଦଭୂମିଃ ପ୍ରକୀର୍ତ୍ତିତା ।
ନାଦଶ୍ରୂତେଃ କମୋନ୍ମେଷୋ ଜାୟତେ କମଶସ୍ତତଃ ॥
ଅନ୍ତର୍ଜଗଦଗ୍ରସରାଃ ସାଧକାଃ ସ୍ୟୁର୍ଯଥା ଯଥା ।
ନାଦ ଏବ ମହଦ୍‌ବ୍ରହ୍ମ ପରମାତ୍ମା ପରଃ ପୁମାନ୍ ॥

ପ୍ରତ୍ୟାହାରଠାରୁ ଧାରଣା ଧ୍ୟାନ ସମାଧି ପର୍ଯ୍ୟନ୍ତ ନାଦର ଭୂମି, ସାଧକ ଯେତେ ଯେତେ ଅନ୍ତର୍ଜଗତକୁ ଅଗ୍ରସର ହୁଅନ୍ତି, ନାଦ-ଶ୍ରବଣର ଅବଚ୍ଛେଦ ପ୍ରକାଶ ଉତ୍ପନ୍ନ ହୁଏ, ସେଥିରୁ କମେ ସାଧକ ଧାରଣାଦି ଭୂମିରୂପକ ଅନ୍ତର୍ଜଗତକୁ ଅଗ୍ରସର ହୁଅନ୍ତି ।

ସ୍ଥୂଳଧ୍ୟାନାଚ୍ଛତଗୁଣଂ ଜ୍ୟୋତିର୍ଧ୍ୟାନଂ ବଶିଷ୍ୟତେ ।
ତତୋଽପି ବିନ୍ଦୁଧ୍ୟାନସ୍ୟ ଫଳଂ ଶତଗୁଣଂ ଭବେତ୍ ॥

ସ୍ଥୂଳଧ୍ୟାନଠାରୁ ଜ୍ୟୋତିର୍ଧ୍ୟାନ ଶତଗୁଣବିଶିଷ୍ଟ ହୁଏ, ତାହା-ଠାରୁ ବିନ୍ଦୁଧ୍ୟାନ ଶତଗୁଣ । ଅତି ସୂକ୍ଷ୍ମତମ ବିନ୍ଦୁଧ୍ୟାନ ଯତ୍ନସହକାରେ ଗୋପନ କରିବା କର୍ତ୍ତବ୍ୟ ।

କୃପୟା ଗୁରୁଦେବସ୍ୟ ମହାମାୟାପ୍ରସାଦତଃ ।
ବିନ୍ଦୋର୍ଧ୍ୟାନସ୍ୟୋପଲବ୍ଧିର୍ଜାୟତେ ସାଧକସ୍ୟ ବୈ । ୧୨

ଧ୍ୟାନବର୍ଣ୍ଣନ

ଶ୍ରୀଗୁରୁଦେବଙ୍କ କୃପାରୁ ମହାମାୟାଙ୍କ ପ୍ରସାଦରୁ ହିଁ ସାଧକର ବିନ୍ଦୁଧ୍ୟାନ ଉପଲବ୍ଧି ହୋଇଥାଏ ।

ଯୋଗସାଧନାଭିଜ୍ଞ ଯୋଗିରାଜ ପରମଗୁରୁ ବିନ୍ଦୁଧ୍ୟାନର ଉପଦେଶ ଦାନ କରି ଶିଷ୍ୟର ପରମ ମଙ୍ଗଳ ସାଧନ କରନ୍ତି ।

ନାଦଧ୍ୱନି ଶ୍ରବଣ କରି ଯେତେବେଳେ ପ୍ରତ୍ୟାହାର ଦୃଢ଼ ହୁଏ—ଅବସ୍ଥା ଭେଦରେ ଉତ୍ତରୋତ୍ତର ନାଦ ବୃଦ୍ଧି ହୋଇଥାଏ, ତାହା ସାହାଯ୍ୟରେ ଧାରଣାର ସିଦ୍ଧି ଏବଂ ଧ୍ୟାନର ମଧ୍ୟ ସିଦ୍ଧି ହୁଏ । ଧାରଣାରେ କିଞ୍ଚିତ୍ ଜ୍ୟୋତିର ବିକାଶ ହୋଇଥାଏ, କ୍ରମେ ଧାରଣା ସହିତ ଜ୍ୟୋତି ବୃଦ୍ଧି ହେବାରେ ଲାଗେ ।

ଧୂମ୍ରନୀହାରଖଦ୍ୟୋତଶଶିସୂର୍ଯ୍ୟାଗ୍ନିଭେଦତଃ ।
ଭେଦାଚ୍ଚ ପଞ୍ଚତତ୍ତ୍ୱସ୍ୟ ବିକାଶୋ ଜ୍ୟୋତିଷୋ ଭବେତ୍ ॥ ୧୭

ଧୂମ, ନୀହାର, ଜୁଳୁଜୁଳିଆ ପୋକ, ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି ପ୍ରଭୃତି ଭେଦରେ ଏବଂ ପଞ୍ଚତତ୍ତ୍ୱର ଭେଦଠାରୁ ଜ୍ୟୋତିର ପ୍ରକାଶ ଅର୍ଥାତ୍ ଉନ୍ମେଷ ହୁଏ । ଧାରଣା ଦୃଢ଼ଭାବରେ ଆୟତ୍ତ ହେଲେ ସାଧକର ସିଦ୍ଧି ଉତ୍ପନ୍ନ ହୁଏ । ଧାରଣା ସିଦ୍ଧ ହେଲେ ହିଁ ବ୍ରହ୍ମ ପରି ଶକ୍ତିରୂପକ ପରମାତ୍ମାଦର୍ଶନ ବିନ୍ଦୁଧ୍ୟାନରେ ନିତ୍ୟ ଉତ୍ତମ ରୂପେ ସଞ୍ଜାତ ହୁଏ, ଗୁଣସମ୍ପନ୍ନ ରୂପକ ତତ୍ତ୍ୱରେ ହିଁ ବିନ୍ଦୁଧ୍ୟାନ ପ୍ରକାଶିତ ହୋଇଥାଏ ।

ଜନ୍ମଜନ୍ମାନ୍ତରପ୍ରାପ୍ତସାଧନକ୍ରିୟୟା ଭବେତ୍ ।
ବିନ୍ଦୁଧ୍ୟାନୋପଲବ୍ଧିର୍ହି ଯୋଗିନଃ ସାଧକସ୍ୟ ବୈ ॥ ୧୯

ଜନ୍ମଜନ୍ମାନ୍ତର ପ୍ରାପ୍ତ ସାଧନ କ୍ରିୟାଦ୍ୱାରା ଯୋଗୀ ସାଧକଙ୍କର ବିନ୍ଦୁଧ୍ୟାନର ଉପଲବ୍ଧି (ପ୍ରକାଶ) ହୋଇଥାଏ ।

ଶିଷ୍ୟ—ବିନ୍ଦୁ କପରି ?

ଗୁରୁ—ଅତି ସୂକ୍ଷ୍ମତମ ଚିତ୍‌କଣା ବିନ୍ଦୁ, ଭିତରେ ଓ ବାହାରେ ଦେଖାଯାଏ, ଦେଖାଗଲେ ମଧ୍ୟ କେତେ ସୂକ୍ଷ୍ମ ତାହା କଥାରେ କହି ହେବ ନାହିଁ ।

ଏଥିରେ ଓଙ୍କାରକ୍ରିୟା ଏହିପରି ବର୍ଣ୍ଣିତ ହୋଇଅଛି:—

ତୈଳଧାରାମିବାଚ୍ଛିନ୍ନଂ ଦୀର୍ଘଘଣ୍ଟାନିନାଦବତ୍ ।
ଅବାଚ୍ୟଂ ପ୍ରଣବସ୍ୟାଗ୍ରଂ ଯ ସାକ୍ଷାଦୀଶ୍ୱରୋଽବ୍ୟୟଃ ॥

ଶିଷ୍ୟ—ଏ ଅଖଣ୍ଡ ନାଦକୁ ପ୍ରଣବର ଅଙ୍ଗ ବୋଲି କହିଛନ୍ତି ।

ଗୁରୁ—ପର ପ୍ରଣବର ଅଙ୍ଗ ତ ନିଶ୍ଚୟ, ଅପର ପ୍ରଣବର ମଧ୍ୟ ମୁଖ୍ୟ ଅଙ୍ଗ । ତା ପରେ ନାଦ ଶ୍ରୁତିର ସମ୍ୟକ୍ ଉନ୍ନତି ହେଲେ ଗୁରୁଗଣ ଏହି ସାଧନ ବିଧି ଶିଷ୍ୟଗଣଙ୍କୁ ଉପଦେଶ ଦିଅନ୍ତି; ଏହାର ସେହି କ୍ରିୟା ଦୁଇ ପ୍ରକାର, ପ୍ରଥମ ଆଧାରରୁ ସମୁତ୍ଥିତ ଏବଂ ସହସ୍ରାରରେ ପ୍ରତିଷ୍ଠିତ ସେହି ନାଦରେ ମନର ଲୟ ହୁଏ । ଦ୍ୱିତୀୟ, ଆଜ୍ଞାଚକ୍ର ଓ କୂର୍ମଚକ୍ର ଯୁକ୍ତିସହକାରେ, ଉଭୟକୁ ସଂଯୋଜିତ କରି, ଯେଉଁଠାରୁ ନାଦ ଉତ୍ପନ୍ନ ହୁଏ, ସେଠାରେ ଅବସ୍ଥାନ କରି ସେହି ସ୍ଥାନରେ ଯୋଗୀ ଅକ୍ଷୟ ଆତ୍ମାରାମତ୍ୱ ପ୍ରାପ୍ତ ହୁଅନ୍ତି—ସର୍ବଶାସ୍ତ୍ରରେ ଏହି କ୍ରିୟା ପ୍ରଯତ୍ନ ସହକାରେ ଗୋପନୀୟ ।

ଶିଷ୍ୟ—ଗୁରୁ ଉପଦେଶ ବ୍ୟତୀତ ଆଜ୍ଞାଚକ୍ର କୂର୍ମଚକ୍ରର ଯୋଜନାପ୍ରକାର ଜଣାଯିବ ନାହିଁ ; ଖାଲି ଶ୍ରବଣ କରିବା ଅଶ୍ରବଣର ସମାନ ।

ଗୁରୁ—ସମାଧି ବର୍ଣ୍ଣନା ଶ୍ରବଣ କର:—

ସଲିଲ୍‌ପତୌ ପତତ୍ତ୍ୱାମ୍ବୁ ଯଥାଭିନ୍ନମିପ୍ସ୍ୟାଲ୍ଲୟମ୍ ।
ତଥାଭିନ୍ନଂ ମନସ୍ତତ୍ର ସମାଧିଂ ସମବାପ୍ନୁୟାତ୍ ॥ ୧
ସଲିଲଂ ସୈନ୍ଧବଂ ଯଦ୍‌ବତ୍ ସାମ୍ୟଂ ଭଜନ୍ତି ଯୋଗତଃ ।
ତଥାତ୍ମମନସୋରୈକ୍ୟଂ ସମାଧିରଭିଧୀୟତେ ॥ ୨
ମହାଭାବୋ ମହାବୋଧୋ ମହାଲୟ ଇତି କ୍ରମାତ୍ ।
ତ୍ରିଧା ସମାଧିର୍ଭବତି ପ୍ରୋକ୍ତମେତନ୍ମହର୍ଷିଭିଃ ॥ ୩
ପ୍ରଶସ୍ତଲୟ ଯୋଗସ୍ୟ ସମାଧିର୍ହି ମହାଲୟଃ ।
ନାଦସ୍ୟ ବିନ୍ଦୋଃ ସାହାଯ୍ୟାତ୍ ସମାଧିରଧିଗମ୍ୟତେ ॥ ୪
ନାଦସ୍ୟ ବିନ୍ଦୋର୍ଶ୍ଚୈକତ୍ୱେ ମନସ୍ତତ୍ର ବିଲୀୟତେ ।
ଦୃଶ୍ୟନାଶାତ୍ ତଦା ଦ୍ରଷ୍ଟୁ ରୂପମେତି ପ୍ରକାଶତାମ୍ ॥ ୫
ପ୍ରଶସ୍ତଂ ସାଧନମିଦଂ ସମାଧିର୍ବ୍ୟପଦିଶ୍ୟତେ ।
ବ୍ରହ୍ମନିଷ୍ଠୈର୍ଗୁରୁପରୈଃ ପ୍ରାପ୍ୟୋଽସୌ ସୁଦୃଢ଼ବ୍ରତୈଃ ॥ ୬

ସାଗରରେ ଜଳ ପଡ଼ି ଯେପରି ଅଭିନ୍ନ ଭାବରେ ଲୟ ହୋଇଯାଏ, ସେହିପରି ତାଙ୍କଠାରେ ଅପୃଥକ୍ ମନ ସମାଧି ଲାଭ କରେ । ଜଳ ଓ ସୈନ୍ଧବ ଯେପରି ଏକତ୍ର କଲେ ସମତ୍ୱ ପ୍ରାପ୍ତ ହୁଏ, ସେହିପରି ଆତ୍ମା ଏବଂ ମନର ଐକ୍ୟ ସମାଧି ବୋଲି କଥିତ ହୋଇଥାଏ । ମନ୍ତ୍ର ଯୋଗେ ମୂର୍ତ୍ତିଧ୍ୟାନଦ୍ୱାରା ମହାଭାବ, ହଠଯୋଗରେ ଜ୍ୟୋତିର୍ଧ୍ୟାନଦ୍ୱାରା ମହାବୋଧ ଏବଂ ଲୟଯୋଗରେ ବିନ୍ଦୁଧ୍ୟାନର ପ୍ରଭାବରେ ମହାଲୟ ନାମକ ସମାଧି ସଞ୍ଜାତ ହୁଏ । ଲୟଯୋଗର ମହାଲୟ ସମାଧିହିଁ ଉତ୍ତମ, ଯୋଗୀ ନାଦ ଏବଂ ବିନ୍ଦୁ ସାହାଯ୍ୟରେ ତାହା ଲାଭ କରନ୍ତି, ନାଦ ଓ ବିନ୍ଦୁର ଏକତ୍ୱ ହେଲେ ମନ ସେହି ସ୍ଥାନରେ ଲୀନ ହୁଏ, ଦୃଶ୍ୟନାଶ ହେତୁ ସେତେବେଳେ ଦ୍ରଷ୍ଟାର ରୂପ ପ୍ରକାଶ ଅର୍ଥାତ୍ ଦ୍ରଷ୍ଟା ସ୍ୱରୂପରେ ଅବସ୍ଥାନ କରେ । ଏହି

ପ୍ରଶଂସନୀୟ ଉତ୍ତମସାଧନଦ୍ୱାରା ସମାଧି ଲାଭ ହୁଏ । ଏହା ସୁଦୃଢ଼ବ୍ରତ ବ୍ରହ୍ମନିଷ୍ଠ ଗୁରୁପରାୟଣ ସାଧକଗଣଙ୍କରହିଁ ପ୍ରାପ୍ତବ୍ୟ ।

ଶିଷ୍ୟ—ଏହାର ନାମ କୈବଲ୍ୟ ବା ନିର୍ବାଣମୁକ୍ତି । ଭକ୍ତଗଣ ତ ଏପରି ମୁକ୍ତି ପ୍ରାର୍ଥନା କରନ୍ତି ନାହିଁ । ସେବା ହିଁ ଭକ୍ତର କାମ୍ୟ ।

ଗୁରୁ—ଯେଉଁ ଭକ୍ତ ଯେପରି ଭାବରେ ତାଙ୍କୁ ଲାଭ କରିବାକୁ ଇଚ୍ଛା କରନ୍ତି, ସେହି ରୂପରେ ତାଙ୍କୁ ପ୍ରାପ୍ତ ହୁଅନ୍ତି । ଯୋଗୀଗଣ ସେହି ମୁକ୍ତି ଚାହାନ୍ତି । ଭକ୍ତ ମଧ୍ୟ ଯେତେବେଳେ ଭଗବଦ୍ଧ୍ୟାନଲୀଳା ଚିନ୍ତା କରୁ କରୁ ତନ୍ମୟ ହୋଇଯାନ୍ତି, ସେତେବେଳେ ତାଙ୍କର ମଧ୍ୟ ଏହି ଅବସ୍ଥା ହୁଏ ।

ଶିଷ୍ୟ— ଏଥିରେ କଣ ଭକ୍ତ ତୃପ୍ତ ହୁଅନ୍ତି ?

ଗୁରୁ—ନା । ଭକ୍ତ ଭଗବାନ୍‌ଙ୍କୁ ଚାହେଁ । ଏକ ଅଦ୍ୱୟ ଜ୍ଞାନର ନାମ ହିଁ ବ୍ରହ୍ମ ପରମାତ୍ମା ଭଗବାନ୍ । ଜ୍ଞାନୀର କାମ୍ୟ ନିର୍ବିଶେଷ ପରମାକାଶ । ଯୋଗୀର କାମ୍ୟ ଅପରିମିତ ଜ୍ୟୋତି ପରମାତ୍ମା ଏବଂ ଭକ୍ତର ଈପ୍‌ସିତତମ ଭଗବାନ୍ । ଏହି ନାଦଦ୍ୱାରା ଜ୍ଞାନୀ ଯୋଗୀ ଭକ୍ତ ସମସ୍ତେ ହିଁ ସ୍ୱ ସ୍ୱ ପ୍ରିୟତମଙ୍କୁ ପାଇଥାନ୍ତି ।

ଶିଷ୍ୟ—ନାଦ ଶୁଣୁ ଶୁଣୁ ଶ୍ରୀଭଗବତ୍ ସାକ୍ଷାତକାର ହୁଏ ?

ଗୁରୁ—ନିଶ୍ଚୟ ହୁଏ ।

ତାପରେ ଭଗବାନ୍ ଶଙ୍କରାଚାର୍ଯ୍ୟଙ୍କ କଥା ଶୁଣ—

ସଦାଶିବୋକ୍ତାନି ସପାଦଲକ୍ଷ-
ଲୟାବଧାନାନି ବସନ୍ତି ଲୋକେ ।
ନାଦାନୁସନ୍ଧାନ ସମାଧିମେକଂ,
ମନ୍ୟାମହେ ମାନ୍ୟତମଂ ଲୟାନାମ୍ ॥ ୨
ସରେଚପୂରୈରନିଲସ୍ୟ କୁମ୍ଭୈଃ
ସର୍ବାସୁ ନାଡ଼ୀଷୁ ବିଶୋଧିତାସୁ ।

ଅନାହତାଦମ୍ବୁରୁହାଦୁଦୈନ୍ତ
ସ୍ୱାତ୍ମୈବଗମ୍ୟଃ ସ୍ୱୟମେବ ବୋଧଃ ॥ ୩
ନାଦାନୁସନ୍ଧାନ ନମୋଽସ୍ତୁ ତୁଭ୍ୟଂ
ତ୍ୱାଂ ସାଧନଂ ତତ୍ତ୍ୱପଦସ୍ୟ ଜାନେ ।
ଭବତ୍‌ପ୍ରସାଦାତ୍‌ ପବନେନ ସାକଂ
ବିଲୀୟତେ ବିଷ୍ଣୁପଦେ ମନୋ ମେ ॥ ୪ ଯୋଗତାରାବଳୀ

"ଏହି ସଂସାରରେ ସଦାଶିବ କଥିତ ସପାଦ ଏକଲକ୍ଷ ଲୟ-ଯୋଗ ବର୍ତ୍ତମାନ ଅଛି, ତାହା ମଧ୍ୟରେ ଏକମାତ୍ର ନାଦାନୁସନ୍ଧାନ ରୂପକ ସମାଧିକୁ ମୁଁ ସମସ୍ତ ଲୟଠାରୁ ଶ୍ରେଷ୍ଠ ବୋଲି ମନେ କରେ । ବାୟୁର ରେଚକ ପୂରକ କୁମ୍ଭକଦ୍ୱାରା ସମସ୍ତ ନାଡ଼ୀ ବିଶେଷ ରୂପେ ଶୋଧିତ ହେଲେ ଅନାହତ ପଦ୍ମରୁ ଆତ୍ମାଲଭର ଉପାୟ ସ୍ୱରୂପ ତତ୍ତ୍ୱଜ୍ଞାନ ସ୍ୱୟଂ ଉତ୍ପନ୍ନ ହୁଏ ।

ହେ ନାଦାନୁସନ୍ଧାନ ! ତୁମ ଉଦ୍ଦେଶ୍ୟରେ ନମସ୍କାର କରୁ-ଅଛି । ମୁଁ ତୁମକୁ ତତ୍ତ୍ୱପଦର ସାଧନ ବୋଲି ଜାଣେ, ତୁମ ଅନୁଗ୍ରହରେ ପ୍ରାଣବାୟୁ ସହିତ ମୋର ମନଃ ବ୍ରହ୍ମପଦରେ ବିଲୀନ ହେବ ।" (୨ । ୩ । ୪)

ଶିଷ୍ୟ—ନାଦାନୁସନ୍ଧାନକୁ ତତ୍ତ୍ୱପଦର ସାଧନ ବୋଲି କହିଲେ--ତା ହେଲେ ନାଦକୁ ତତ୍ତ୍ୱ ବୋଲି ନିର୍ଦ୍ଦେଶ କଲେ ।

ଗୁରୁ—ହଁ—ଅନ୍ୟତ୍ର ସେ ନାଦକୁ ନିର୍ଗୁଣ ବ୍ରହ୍ମ ବୋଲି କହିଛନ୍ତି:—

ଶୃଙ୍ଗସ୍ଥିତଂ ସୋମକଳାବତଂସଂ
ବୀଣାଧରଂ ବ୍ୟକ୍ତଜଟାକଳାପଂ ।

ଉପାସତେ କେଚନ ଯୋଗିନସ୍ତୁ—
ମୁପାତ୍ତନାଦାନୁଭବପ୍ରମୋଦମ୍ ॥
ଦକ୍ଷିଣାମୂର୍ତ୍ତିସ୍ତୋତ୍ର

ଯେ ମନୋହର ଭବରେ ଅବସ୍ଥିତ, ଚନ୍ଦ୍ରକଳା ଯାହାଙ୍କର ଶିରୋଭୂଷଣ, ଯେ ବୀଣା ଧାରଣ କରିଛନ୍ତି, ଯାହାଙ୍କର ଜଟାକଳାପ ବିସ୍ତୃତ, ନାଦାନୁସନ୍ଧାନ ଯୋଗଦ୍ୱାରା ଆନନ୍ଦପ୍ରାପ୍ତ—ତାହାଙ୍କୁ କେହି କେହି ଭାଗ୍ୟବାନ ଯୋଗୀ ଉପାସନା କରିଥାନ୍ତି ।

ସଗୁଣ ବ୍ରହ୍ମ ଦକ୍ଷିଣା ମୂର୍ତ୍ତି ଭଗବାନ୍ ଶଙ୍କରଙ୍କୁ ନାଦାନୁସନ୍ଧାନ ରୂପକ ଯୋଗଦ୍ୱାରା ଆନନ୍ଦପ୍ରାପ୍ତ ବୋଲି କହିଲେ । ଏହି ନାଦ ନିର୍ଗୁଣ ନାଦ । ଖାଲି ଏହି ନାଦ କାହିଁକି, ନାଦ ମାତ୍ରେ ହିଁ ନିର୍ଗୁଣ । ଓଙ୍କାର ଉପାସନା ନିର୍ଗୁଣ ଉପାସନା ବୋଲି କଥିତ ହୁଏ ।

ପ୍ରଣବୋପାସ୍ତୟଃ ପ୍ରାୟୋ ନିର୍ଗୁଣା ଏବ ବେଦଗାଃ ।
କ୍ୱଚିତ୍ ସଗୁଣତାପ୍ୟୁକ୍ତା ପ୍ରଣବୋପାସନସ୍ୟ ହି ॥ ୧୪୭
ପଞ୍ଚଦଶୀ ୯ମ ପରିଚ୍ଛେଦ

ପ୍ରଣବର ଉପାସନା ପ୍ରାୟ ନିର୍ଗୁଣରୂପେ ସବୁଠାରେ କଥିତ ହୋଇଅଛି, କ୍ୱଚିତ୍ ତାହାର ସଗୁଣତ୍ୱ କଥିତ ହୋଇଅଛି ।

ସୋଽକାମୋ ନିଷ୍କାମ ଇତି ହ୍ୟଶରୀରେ ନିରିନ୍ଦ୍ରୟଃ ।
ଅଭୟଂ ହୀତି ମୁକ୍ତତ୍ୱଂ ତାପନୀୟେ ଫଳଂ ଶ୍ରୁତମ୍ ॥ ୪୪୧
ଏଜନ୍

ନିର୍ଗୁଣ ଉପାସନାରେ ମୋକ୍ଷଫଳ ବିଷୟରେ ପ୍ରମାଣ—"ସୋଽକାମୋ ନିଷ୍କାମ ଆପ୍ତକାମ" ଇତ୍ୟାଦି ତାପନୀୟ ଶ୍ରୁତି ବାକ୍ୟରେ ନିର୍ଗୁଣ ଉପାସନାରେ ମୁକ୍ତିଫଳ ଶ୍ରୁତ ଅଛି ।

ସେହି ଅକାମ ନିଷ୍କାମ ଆପ୍ତକାମ ଆତ୍ମକାମ, ତାହାର ପ୍ରାଣ ଉତ୍କ୍ରାନ୍ତ ହୁଏ ନାହିଁ । ଏହି ସ୍ଥାନରେହିଁ ଲୀନ ହୁଏ, "ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି ।" ଓଁକାର ଉପାସନାର ସଦ୍ୟ ମୁକ୍ତିଫଳ ତାପନୀୟ ଶ୍ରୁତି କହିଛନ୍ତି ।

୧୪୩ ସୂତ୍ରରେ ମୀମାଂସା କରିଛନ୍ତି—ନିଷ୍କାମ ପ୍ରଣବ ଉପାସନାରେ ମୁକ୍ତି ଏବଂ ସକାମ ପ୍ରଣବ ଉପାସନାରେ ସତ୍ୟଲୋକ ପ୍ରାପ୍ତି ହୁଏ । ମୋର ଏକଥା ଉତ୍ଥାପନର କାରଣ ବୁଝିଛ ?

ଶିଷ୍ୟ—ଆଜ୍ଞା ହଁ । ପ୍ରଣବ ଉପାସନା ଯଦି ନିର୍ଗୁଣ ଉପାସନା ତେବେ ନାଦର ଉପାସନା ନିଶ୍ଚୟ ନିର୍ଗୁଣ ଉପାସନା । ମୋର ସନ୍ଦେହ ଏଇଆ ଯେ, ନାଦ ଯେତେବେଳେ ଶ୍ରୁତିଗୋଚର ହେଉଛି—ତେବେ ସେ କିପରି ନିର୍ଗୁଣ ହୋଇ ପାରିବେ ?

ଗୁରୁ—ପୁରୁଷର ଚେଷ୍ଟାଦ୍ୱାରା ଯେଉଁ ନାଦ ଉତ୍ଥିତ ହୁଏ, ତାହାକୁ ତୁମେ ସଗୁଣ କହିପାର, କିନ୍ତୁ ଯେଉଁ ଅନାହତ ଧ୍ୱନି ସ୍ୱତଃ ଉତ୍ଥିତ ହେଉଅଛି, ତାହାକୁ ନିବାରଣ କରିବାର ଶକ୍ତି କାହାର ନାହିଁ, ତାହାକୁ ତୁମେ ସଗୁଣ କିପରି କହିବ ? ନାଦ ଯେ ନାଦର ଶ୍ରୋତା ମଧ୍ୟ ସେହି । ସେ ନାଦରୂପରେ ଲୀଳା କରୁଛନ୍ତି ଏବଂ କର୍ଣ୍ଣର କର୍ଣ୍ଣରୂପେ ନାଦ ଶୁଣୁଛନ୍ତି । ଆଉର ଗୋଟିଏ କଥା, ପରମାତ୍ମା ଯେତେବେଳେ ନିର୍ଗୁଣ ସେତେବେଳେ ତାଙ୍କର ନାମ ଓଁକାର ମଧ୍ୟ ନିର୍ଗୁଣ । ଓଁକାରର ମୁଖ୍ୟ ଅଙ୍ଗ ନାଦ କିପରି ସଗୁଣ ହୋଇପାରିବେ ?

ନାଦଃ ପରଃ ପୁମାନାତ୍ମା ନିର୍ଗୁଣୋ ନିଷ୍କ୍ରିୟଃ ଶିବଃ ॥ ଶିବପୁରାଣ
ନାଦ ଏବ ମହଦ୍‌ବ୍ରହ୍ମ ପରମାତ୍ମା ପରଃ ପୁମାନ୍ ॥ ଲୟଯୋଗସଂହିତା
ନାଦଃ ପରମଃ ପୁରୁଷଃ ॥ ନାଦଲିଙ୍ଗ ଚିଦାତ୍ମକମ୍ ॥ ଯୋଗଶିଖୋପନିଷତ୍

ତନ୍ତ୍ରରେ ଚିତ୍ ଅଚିତ୍ ମିଶ୍ରିତ ନାଦ—ଏକଥା କୁହାଯାଇଛି । ପର ନାଦ ହିଁ ଚିନ୍ନାଦ । ଏହାପରେ ଯୋଗତାରାବଳୀ କଥା ଶୁଣ—

ବ୍ରହ୍ମରନ୍ଧ୍ରଗତେ ବାୟୌ ଗିରେଃ ପ୍ରସ୍ରବଣଂ ଭବେତ୍ ।
ଶୃଣୋତି ଶ୍ରବଣାଖ୍ୟତଂ ନାଦଂ ମୁକ୍ତିର୍ନ ସଂଶୟଃ ॥ ୩୦

ପ୍ରାଣବାୟୁ ଯେତେବେଳେ ବ୍ରହ୍ମରନ୍ଧ୍ରକୁ ଯାଏ, ଅର୍ଥାତ୍ ସହସ୍ରଦଳ ପଦ୍ମରେ ଅବସ୍ଥାନ କରେ, ସେତେବେଳେ ଗିରିର (ମେରୁର) ପ୍ରସ୍ରବଣ ହୁଏ, ଅର୍ଥାତ୍ ସହସ୍ର ଦଳ ପଦ୍ମରୁ ସୁଧା କ୍ଷରିତ ହୁଏ, ସେତେବେଳେ ଯୋଗୀ ଶ୍ରବଣାଖ୍ୟତ ଅର୍ଥାତ୍ ଅପୂର୍ବ ନାଦ (ଧ୍ୱନି) ଶ୍ରବଣ କରନ୍ତି । ମୁକ୍ତି ସମ୍ବନ୍ଧରେ ସଂଶୟ ରହେ ନାହିଁ ।

ପ୍ରବୋଧସୁଧାକର କହୁଛନ୍ତି—

ଯାବତ୍ କ୍ଷଣଂ କ୍ଷଣାର୍ଦ୍ଧଂ ବା ସ୍ୱରୂପଚନ୍ତନଂ କ୍ରିୟେତ ।
ତାବଦ୍ ଦକ୍ଷିଣକର୍ଣ୍ଣେ ସଂଶ୍ରୂୟତେଽନାହତ ଶବ୍ଦଃ ॥ ୧୪୪
ସିଦ୍ଧ୍ୟାରମ୍ଭ-ସ୍ଥିରତା-ବିଶ୍ରମ-ବିଶ୍ୱାସ-ବୀଜ-ଶୁଦ୍ଧୀନାମ୍ ।
ଉପଲକ୍ଷଣଂ ହି ମନସଃ ପରମଂ ନାଦାନୁସନ୍ଧାନମ୍ ॥ ୧୪୫
ଭେରୀ-ମୃଦଙ୍ଗ-ଶଙ୍ଖାଦ୍ୟାହତ-ନାଦେ ମନଃ କ୍ଷଣଂ ରମତେ ।
କିଂ ପୁନରନାହତେଽସ୍ମିନ୍ ମଧୁମଧୁରେଽଖଣ୍ଡିତେ ସ୍ୱଚ୍ଛେ ॥ ୧୪୬
ଚିତ୍ତଂ ବିଷୟୋପରମାତ୍ ଯଥା ଯଥା ଯାତି ନୈଶ୍ଚଲ୍ୟଂ ।
ବେଣୋରିବ ସଂଘଟରସ୍ତଥା ତଥା ଶ୍ରୂୟତେ ନାଦଃ ॥ ୧୪୭
ନାଦାଭ୍ୟନ୍ତରବର୍ତ୍ତି ଜ୍ୟୋତିର୍ଯଦ୍ ବର୍ତ୍ତତେ ପରମ୍ ।
ତତ୍ର ମନୋଲୟନଂ ଚେନ୍ନ ପୁନଃ ସଂସାରବନ୍ଧାୟ ॥ ୧୪୮
ପରମାନନ୍ଦାନୁଭବାତ୍ ସୁଚିରଂ ନାଦାନୁସନ୍ଧାନାତ୍ ।
ଶ୍ରେଷ୍ଠୁଷ୍ଟିରିଲୟେଽପ୍ୟଂ ସତ୍ସ୍ୱନ୍ୟଲୟେଷ୍ୱନେକେଷୁ ॥ ୧୪୯

ଯେ ପର୍ଯ୍ୟନ୍ତ କ୍ଷଣାର୍ଦ୍ଧକାଳ ସ୍ୱରୂପର ଚିନ୍ତା କରାଯାଏ, ସେ ପର୍ଯ୍ୟନ୍ତ କେବଳ ଦକ୍ଷିଣ କର୍ଣ୍ଣରେ ଅନାହତ ଶବ୍ଦ ଶୁଣାଯାଏ । ସିଦ୍ଧି ଆରମ୍ଭ ସ୍ଥିରତା ବିଶ୍ରାମ ବିଶ୍ୱାସ ବୀଜଶୁଦ୍ଧି ଉପଲକ୍ଷଣ ହିଁ ମନର ପରମ ନାଦାନୁସନ୍ଧାନ । ଯେତେବେଳେ ଭେରୀ ମୃଦଙ୍ଗ ଶଙ୍ଖ

ପ୍ରଭୃତର ଆହତ ନାଦରେ କ୍ଷଣକାଳ ନିମିତ୍ତ ମନର ରତି ହୁଏ, ସେତେବେଳେ ମଧୁଠାରୁ ମଧ୍ୟ ସୁମଧୁର ଅତି ପବିତ୍ର ଅନାହତ ନାଦ ସହିତ ଯେ ମନ ରମଣ କରିବ ଏଥିରେ ସନ୍ଦେହ କଣ ?

ବିଷୟର ଉପରମଣବନ୍ଧନ ଚିତ୍ତ ଯେଉଁ ପ୍ରକାର ନିଶ୍ଚଳତା ପ୍ରାପ୍ତ ହୁଏ, କ୍ରମେ ସେପ୍ରକାର ବେଣୁ ଶବ୍ଦ ପରି ଦୀର୍ଘତର ଅନାହତ ଶବ୍ଦ ଶୁଣାଯାଏ । ନାଦ ଅଭ୍ୟନ୍ତରରେ ଯେଉଁ ଜ୍ୟୋତି ଅଛି, ତାହା ଯଦି ଦୀର୍ଘକାଳସ୍ଥାୟୀ ହୁଏ ଏବଂ ସେଥିରେ ଯଦି ଚିତ୍ତ ବିଲୀନ ହୁଏ, ତେବେ ପୁନର୍ବାର ସଂସାରବନ୍ଧନ ହୁଏ ନାହିଁ । ଅନ୍ୟବିଧ ଲୟ ଅନେକ ଥିଲେ ମଧ୍ୟ ନାଦାନୁସନ୍ଧାନରୁ ଉତ୍ପନ୍ନ ବହୁକାଳବ୍ୟାପୀ ପରମାନନ୍ଦାନୁଭବରୁ ଚିତ୍ତର ଯେଉଁ ଲୟ ହୁଏ ତାହାହିଁ ଶ୍ରେଷ୍ଠ ।

ମଠାମ୍ନାୟସେତୁରେ ଏହିପରି କଥିତ ଅଛି:—

ସପ୍ତମେ ନିଷ୍କଳାମ୍ନାୟେ ଶୁଦ୍ଧଃ ଶ୍ରୀଆନନ୍ଦମଠଃ ।
ସମ୍ପ୍ରଦାୟୋ ବ୍ରହ୍ମାନନ୍ଦଃ ଶ୍ରୀଗୁରୋଃ ପାଦୁକେ ତଥା ॥
ତତ୍ରାନୁଭୂତିକ୍ଷେତ୍ରଂ ସ୍ୟାଦ୍‌ବିଶ୍ୱରୂପୋଽସ୍ୟ ଦେବତା ।
ଦେବୀ ଚୈତନ୍ୟଶକ୍ତିଃ ସ୍ୟାଦାଚାର୍ଯ୍ୟଃ ସଦ୍‌ଗୁରୁସ୍ତତଃ ॥
ନାଦସ୍ୟ ଶ୍ରବଣଂ ତୀର୍ଥଂ ଜନ୍ମମୃତ୍ୟୁବିନାଶନମ୍ ।
ପୂର୍ଣ୍ଣାନନ୍ଦକ୍ରମେଣୈବ ସନ୍ନ୍ୟାସଂ ତତ୍ର ଗୃହ୍ଣୀୟାତ୍ ॥

ସପ୍ତମ ନିଷ୍କଳ ଆମ୍ନାୟରେ ଶୁଦ୍ଧଶ୍ରୀ ଆନନ୍ଦ, ବ୍ରହ୍ମାନନ୍ଦ ଶ୍ରୀଗୁରୁପାଦୁକା ସମ୍ପ୍ରଦାୟ, କ୍ଷେତ୍ର ଅନୁଭୂତି, ବିଶ୍ୱରୂପ ଦେବତା, ଦେବୀ ଜାଗ୍ରତା କୁଣ୍ଡଳିନୀ ଚୈତନ୍ୟଶକ୍ତି, ଆଚାର୍ଯ୍ୟ ସଦ୍‌ଗୁରୁ, ଜନ୍ମମୃତ୍ୟୁବିନାଶନ ନାଦ ଶ୍ରବଣ ତୀର୍ଥ, କ୍ରମେ ସନ୍ନ୍ୟାସ ଆଶ୍ରୟ କରିବ ।

ଶିଷ୍ୟ—ପୂର୍ଣ୍ଣାନନ୍ଦ କ୍ରମ କଣ ?

ଗୁରୁ—ସାଧକଯୋଗରେ ଦୀକ୍ଷାକ୍ରମ ସପ୍ତପ୍ରକାର—ମନ୍ତ୍ରଦୀକ୍ଷା, ଶାକ୍ତାଭିଷେକ, ପୂର୍ଣ୍ଣାଭିଷେକ, କ୍ରମଦୀକ୍ଷା, ସାମ୍ରାଜ୍ୟଦୀକ୍ଷା, ମହା-ସାମ୍ରାଜ୍ୟଦୀକ୍ଷା ଓ ପୂର୍ଣ୍ଣଦୀକ୍ଷା ।

ଶିଷ୍ୟ—ମନ୍ତ୍ରଦୀକ୍ଷାଦିର ପ୍ରକାର କଣ ?

ଗୁରୁ—କୁଳଦେବତାଙ୍କର ମନ୍ତ୍ରଗ୍ରହଣ ପରେ ପୁରଶ୍ଚରଣ କରିବ, ତା ପରେ ଶାକ୍ତାଭିଷିକ୍ତ ହେବ—ଏହାର ନାମ ମନ୍ତ୍ରଦୀକ୍ଷା । ଶାକ୍ତାଭିଷେକ:—ଶାକ୍ତାଭିଷିକ୍ତ ହୋଇ ବାର, ତିଥି, ପକ୍ଷ, ମାସ, ଋତୁ, ଅୟନ ଓ ବର୍ଷ ପୁରଶ୍ଚରଣ କରିବ । ତାହା ପରେ ନକ୍ଷତ୍ର, ଗ୍ରହ, କରଣ, ଯୋଗ ଓ ସଂକ୍ରାନ୍ତି ପୁରଶ୍ଚରଣ କରି ପୂର୍ଣ୍ଣାଭିଷିକ୍ତ ହେବ । ପୂର୍ଣ୍ଣାଭିଷେକ—ପୂର୍ଣ୍ଣାଭିଷିକ୍ତ ହେଲେ ଷଟ୍‌କର୍ମର (ମାରଣାଦିର) ଅଧିକାର ଜନ୍ମେ, ତାହା କରିବ ନାହିଁ । ବ୍ରହ୍ମମନ୍ତ୍ର ଜପ, ପାଦୁକାମନ୍ତ୍ର ଜପ, ରହସ୍ୟ ପୁରଶ୍ଚରଣ, ବୀର ପୁରଶ୍ଚରଣ, ଦଶାର୍ଣ୍ଣମନ୍ତ୍ର ଶ୍ରବଣ, ବୀର ସାଧନ, ଚିତା ସାଧନ, ଯୋଗିନୀ ସାଧନ, ମଧୁମତୀ ସାଧନ, ସୁନ୍ଦରୀ ସାଧନ, ଲତା ସାଧନ, ଶ୍ମଶାନ ସାଧନ, ଶିବାବଳି, ଚକ୍ରାନୁଷ୍ଠାନ । ତା ପରେ କ୍ରମଦୀକ୍ଷା:—କକାରକୂଟ-ସ୍ତୋତ୍ର, ମେଧା ସାମ୍ରାଜ୍ୟ ସ୍ତୋତ୍ର ପାଠ, କାଳୀ ତାରା ଓ ତ୍ରିପୁରା ଦେବୀଙ୍କର ରହସ୍ୟ ପୁରଶ୍ଚରଣ । କ୍ରମଦୀକ୍ଷାରେ ଦୀକ୍ଷିତ ନ ହେଲେ ମଧ୍ୟ ପୂର୍ଣ୍ଣାଭିଷିକ୍ତର ସମସ୍ତ କାର୍ଯ୍ୟ କରିବାର ଅଧିକାର ଅଛି । ସାମ୍ରାଜ୍ୟଦୀକ୍ଷା ହେବା ପରେ ଊର୍ଦ୍ଧାମ୍ନରେ ଅଧିକାର—ପରାପ୍ରସାଦ ମନ୍ତ୍ର ଅର୍ଥାତ୍ ଅର୍ଦ୍ଧନାରୀଶ୍ୱର ମନ୍ତ୍ର ସାଧନ ଏବଂ ମହାଷୋଢ଼ା ମନ୍ତ୍ର ଜପ କରିବ ।

ଶିଷ୍ୟ—"ହଂସ" ମନ୍ତ୍ର ହ୍ରୀଁ ଅର୍ଦ୍ଧନାରୀଶ୍ୱର ମନ୍ତ୍ର ତ ?

ଗୁରୁ—ହଁ—ତା ପରେ ମହାସାମ୍ରାଜ୍ୟ ଦୀକ୍ଷା । ମହାସାମ୍ରାଜ୍ୟ ଦୀକ୍ଷା ନେଲେ ଯୋଗ ଓ ନିର୍ଗୁଣ ବ୍ରହ୍ମ ସାଧନ କରିବ ।

ଶିଷ୍ୟ—ମହାସାମ୍ରାଜ୍ୟଦୀକ୍ଷାରେ କଣ "ସୋହଂ" ମନ୍ତ୍ର ଜପ-କରିବାକୁ ହୁଏ ?

ଗୁରୁ—ହଁ ବତ୍ସ । ଶେଷରେ ପୂର୍ଣ୍ଣଦୀକ୍ଷା । ପୂର୍ଣ୍ଣଦୀକ୍ଷା ହୋଇ-ସାରିଲେ ସମସ୍ତ ଜ୍ଞାନପ୍ରାପ୍ତି, ସର୍ବସାଧନ ତ୍ୟାଗ, ଅହଂ ବ୍ରହ୍ମାସ୍ମି ଇତ୍ୟାଦି ମହାବାକ୍ୟଗୁଡ଼ିକର ଜ୍ଞାନଲାଭପୂର୍ବକ ଅଦ୍ୱୈତଭାବ ଗ୍ରହଣ, ଅର୍ଥାତ୍ ଜଗତ୍ ମିଥ୍ୟା ବ୍ରହ୍ମ ହିଁ ସତ୍ୟ—ସେହି ବ୍ରହ୍ମ ମୁଁ—ଇତ୍ୟାକାର ଜ୍ଞାନ କରିବ । ସାଧନ କରୁ କରୁ ଏତେଦୂରକୁ ଆସି ପହଞ୍ଚିଲେ ତେବେ ଯାଇ ବ୍ରହ୍ମ ଜ୍ଞାନ ହେବ । ଏହା ହିଁ ସାଧନାର ଚରମ ଫଳ । ସେତେବେଳେ ଆଉ ମାୟାମମତା କିଛି ରହିବ ନାହିଁ—ସର୍ବପ୍ରକାର ଆସକ୍ତିଶୂନ୍ୟ ହେବ, ଅହଙ୍କାରଶୂନ୍ୟ ହେବ ଏବଂ ଜୀବନ୍ମୁକ୍ତ ହେବ । ତା ହେଲେ ସଂସାର ଆସକ୍ତି ଶେଷ ହେବ । ଆଉ ସଂସାରକୁ ଆସିବାକୁ ହେବ ନାହିଁ, ଜୀବିତ ଅବସ୍ଥାରେ ଜୀବନ୍ମୁକ୍ତ ହୋଇ ରହିବ ଏବଂ ଅନ୍ତେ ମୋକ୍ଷଲାଭ କରିବ ।

ଶିଷ୍ୟ—ତାନ୍ତ୍ରିକ ସାଧନା ଖୁବ୍ କଷ୍ଟ ଦେଖୁଛି ।

ଗୁରୁ—ସାଧନା କଷ୍ଟ ନିଶ୍ଚୟ, ତେବେ ଯେଉଁମାନେ ସିଦ୍ଧ-ଗୁରୁଙ୍କର କୃପା ଲାଭ କରିଥାନ୍ତି, ସେମାନଙ୍କ କଥା ସ୍ୱତନ୍ତ୍ର । ତାନ୍ତ୍ରିକ ସାଧନାରେ ସପ୍ତାଚାର ଓ ତିନୋଟି ଭାବ ଅଛି—ବୈଦିକ ଆଚାର, ବୈଷ୍ଣବାଚାର, ଶୈବାଚାର ଓ ଦକ୍ଷିଣାଚାର ପଶୁଭାବର ଅନ୍ତର୍ଗତ । ସିଦ୍ଧାନ୍ତାଚାର ଓ ବାମାଚାର ବୀରଭାବର ଅନ୍ତର୍ଗତ, କୌଳାଚାର ଦିବ୍ୟଭାବର ଅନ୍ତର୍ଗତ ।

ଶିଷ୍ୟ—ଏହି ପଥରେ ନାଦ ଜ୍ୟୋତି ଅଛି ?

ଗୁରୁ—ନାଦ ଜ୍ୟୋତି ଛଡ଼ା ତ ପଥ ନାହିଁ; ଏହି ପଥରେ ସମସ୍ତଙ୍କୁ ଯିବାକୁ ହିଁ ପଡ଼ିବ । ତା ପରେ ଜ୍ଞାନୀ ଯୋଗୀ ଓ ଭକ୍ତ ସ୍ୱ ସ୍ୱ ଅଭିମତ ନିର୍ବିଶେଷରେ ପରମାକାଶ ବ୍ରହ୍ମ, ଅପରିମିତ ଜ୍ୟୋତି ପରମାତ୍ମା ଏବଂ ଷଡ଼ୈଶ୍ୱର୍ଯ୍ୟଶାଳୀ ଶ୍ରୀଭଗବାନଙ୍କୁ ପ୍ରାପ୍ତ ହୁଅନ୍ତି ।

ଓଁ ଓ ଶ୍ରୀଶ୍ରୀଗୁରବେ ନମଃ

ଶ୍ରୀମତେ ରାମାନୁଜାୟ ନମଃ ଶ୍ରୀମତେ ରାମାନନ୍ଦାୟ ନମଃ

ଶ୍ରୀମତେ ସଦ୍‌ଗୁରବେ ଦାଶରଥୟେ ନମଃ ।

# ଶ୍ରୀଶ୍ରୀନାଦଲୀଳାମୃତ

## ଅଷ୍ଟମ ହିଲ୍ଲୋଳ

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧିବିଷ୍ଣୁସର୍ବୈଃ
ବସୁନ୍ଧରା-ବାରି-ବିମାନ-ବହ୍ନି-
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ॥

ଓଁ ନମୋ ବ୍ରହ୍ମରୂପାୟ ଶାନ୍ତାୟ ସମତ୍ୱେନ ସଦୋଦିତାୟ
ପୂର୍ଣ୍ଣାୟ ଚିଦ୍‌ବିଳାସ-ବିଳାସାୟ ଓଙ୍କାରାୟ ନମଃ ॥
ନାଦଂ ନାଦିତଶାସ୍ତ୍ରବୃନ୍ଦଧରଣଂ ଶାସ୍ତ୍ରୈକବେଦ୍ୟଂ ଶୁଭଂ
ଶାସ୍ତ୍ରାବାଦି କୃପାଳୁ ପାଦରସିକୈଃ ସାକ୍ଷାତ୍ କୃତଂ ସର୍ବଦା ।
ଶାସ୍ତଂ ଶାସନରୂପଦିବ୍ୟମମଳଂ ସ୍ରୋତ୍‌ସାହିନୋଦ୍ଦଣ୍ଡନଂ ।
ଶବ୍ଦବ୍ରହ୍ମ ନିରସ୍ତଦୋଷମମଳଂ ନିତ୍ୟୋତ୍ସବେଶଂ ଭଜେ ॥
ଅର୍ଦ୍ଧମାତ୍ରାମମାତ୍ରାଞ୍ଚ ଦେବତାଂ ବିଜଳୋଜ୍ଜ୍ୱଳାମ୍ ।
ଓଙ୍କାରରୂପିଣୀଂ ଦେବୀଂ ନିତ୍ୟଂ ବନ୍ଦେ ସୁନିର୍ମ୍ମଳାମ୍ ॥
ସୁଷୁମ୍ନାୟୈ କୁଣ୍ଡଳିନ୍ୟୈ ସୁଧାୟୈ ଚନ୍ଦ୍ରଜନ୍ମନେ ।
ମନୋନ୍ମନ୍ୟୈ ମନସ୍ତୁଭ୍ୟଂ ମହାଶକ୍ତ୍ୟୈ ଚିଦାତ୍ମନେ ॥
ଆବ୍ରହ୍ମ-ସ୍ତମ୍ଭପର୍ଯ୍ୟନ୍ତଂ ଭୂତାନି ବ୍ୟାପ୍ୟ ଜୀବବତ୍ ।
ଜନକଂ ଯତ୍ ପରଂ ବସ୍ତୁ ତାରକଂ ତଂ ନମାମ୍ୟହମ୍ ॥

ଗୁରୁ—ଏଥର କବୀର ପ୍ରଭୃତି ମହାତ୍ମାଗଣ ନାଦ କଥା ଯେପରି କହିଛନ୍ତି ଶୁଣ—

ଜିଁହସେ ଆୟେ ଅମର ବ ଦେଶବା ।
ନା ହୁବାଁ ଧରଣୀ ନ ପୌନ ଅକସବା ॥
ନା ହୁବାଁ ଚାଁଦ ସୂରଜ ପରଗସ୍ବା ।
ନା ହୁବାଁ ବ୍ରାହ୍ମଣ ଶୂଦ୍ର ନ ଶେଖବା ॥
ନା ହୁବାଁ ବ୍ରହ୍ମା ନ ବିଷ୍ଣୁ ମହେଶ୍ବର ।
ନା ଯୋଗୀ ଜଙ୍ଗମ ଦରବେଶବା ॥
କହୈଁ କବୀରଲେ ଆୟନ ସନ୍ଦେସବା ।
ସାର ସୁର ଗହୌ ଚଲୌ ରହି ଦେସବା ॥ ୬୦୫

ସାନୁବାଦ ଦୋହାବଳୀ

ତୁମେ ଯେଉଁ ସ୍ଥାନରୁ ଆସିଛ ସେ ଦେଶ ଅମର—ସେଠାରେ ପୃଥିବୀ ନାହିଁ; ବାୟୁ ନାହିଁ, ଆକାଶ ନାହିଁ, ସେଠାରେ ଚନ୍ଦ୍ରସୂର୍ଯ୍ୟର ପ୍ରକାଶ ନାହିଁ; ସେଠାରେ ବ୍ରାହ୍ମଣ ନାହିଁ, ଶୂଦ୍ର ନାହିଁ ବା ଶେଖ୍ (ମୁସଲମାନ) ନାହିଁ; ସେ ସ୍ଥାନରେ ବ୍ରହ୍ମା ନାହାନ୍ତି, ବିଷ୍ଣୁ ନାହାନ୍ତି, ମହେଶ୍ବର ନାହାନ୍ତି; ସେଠାରେ ଯୋଗୀ ନାହାନ୍ତି, ଗତିଶକ୍ତିଶାଳୀ ସାଧାରଣ ଜୀବ ନାହାନ୍ତି; ଦରବେଶ ମଧ୍ୟ ନାହାନ୍ତି । ମୁଁ ଏହି ସମସ୍ତ ସମାଚାର ନେଇ ଆସିଅଛି । ସେହି ପୂର୍ଣ୍ଣ ସୁରର ଅର୍ଥାତ୍ ଅଖଣ୍ଡ ନାଦ ମଧ୍ୟରେ ବୁଡ଼ି ରୁହ ଏବଂ ସେଠାକୁ ଚାଲ ।

ସାଧୋ ସହଜୈ କାୟା ସୋଧୋ ।
ଯୈଁସେ ବଟକା ବୀଜ ତାଁହିମେ, ପତ୍ର ଫଳ ଫୁଲଛାୟା ।
କାୟାମଧ୍ୟେ ବୀଜ ବିରାଜୈ, ବୀଜ ମଧ୍ୟେ କାୟା ॥
ଅଗ୍ନି ପବନ ପାନୀ ପିରଥୀ ନଭ, ତା ବିନ ମିଲୈ ନାହିଁ ।
କାଜୀ ପଣ୍ଡିତ କରୈ ନିରଣୟ କୋନ ଆପାମାହିଁ ॥

ଜଳଭର କୁମ୍ଭ ଜଳେ ବୀଚ ଧରିଯୁ। ବାହାର ଭୀତର ସୋଇ ।
ଉନକୋ ନାମ କହନ କୋନାଃହି, ଦୁଧା ଧୋଖା ହଇ ॥
କହେଁ କବୀର ଶୁନ ଭାଇ ସାଧୋ, ସତ୍ୟ ଶବ୍ଦ ନିଜ ସାର ।
ଆପାମଂଦ୍ଧ ଆପେ ବୋଲେ, ଆପେ ସିରଜନହାର ॥ ୭୦୯ „

ହେ ସାଧୋ ! ସରଳ ଚତ୍ତରେ ଦେହର ପବିତ୍ରତା ସାଧନ କର । ବଟବୀଜର ଅଭ୍ୟନ୍ତରରେ ଯେପରି ସୂକ୍ଷ୍ମରୂପରେ ବୃକ୍ଷ ଫଳ ଫୁଲ ଓ ଛାୟା ଅବସ୍ଥିତ, ସେହିପରି ଦେହ ଭିତରେ ବୀଜ ଆଉ ବୀଜ ଭିତରେ ଦେହ ବିଦ୍ୟମାନ ରହିଅଛି । ବହ୍ନି, ବାୟୁ, ସଳିଳ, କ୍ଷିତି ବ୍ୟୋମ—କେହିହେଁ ତାଙ୍କୁ ଛାଡ଼ି ମିଳେ ନାହିଁ । କାଜୀ ଓ ପଣ୍ଡିତ—ତୁମେ ଉଭୟେ ମିଶି ଏହି କଥାଟି ସ୍ଥିର କର ଯେ, ସେହି ଆତ୍ମା ଭିତରେ କିଏ ନ ଅଛି । ଜଳପୂରିତ କଳସ ଜଳ ଭିତରେ ଅଧିଷ୍ଠିତ; ବାହାରେ ପାଣି, ଭିତରେ ମଧ୍ୟ ପାଣି; କାଳେ ଦ୍ୱୈତବାଦୀର ସନ୍ଦେହ ଜନ୍ମିବ, ସେଥିପାଇଁ ତାର ନାମ କୁହାଯାଏ ନାହିଁ ଅର୍ଥାତ୍ ନାମ କହିବାକୁ ଗଲେ ପରବ୍ରହ୍ମ ଏବଂ ବକ୍ତା ଦୁହେଁ ଆସିଯାନ୍ତି ।

ହେ ସଜ୍ଜନ ! ସ୍ୱୀୟ ସାର ସେହି ସତ୍ୟ ଶବ୍ଦ (ନାଦ) ଶ୍ରବଣ କର; ସେହି ସତ୍ୟ ସ୍ୱରୂପ ପରବ୍ରହ୍ମ ଆପଣା ଭିତରେ ଆପେ ଗାଉଛନ୍ତି, ନିଜେ ସେ ଗୀତର ବକ୍ତା ଓ ଶ୍ରୋତା । ୭୦୯

ଶିଷ୍ୟ—ବାକ୍ୟପର୍ଯ୍ୟାୟରେ ଠିକ୍ ଏହି କଥା ଅଛି । ଗ୍ରାହ୍ୟ ଓ ଗ୍ରାହକ ସଚ୍ଚିଦାନନ୍ଦ ବ୍ରହ୍ମ ।

ଗୁରୁ—ହିଁ ।

ବୁଝି ବୁଝି ପଣ୍ଡିତ ପଦ ନିର୍ବାଣ ।
ସାଁଜ ପରେ କହିଁବା ବସେ ଭାନ ॥
ଉଚଁ ନୀଚ ପର୍ବତ ଢ଼େଲ୍ଲା ଇଁଟ୍ ।
ବିନୁ ଗାୟନ ତହିଁବା ଉଠେ ଗୀତ ॥

ଗୃହନ ପ୍ୟାସ ମଂଦର ନହିଁ ଜହଁବା ।
ସହସ୍ରୌ ଧେନୁ ଦୁହାବେ ତହଁବା ॥
ନିତ ଅମାବସ ନିତ ସଂକ୍ରାତ ।
ନିତ ନିତ ନବଗ୍ରହ ବୈଠେ ପାଁତ ॥
ମୈଁ ତୋ ହି ପୁଛୌ ପଣ୍ଡିତ ଜନା ।
ହୃଦୟା ଗ୍ରହଣ ଲଗ୍ କେହି ଖନା ॥
କହହିଁ କବୀର ଇତନୋ ନହି ଜାନ ।
କୌନ ଶବ୍ଦ ଗୁରୁ ଲଗା କାଣ ॥

ହେ ତତ୍ତ୍ୱଜ୍ଞ, ନିର୍ବାଣ ପଦଟି ବୁଝି ଗ୍ରହଣ କର । ସନ୍ଧ୍ୟା ସମାଗମରେ ସୂର୍ଯ୍ୟ କୋଉଠି ରହନ୍ତି ? ସେଠାରେ ଜଳ ନାହିଁ, ଶୀତ ନାହିଁ, ଡ଼େଲି ନାହିଁ, ପର୍ବତ ନାହିଁ, ଇଟା ନାହିଁ । କେହି ବୋଲୁନାହାନ୍ତି ଅଥଚ ଅନୁକ୍ଷଣ ସେଠାରେ ଗୀତଧ୍ୱନି ଉଠୁଅଛି (ଅନାହତ ନାଦ) । ସେଠାରେ ମନ୍ଦିର ନାହିଁ, ବସ୍ତିରକ ନାହିଁ, ତୃଷ୍ଣା ନାହିଁ, ସେଠାରେ ସହସ୍ର ସହସ୍ର ଗାଈ ଯୁଗପତ୍ ଦୋହନ ହେଉଛନ୍ତି । ସେଠାରେ ନିତ୍ୟ ଅମାବସ୍ୟା ବିଦ୍ୟମାନ; ନିତ୍ୟ ପୌର୍ଣ୍ଣମାସୀ ବିରାଜିତ, ସେଠାରେ ସର୍ବଦା ନବଗ୍ରହ ଶ୍ରେଣୀବଦ୍ଧ ହୋଇ ଅବସ୍ଥାନ କରୁଛନ୍ତି ।

ହେ ତତ୍ତ୍ୱଜ୍ଞ, ମୁଁ ତୁମକୁ ପଚାରୁଛି—କେତେବେଳେ ହୃଦୟର ଗ୍ରହଣ ଉପସ୍ଥିତ ହୁଏ ? ତୁମେ ଯଦି ଏତିକ ବି ଜାଣିନାହଁ, ତା ହେଲେ ଗୁରୁ କି ଶବ୍ଦ ତୁମ କାନରେ ପୂରାଇଛନ୍ତି ? ୬୧୨

ଗଗନ ମଣ୍ଡଲ ବୀଚମେ, ଯାଁହା ସୋହଂଗମ ଡୋରି ।
ସବ୍ଦ ଅନାହଦ ହୋତ ହୈ, ସୁରତ ଲଗୀ ତାଁହା ମୋରି ॥ ୧
କବୀର କମଲ ପ୍ରକାସିୟା, ଉଗା ନିର୍ମଲ ସୁର ।
ରୈନ ଆଁଧାରୀ ମିଟି ଗଇ, ବାଜେ ଅନହଦ ତୂର ॥ ୨

ନିର୍ଝର ଝରେ ଅନହଦ ବାଜେ, ତବ ଉପଜେ ବ୍ରହ୍ମଗିଆନ ।
ଅବିଗତ ଅଂତର ପ୍ରଗଟହି, ଲଗା ପ୍ରେମ ନିଜ ଧ୍ୟାନ ॥ ୩

ସନ୍ତବାଣୀସଂଗ୍ରହ

ଦାସବୋଧ-ଗ୍ରନ୍ଥରେ ରାମଦାସ ସ୍ୱାମୀ କହିଛନ୍ତି—
ନାଦରୂପ ଜ୍ୟୋତିରୂପ ଚୈତନ୍ୟରୂପ ।
ସତ୍ତ୍ୱରୂପ ସାକ୍ଷରୂପ ସ୍ୱସ୍ୱରୂପ ଐସିଂ ନାମେଂ ॥

ଶିଷ୍ୟ—ଏ ଶିବାଜୀଙ୍କ ଗୁରୁ ଥିବେ ?

ଗୁରୁ—ହଁ । ନାନକଜୀ କହିଚନ୍ତି—

କୈସି ଅବରତି ହୋଇ,
ଭବଖଣ୍ଡନା ତେରି ଆରତି ।
ଅନାହତା ଶବ୍ଦ ବାଜନ୍ତ ଭେରୀ ॥
ଜୟ ଜୟ ଜୟଦେ ଆରତି ।
ଯୋଗୀର ହୃଦୟ ମାଝେ
ଅନାହତଭେରୀ ବାଜେ
ଓଦେ ଭବଖଣ୍ଡନ ମହାନ୍ ଆରତି ॥

ଜପଜୀ ଦରବେଶ

ହୁକ୍‌ମେ ଅନ୍ଦର ସଭକୋ, ବାହାର ହୁକୁମନ କୋଇ ।
ନାନକ ହୁକ୍‌ମେ ଜେବୁ ଝେତ ଇତମେ କହେ ନ କୋଇ ॥

୭ ଏଜନ୍

ସର୍ବଘଟେ ବିରାଜତ ଅନାହତ ଧ୍ୱନି,
ଅଗମ୍ୟ ତାଁହାର ତତ୍ତ୍ୱ ଅତି ଗୁପ୍ତ ଖନି;
ହୁକୁମ ଯେ ବୁଝେ ତାର ସରେ ନା ବଚନ,
ଆମି ଆମି ବ୍ୟର୍ଥ ବାଣୀ କହେନା ସେ ଜନ ।
ଜ୍ଞାନ ବୁଦ୍ଧି ଲୁପ୍ତ ତାର ମହିମାର ବନେ,
ନାନକ ତାହାର ତତ୍ତ୍ୱ କେହ ନାହିଁ ଜାନେ ।

ଗୁରୁମୁଖି ନାଦଂ ଗୁରୁମୁଖି ବେଦଂ
ଗୁରୁମୁଖି ରହ୍ୟାସ୍ତୁ ସମାଇ ॥ ୫ ଏଜନ୍

ଗୁରୁମୁଖେ ନାଦ ଧ୍ୱନି ଗୁରୁମୁଖେ ବେଦବାଣୀ
ଗୁରୁ ଜ୍ଞାନଦାତା ମନ, ରଖ ପଦେ ରତି ।
ମଜ ମନ ନାମ ଗାନେ ତାଁର ଗୁଣ ଶୁନ କାଣେ
ସକଳ ଯାତନା ହତେ ପାଇବେ ମୁକତି ॥

ବାଜେ ନାଦ ଅନେକ ଅସଂଖା କେତେ ବା ବନ ହାରେ ॥ ୨୭

ଶୁଣ୍ଦେକେ ସ୍ତବ ସୁତି ଅସଂଖ୍ୟ କେ ଜାନେ କତ,
ଅନାଦ୍ୟ ରଗିଣୀ ଧ୍ୱନି ଶୁନା ଯାସ୍ତ ଅବରତ ।

ଭୂପତି ଗିଆନ୍ ଦୟା ଭଣ୍ଡାରଣ, ଘଟ ଘଟ ବାଜହି ନାଦ ।
ଆପି ନାଥ ନାଥୀ ସବ ଜାକୀ, ଋଦ୍ଧି ସିଦ୍ଧି ଅବରସାଦ ॥ ୨୯ ,,

ଗିଆନ ଖଣ୍ଡ ମହି ଗିଆନ ପରଚଣ୍ଡ ।
ତିତ୍‌ଥୈ ନାଦ ବିନୋଦ କୋଡ଼ ଆନନ୍ଦ ॥ ୩୬ ଏଜନ୍
ସ୍ୱତଃ ପ୍ରକାଶିତ ଦିବ୍ୟ ଜ୍ୟୋତିର୍ମୟ ଜ୍ଞାନ-ମଣି,
ବିନୋଦ ନନାଦେ ତାର କୋଟି ଆନନ୍ଦର ଖନି ॥

ପଞ୍ଚମ ଶିଖଗୁରୁ ଅର୍ଜୁନ ଦେବ ସୁଖମନୀରେ କହିଛନ୍ତି—

ଶୁଂନ ସମାଧି ଅନହତ ତହ ନାଦ ।
କହନ ନଜାଇ ଅଚରଜ ବିସମାଦ ॥ ୧ । ୨୩ ଅଃ
ନିର୍ବିକଳ୍ପ ସମାଧିରେ ଅନାହତ ଧ୍ୱନି ।
ସେ ଆଶ୍ଚର୍ଯ୍ୟ ବାର୍ତ୍ତା ନହେ ପ୍ରକାଶ୍ୟକ ଖନି ॥ ଦଉବେଶ
ଜୈ ଜୈ ଶବଦ ଅନାହଦ ବାଜୈ ।
ଶୁନି ଶୁନି ଅନଦ କରେ ପ୍ରଭୁ ଗାଜୈ ॥ ୩ ଏଜନ୍
ଅନାହତ ଧ୍ୱନି କର୍ଣ୍ଣେ ବାଜେ ଜୟଜୟ ।
ସୁଖେ ସେଇ ଶବ୍ଦ ଶୁଣି ପ୍ରଭୁରେ ଦେଖୟ । ଏଜନ୍

ଶିଷ୍ୟ—ଏମାନେ ଖାଲି ହେଲେ ନାଦ ସାଧକ ?

ଗୁରୁ—ହଁ, ଏମାନଙ୍କ ପୂର୍ବରୁ ମଧ୍ୟ ବହୁ ନାଦ ସାଧକ ଥିଲେ—ଦାଦୂ ସାହେବଙ୍କ କଥା ଶୁଣ ।

(ଦାଦୂ) ସବଦେଁ ବଂଧା ସବରହେ, ସବଦେଁ ସବହି ଜାୟ ।
ସବଦେଁ ହି ସବ ଊପଜୈ, ସବଦେଁ ସବୈ ସମାୟ ॥ ୧
(ଦାଦୂ) ସବଦେଁ ହି ସଚୁ ପାଇୟେ, ସବଦେଁ ହି ସନ୍ତୋଷ ।
ସବଦେଁ ହି ଇସ୍ଥିର ଭୟା, ସବଦେଁ ଭାଗା ସୋକ ॥ ୨

ଯାରୀ ସାହେବ କହୁଛନ୍ତି—
ବାଜ ଅନହଦ ବାଁସୁରୀ ତିର ବେନୀକେ ତୀର ।
ରାଗ ଛତୀସୀ ହୋଇ ରହେ ଗରଜେ ଗଗନ ଗଁଭୀର ॥ ୪
ଆଠ ପହର ନିରଖତ ରହୌ, ସନ୍ମୁଖ ସଦା ହୁଜୂର ।
କହୟାରୀ ଘରହି ମିଲେ, କାହେ ଜାତେ ଦୂର ॥ ୫
ଜୈସେ ତିଲମେ ତୂଲହୈ ବାସ ଯୋ ରହା ସମାୟ ।
ଐସେ ସବଦ ଶରୀରମେ, ସବ ଘଟ ସୁରତି ଦିଖାୟ ॥ ୧
କହ ଦରିୟା ସତଗୁରୁ, ସବଦମେ କରେ ବିଗୂର ।
ଜବ ଶ୍ରବ ଶ୍ରବଂବର ହୈ, ତବ ଛୁଟି ହୈ ସସାର ॥ ୨

ଶୁକଦେବଶିଷ୍ୟ ଚରଣଦାସଜୀଙ୍କ ବାଣୀଗୁଡ଼ିକ ବଡ଼ ମଧୁର—
ଅନହଦ ସରଦ ଅପାର ଦୂର ସୁଁ ଦୂର ହୈ ।
ଚେତନ ନିର୍ମଲ ସୁଦ୍ଧ ଦେହ ଭରପୁର ହୈ ॥ ୧
ନିଃଛର ହୈ ତାହି, ଔର ନିଃକର୍ମ ହୈ ।
ପରମାତନ ତେହି ମାନ, ବହୀ ପରବ୍ରହ୍ମ ହୈ ॥ ୨
ସନ୍ତବାଣୀସଂଗ୍ରହ

ଶିଷ୍ୟ—ଏ ନାଦକୁହିଁ ପରମାତ୍ମା ପରବ୍ରହ୍ମ ବୋଲି କହିଲେ ।

ଗୁରୁ—ହଁ । ଏହାପରେ ସନ୍ତ ବା ରାଧାସ୍ୱାମୀଙ୍କ ମତ ଶ୍ରବଣ କର ।

ସନ୍ତମାନେ ଧ୍ୱନ୍ୟାତ୍ମକ ବର୍ଣ୍ଣାତ୍ମକ ଶବ୍ଦକୁ ହିଁ ନାମ କହନ୍ତି । ଯେଉଁ ଧ୍ୱନି ବ୍ରହ୍ମାଣ୍ଡ ଓ ବ୍ରହ୍ମାଣ୍ଡ ଉପରୁ ଆସେ—ତାହା ଧ୍ୱନ୍ୟାତ୍ମକ । ଯାହା ଲେଖିବାରେ ବାକ୍ୟକଥନରେ ବ୍ୟବହୃତ ହୁଏ, ତାହା ବର୍ଣ୍ଣାତ୍ମକ । ନାମ ଦୁଇପ୍ରକାର—ପ୍ରାକୃତିକ ଓ କୃତ୍ରିମ, ଓଁକାର ତାଙ୍କର ପ୍ରାକୃତିକ ନାମ ।

ସନ୍ତଗଣ କହନ୍ତି ସୂର୍ଯ୍ୟ କିରଣ ଯେପରି ସୂର୍ଯ୍ୟର ଅଂଶ, ଜୀବ ମଧ୍ୟ ସେହିପରି ସତ୍ୟ ପୁରୁଷ ରାଧାସ୍ୱାମୀଙ୍କର ଅଂଶ । ଜୀବକୁ ଏମାନେ ସୁରତ କହନ୍ତି ।

ଆଦି ଶବ୍ଦର ନାମ ସ୍ୱାମୀ, ଆଦି ସୁରତର ନାମ ରାଧା । ଆଦିରେ ଯେତେବେଳେ ସର୍ବାଧିପତିଙ୍କର ପ୍ରକାଶ ହୁଏ, ସେତେ-ବେଳେ ସର୍ବାଗ୍ରେ ଶବ୍ଦ ହୋଇଥିଲା, ଏହି ଶବ୍ଦ ହିଁ ସ୍ୱାମୀ । ସେହି ଶବ୍ଦରୁ ଯେଉଁ ଧାର ନିର୍ଗତ ହୋଇଥିଲା, ତାହାର ନାମ ଆଦି ସୁରତ ।

ପ୍ରେମୀର ନାମ ରାଧା, ପ୍ରିୟତମ ବା ପ୍ରେମାସ୍ପଦଙ୍କର ନାମ ସ୍ୱାମୀ; ସ୍ୱାମୀ ସିନ୍ଧୁରୂପକ ଜଳରାଶି ସଦୃଶ ଓ ରାଧା ତାଙ୍କର ତରଙ୍ଗସ୍ୱରୂପ । ଯେପରି ଜଳ ଓ ତରଙ୍ଗରେ କୌଣସି ବିଭେଦ ନାହିଁ, ସେହିପରି ରାଧା ସ୍ୱାମୀ ଏହି ଉଭୟଙ୍କ ଭିତରେ କୌଣସି ବିଭିନ୍ନତା ନାହିଁ ।

୬ । ପ୍ରଶ୍ନ—ସୁରତର ଧାରକୁ ଜୀବନ ଓ ଆତ୍ମାର ପ୍ରବାହ କୁହାଯାଏ—ଏହାକୁ କିପରି ଅବଲମ୍ବନ କରି ଚାଲିବାକୁ ହେବ ?

୬ । ଉତ୍ତର—ସୁରତର ଧାର ହିଁ ଅମୃତ ପ୍ରକାଶ ଏବଂ ଶବ୍ଦର ଧାର—ଏହାକୁ ନାଦ ବା ଗୁପ୍ତଧ୍ୱନି କୁହନ୍ତି । ଇଂରାଜୀରେ ଏହାକୁ "ଓ୍ୱାର୍ଡ୍" କୁହାଯାଏ । ଆଦିରେ ଶବ୍ଦଦ୍ୱାରା ସର୍ବାଧିପତିଙ୍କର ପ୍ରକାଶ ହୋଇଥିଲା ଏବଂ ସେହି ଶବ୍ଦର ଧାର ପ୍ରତ୍ୟେକ ସ୍ଥାନରେ ବା ମଣ୍ଡଳରେ ଅବସ୍ଥିତ କରି ରଚନା କରି କରି ନିମ୍ନକୁ ଆସିଅଛି । ସେହି ଧାର ଦ୍ୱାରା ମନୁଷ୍ୟ ଓ ଯାବତୀୟ ଜୀବଜନ୍ତୁ ସଚେତନ ଅଛନ୍ତି, ଏବଂ ଏହି ଧାର ହିଁ ଯେଉଁ ସ୍ଥାନରେ ଯେପରି ସୃଷ୍ଟିର ଉପଯୋଗୀ ପଦାର୍ଥ ଅଛି ସେଠାରେ ସେହିପରି ରଚନା କରିଅଛି । ବାସ୍ତବିକ୍ ଶବ୍ଦ ହିଁ ସମସ୍ତର କର୍ତ୍ତା, ଏହି ଶବ୍ଦ ହିଁ ବେଦରେ ଶବ୍ଦବ୍ରହ୍ମ ବୋଲି ଉଲ୍ଲିଖିତ ହୋଇଅଛି ।

ପାରସ୍ୟ ଭାଷାରେ ଏହାକୁ ସମସ୍ତେ କଲମ ଇଲାହି ଓ କୁଦରତ ଅର୍ଥାତ୍ ଈଶ୍ୱରବାଣୀ ଓ ଐଶୀ ଶକ୍ତି ବୋଲି କହନ୍ତି । ଏବଂ ଇଂରାଜୀ ଧର୍ମଗ୍ରନ୍ଥରେ ଲିଖିତ ଅଛି ଯେ "ଆଦିରେ ଶବ୍ଦ, ଏହି ଶବ୍ଦ ଈଶ୍ୱରଙ୍କ ସହିତ ଥିଲା, ଏହି ଶବ୍ଦ ହିଁ ଈଶ୍ୱର ଥିଲା ।"

ଆଉ ଏହା ମଧ୍ୟ ସମସ୍ତେ ଅବଗତ ଅଛନ୍ତି ଯେ ଶବ୍ଦ ପରି ପଥପ୍ରଦର୍ଶକ ଏବଂ ଉଦ୍ଦିଷ୍ଟ ସ୍ଥାନକୁ ନେଇଯିବାପାଇଁ ସକ୍ଷମ ଆଉ କେହି ନାହିଁ । ଯେପରି ଅନ୍ଧକାରମୟ ମେଘାଚ୍ଛନ୍ନ ନିଶୀଥରେ ଚନ୍ଦ୍ର ନକ୍ଷତ୍ର ବିଦ୍ୟୁତ୍ ଅଥବା କୌଣସି ପ୍ରକାର ଆଲୋକ ନ ଥିଲେ ବଣ ମଧ୍ୟରେ ପଥଭ୍ରାନ୍ତ ବ୍ୟକ୍ତି ଦୂରରୁ ମନୁଷ୍ୟ ଅଥବା କୌଣସି ଗ୍ରାମ୍ୟ ଜନ୍ତୁର ଶବ୍ଦ ଶ୍ରବଣ ଓ ଲକ୍ଷ୍ୟ କରି ଏକ କୋଶ ଅଥବା ଦୁଇ କୋଶ ଦୂରସ୍ଥିତ ଗ୍ରାମରେ ଉପସ୍ଥିତ ହୋଇପାରେ, ସେହିପରି ଯେ ଆଦି କର୍ତ୍ତାଙ୍କ ଧାମକୁ ଯିବାକୁ ଇଚ୍ଛା କରନ୍ତି, ସେ ଆତ୍ମା ଅର୍ଥାତ୍ ଶବ୍ଦର ଧାର ଅବଲମ୍ବନ ପୂର୍ବକ ନିଜ ଦେହ-ମଧ୍ୟରେ ଚାଲିଲେ ଲକ୍ଷ୍ୟସ୍ଥାନରେ ଉପନୀତ ହୋଇ ପାରିବେ ।

ପ୍ରତ୍ୟେକ ସ୍ଥାନର ଶବ୍ଦ ପୃଥକ୍ ପୃଥକ୍ ହୁଏ । ଏହାର ତତ୍ତ୍ୱ ଅର୍ଥାତ୍ କେଉଁ ଶବ୍ଦ ଅବଲମ୍ବନରେ କେଉଁଠିକୁ ଯିବାକୁ ହେବ, ତାହା କେବଳ ତତ୍ତ୍ୱଜ୍ଞ ଓ ସାଧକ ଗୁରୁଙ୍କ ନିକଟରୁ ଜଣାଯାଇପାରେ । ଏହି ସବୁ ଶବ୍ଦ ମନୁଷ୍ୟ ଦେହରେ ସର୍ବଦା ଧ୍ୱନିତ ହେଉଅଛି । କୌଣସି ଜୀବ ହିଁ ଶବ୍ଦବିହୀନ ନୁହେଁ, କାରଣ ଶବ୍ଦ ହିଁ ଚୈତନ୍ୟର ସ୍ୱରୂପ ଓ ନିଦର୍ଶନ । ମନୁଷ୍ୟକୁ ବାକ୍‌ଶକ୍ତିବିଶିଷ୍ଟ ପୁରୁଷ କୁହାଯାଏ, ଏବଂ ବାକ୍ୟ ଅର୍ଥାତ୍ ଶବ୍ଦହିଁ ଏହାର ସ୍ୱରୂପ । ପ୍ରତ୍ୟେକ ସ୍ଥାନର ଶବ୍ଦର କ୍ଷମତା ଓ ପ୍ରଭାବ ଭିନ୍ନ ଭିନ୍ନ ଏବଂ କୌଣସି ଶବ୍ଦ ଶକ୍ତିହୀନ ନୁହେଁ । ସନ୍ତଗଣ ଏହି ଶବ୍ଦକୁ ନାମ ବୋଲି ବର୍ଣ୍ଣନା କରିଛନ୍ତି, ଏବଂ ସେମାନେ କହନ୍ତି—କଳିଯୁଗରେ ଗୁରୁ ଓ ନାମ ବ୍ୟତୀତ ଜୀବଗଣଙ୍କର ଉଦ୍ଧାର ସାଧନ ହୋଇପାରିବ ନାହିଁ । ବେଦରେ, ବାଇବେଲରେ ଏବଂ ମୁସଲମାନମାନଙ୍କର ଧର୍ମପୁସ୍ତକରେ ମଧ୍ୟ ଏ କଥାର ପ୍ରମାଣ ଅଛି ।

ପ୍ରଶ୍ନ । ୭—ଘଟାଭ୍ୟନ୍ତରିକ ଶବ୍ଦ ଓ ବୈଖରୀ ଅର୍ଥାତ୍ ଜିହ୍ୱା-ଦ୍ୱାରା ଉଚ୍ଚାରିତ ଶବ୍ଦ—ଏ ଉଭୟଙ୍କର କିଛି ପ୍ରଭେଦ ଅଛି ନା ନାହିଁ ?

ଉତ୍ତର । ୭—ହଁ, ଏହି ଦୁଇ ଶବ୍ଦର ପ୍ରଭେଦ ଅଛି ଏବଂ ଏମାନଙ୍କର ଉତ୍ପତ୍ତି ସ୍ଥାନର ମଧ୍ୟ ବିଭିନ୍ନତା ଅଛି । ନେତ୍ରଦ୍ୱୟର ଉପରିସ୍ଥିତ ସ୍ଥାନଗୁଡ଼ିକରୁ ଯେଉଁ ଶବ୍ଦ ଉତ୍ପନ୍ନ ହୁଏ ତାହାକୁ ଧ୍ୱନ୍ୟାତ୍ମକ ଶବ୍ଦ କୁହାଯାଏ ଏବଂ ଏହି ଶବ୍ଦର ଧ୍ୱନି ଜିହ୍ୱା ସାହାଯ୍ୟ ବ୍ୟତୀତ ସର୍ବଦା ଉପରିସ୍ଥ ଘଟରେ ଅର୍ଥାତ୍ ମସ୍ତକର ଅଭ୍ୟନ୍ତରରେ ଧ୍ୱନିତ ହେଉଅଛି । ବୈଖରୀ ଶବ୍ଦକୁ ବର୍ଣ୍ଣାତ୍ମକ ଶବ୍ଦ କୁହାଯାଏ । ଏହା ଲେଖିବାରେ ଓ ବାକ୍ୟକଥନରେ ବ୍ୟବହୃତ ହୁଏ । ହୃଦୟସ୍ଥ ଶବ୍ଦକୁ ପଶ୍ୟନ୍ତୀ ଏବଂ କଣ୍ଠର ଶବ୍ଦକୁ ମଧ୍ୟମା କୁହାଯାଏ । ଏହି

ବର୍ଣ୍ଣାତ୍ମକ ଶବ୍ଦର ଶକ୍ତି ଓ ପ୍ରଭାବ ପ୍ରତ୍ୟହ ପ୍ରତ୍ୟକ୍ଷୀଭୂତ ହେଉଅଛି । ରାଜ୍ୟର ବ୍ୟବସ୍ଥା ବାଣିଜ୍ୟର କାର୍ଯ୍ୟ ଓ ସାଂସାରିକ ଯାବତୀୟ କାର୍ଯ୍ୟ ଏହି ଶବ୍ଦଦ୍ୱାରା ଚାଲୁଅଛି ଏବଂ ଏହାର କ୍ଷମତା ଏପରି ଯେ ଏହା ନିମେ-ଷକରେ ଲୋକଙ୍କୁ ହସାଉଛି, କନ୍ଦାଉଛି, ଯୁଦ୍ଧରେ ପ୍ରବୃତ୍ତ କରାଉଛି, ଅଧୀନତା ସ୍ୱୀକାର କରାଉଅଛି, ଏବଂ ମିତ୍ରତା ଓ ଶତ୍ରୁତା ଉତ୍ପାଦନ କରାଉଅଛି । ବର୍ତ୍ତମାନ ବିବେଚନା କରି ଦେଖିବା ଉଚିତ, ଯଦି ଏହି ନିମ୍ନ ଓ ସ୍ଥୂଳ ଦେହର ଶବ୍ଦ ଏପରି ବିଶେଷ କ୍ଷମତାଶାଳୀ, ତେବେ ଯେଉଁ ଶବ୍ଦ ଉଚ୍ଚ ଓ ସୂକ୍ଷ୍ମ ସ୍ଥାନରୁ ଉତ୍ଥିତ ହେଉଅଛି, ତାହାର କ୍ଷମତା କେତେ ବେଶୀ ହୋଇଥିବ ।

ଶେଷୋକ୍ତ ଶବ୍ଦଦ୍ୱାରା ହିଁ ତ୍ରିଲୋକ ଓ ତାହାର ଉପରିସ୍ଥ ଲୋକର ସମସ୍ତ କାର୍ଯ୍ୟ ନିର୍ବାହିତ ହେଉଅଛି । ଘଟ ଦୁଇଟି—ନିମ୍ନସ୍ଥ ଘଟ ଜଙ୍ଘଠାରୁ କଣ୍ଠ ପର୍ଯ୍ୟନ୍ତ ଓ ଦ୍ୱିତୀୟ ଘଟ କଣ୍ଠଠାରୁ ଶିଖା ପର୍ଯ୍ୟନ୍ତ । ଏହି ଦୁଇ ଘଟ ପରସ୍ପର ଏପରି ଭାବରେ ମିଳିତ ହୋଇଅଛି, ଯେପରି ଦୁଇଟି ମାଠିଆର ମୁହଁ ଏକତ୍ରିତ କରି ରଖାଯାଇଛି । ନିମ୍ନସ୍ଥ ଘଟର ତତ୍ତ୍ୱ ସମସ୍ତେ ଅବଗତ ଅଛନ୍ତି । କିନ୍ତୁ ଉପରିସ୍ଥ ଘଟର ତତ୍ତ୍ୱ କେବଳ ସନ୍ତଗଣହିଁ ସମ୍ପୂର୍ଣ୍ଣ ରୂପେ ଜ୍ଞାତ ଥାନ୍ତି ଏବଂ ବର୍ତ୍ତମାନ କାଳରେ ଦୟାମୟ ରାଧାସ୍ୱାମୀ ଜୀବଗଣଙ୍କ ଉପରେ ଅତିଶୟ ଦୟା କରି ସନ୍ତ ସଦ୍‌ଗୁରୁ ରୂପ ଧାରଣ ପୂର୍ବକ ଏହା ପ୍ରକାଶ କରିଛନ୍ତି । ସାରବଚନ ୨୯ । ୩୦ । ୩୧ ପୃଷ୍ଠା

ସୁରତ ଶବ୍ଦ ମିଳିଲେ ତେବେ ଭଲେକା କହୁଁ
ସୁରତ ଚଢ଼ି ନଭମାହିଁ ତେବେ ଭଲେକା କହୁଁ
ଗଗନ ତ୍ରିକୁଟି ଯାଓ ତେବେ ଭଲେକା କହୁଁ
ଦଶମଦ୍ୱାର ସମାଓ ତେବେ ଭଲେକା କହୁଁ

ଭ୍ରମର ଗୁଫା ଚଢ଼ ଆଓ ତେରେ ଭଲେଖା କହୁଁ
ଅଲଖ ଅଗମକୋ ପାଓ ତେରେ ଭଲେଖା କହୁଁ

ଶିଷ୍ୟ—ଏହା ତ ସମସ୍ତ ଉପନିଷଦ ଆଦି ଶାସ୍ତ୍ରକଥିତ ପଥ, ମାତ୍ର ପରା ଆଦି ଶବ୍ଦର ସ୍ଥାନ କଥା ଅନ୍ୟ ପ୍ରକାର ଅଛି । ନିମ୍ନ ଘଟ, ଉପରିଘଟ—ଏ ଦୁଇଟିର ପାର୍ଥକ୍ୟ କହିଛନ୍ତି ।

ଗୁରୁ—ବରାହଶ୍ରୁତିରେ ଅଛି:—

ମୂଳାଧାରାଦି ଷଟ୍‌ଚକ୍ରଂ ଶକ୍ତିସ୍ଥାନ ମୁଦାହୃତମ୍ ।
କଣ୍ଠାଦୁପରି ମୂର୍ଦ୍ଧାନ୍ତଂ ଶାମ୍ଭବଂ ସ୍ଥାନମୁଚ୍ୟତେ ॥ ୫୩

ମୂଳାଧାରାଦି ଷଟ୍‌ଚକ୍ର ଶକ୍ତିସ୍ଥାନ ଏବଂ କଣ୍ଠର ଉପରୁ ମସ୍ତକ ପର୍ଯ୍ୟନ୍ତ ଶାମ୍ଭବ ସ୍ଥାନ । ଦେହକୁ ଅନେକ ସ୍ଥଳରେ ଘଟଶ୍ରୁତି କହିଛନ୍ତି, ଏହାକୁ ପିଣ୍ଡ ମଧ୍ୟ କହିଛନ୍ତି ।

ନାଡ଼ୀନାମାଶ୍ରୟଃ ପିଣ୍ଡୋ ନାଡ଼୍ୟଃ ପ୍ରାଣସ୍ୟ ଚାଶ୍ରୟଃ ।
ଜୀବସ୍ୟ ନିଳୟଃ ପ୍ରାଣୋ ଜୀବୋ ହଂସସ୍ୟ ଆଶ୍ରୟଃ ॥ ୫୪
ହଂସୋ ଶକ୍ତେରଧିଷ୍ଠାନଂ ଚରାଚରମିଦଂ ଜଗତ୍ ।

ଶିଷ୍ୟ—ବାଇବେଲରେ ମଧ୍ୟ ଶବ୍ଦ କଥା ଅଛି ।

ଗୁରୁ—ବେଦବାଣୀର ପ୍ରତିଧ୍ୱନି:—

"In the beginning was the word and the word was with God and the word was God."

ସୃଷ୍ଟିର ଆଦିରେ ଶବ୍ଦମାତ୍ର ଥିଲା, ସେହି ଶବ୍ଦ ପରମେଶ୍ୱରଙ୍କ ଠାରେ ଅବସ୍ଥିତ ଥିଲା ଏବଂ ସେହି ଶବ୍ଦହିଁ ଈଶ୍ୱର ।

ଶିଷ୍ୟ—ବେଦ ଏବଂ ବାଇବେଲରେ ତ ଏକା କଥା ଜଣାଯାଉଛି ।

ଗୁରୁ—ପୁରାଣରେ ମଧ୍ୟ ଶବ୍ଦକୁ ଈଶ୍ୱରବାଣୀ ବା ଐଶୀ ଶକ୍ତି ବୋଲି କୁହାଯାଇଅଛି ।

ଶିଷ୍ୟ—ଶବ୍ଦ ତ ଈଶ୍ୱରଙ୍କର ହିଁ ଶକ୍ତି । ତ୍ରୈଲୋକ୍ୟ ମଣ୍ଡଳର ଶବ୍ଦ ଭିନ୍ନ ବୋଲି କହୁଛନ୍ତି ।

ଗୁରୁ—ଏ କଥା ପରେ କହିବି ।

ସାଂଖ୍ୟଯୋଗାଚାର୍ଯ୍ୟ ଶ୍ରୀମତ୍ ହରିହରାନନ୍ଦ ଆରଣ୍ୟସଙ୍କଳିତ ପାତଞ୍ଜଳଦର୍ଶନରେ ଅଛି:—

ବୈଷୟିକ ଧାରଣା ମଧ୍ୟରେ ଶବ୍ଦର ଧାରଣା ଓ ଜ୍ୟୋତିର ଧାରଣା ପ୍ରଧାନ । ଏହା ମଧ୍ୟରେ ହାର୍ଦ୍ଦ ଜ୍ୟୋତିକୁ ଅବଲମ୍ବନ କରି ବୁଦ୍ଧିତତ୍ତ୍ୱର ଧାରଣା (ଅର୍ଥାତ୍ ଜ୍ୟୋତିଷ୍ମତୀ ପ୍ରବୃତ୍ତି ପ୍ରଧାନ) ଶବ୍ଦ ଧାରଣା ମଧ୍ୟରେ ଅନାହତ ନାଦର ଧାରଣା ପ୍ରଧାନ । ଏହା ନିଃଶବ୍ଦ ସ୍ଥାନରେ (ଗିରିଗୁହା ଆଦିରେ) ସାଧନ କରିବାକୁ ହୁଏ । ନିଃଶବ୍ଦ ସ୍ଥାନରେ ଚିତ୍ତ ସ୍ଥିର କଲେ, ବିଶେଷତଃ କିଛି ପ୍ରାଣାୟାମ କଲେ, ନାନାପ୍ରକାର ଅଭ୍ୟନ୍ତରସ୍ଥ ନାଦ (ପ୍ରାୟଶଃ ଦକ୍ଷିଣ କର୍ଣ୍ଣରେ) ଶ୍ରୁତ ହୁଏ । ଚିଁ ନାଦ, ଶଙ୍ଖନାଦ, ଘଣ୍ଟାନାଦ, କରତଳଗତ ନାଦ, ମେଘନାଦ ପ୍ରଭୃତି ଅନାହତ ନାଦ ଅଭ୍ୟସ୍ତ ହୋଇଗଲେ ଏମାନେ ସର୍ବ ଶରୀରରେ, ହୃଦୟରେ, ସୁଷୁମ୍ନା ଭିତରେ ଓ ମସ୍ତକରେ ଶ୍ରୁତ ହୁଅନ୍ତି । ଏହିପରି ଆଧ୍ୟାତ୍ମିକ ଦେଶରେ ଏହା ଶ୍ରବଣ କରୁ କରୁ କ୍ରମଶଃ ବିନ୍ଦୁରେ ଆସି ଉପନୀତ ହେବାକୁ ହୁଏ । ଶବ୍ଦ ବସ୍ତୁତଃ କ୍ରିୟାର ଧାରା, ସୁତରାଂ ଶବ୍ଦରେ ଚିତ୍ତ ସ୍ଥିର ହେଲେ ଦୈଶିକ ବିସ୍ତାର-ଜ୍ଞାନ ଲୋପ ହୁଏ । ତାହାହିଁ ବିନ୍ଦୁ । ଶବ୍ଦର ବିସ୍ତାରହୀନ ମାନସିକ ଭାବମାନେ ହିଁ ବିନ୍ଦୁ । ସୁତରାଂ ତଦ୍ଦ୍ୱାରା ମନରେ ଉପନୀତ ହୁଅନ୍ତି । ଶାସ୍ତ୍ରରେ ଅଛି, ନାଦ ମଧ୍ୟରେ ବିନ୍ଦୁ, ବିନ୍ଦୁ ମଧ୍ୟରେ ମନ, ସେହି ମନ ଯେତେବେଳେ ବିଲୟ ହୁଏ—ତାହାହିଁ ବିଷ୍ଣୁଙ୍କର ପରମପଦ ।

ମାର୍ଗଧାରଣା ମଧ୍ୟ ଅନ୍ୟତମ ଜ୍ୟୋତିର୍ଧାରଣା, କାରଣ ଜ୍ୟୋତିଦ୍ୱାରା ହିଁ ବ୍ରହ୍ମମାର୍ଗ ଚିନ୍ତା କରିବାକୁ ହୁଏ, ଏବଂ ଏହାର

ଶାସ୍ତ୍ରୋକ୍ତ ନାମ ମଧ୍ୟ ଅର୍ଚ୍ଚିରାଦ ମାର୍ଗ । ଏହା ଦ୍ୱିବିଧ—ଗୋଟିଏ ପିଣ୍ଡ ବ୍ରହ୍ମାଣ୍ଡ ମାର୍ଗ, ଅନ୍ୟଟି ଉପରୋକ୍ତ ଶିବଯୋଗ ମାର୍ଗ । ପ୍ରାଣୀମାନଙ୍କର ଆଧ୍ୟାତ୍ମିକ ଅବସ୍ଥା ଅନୁସାରେ ଗୋଟିଏ ଗୋଟିଏ ଲୋକକୁ ଗତ ହୁଏ । ଆଧ୍ୟାତ୍ମିକ ଉନ୍ନତରେ ଦେହାଭିମାନ ତ୍ୟାଗ ହୁଏ । ଯେତକ ଯେତକ ପରିମାଣରେ ଦେହାଦିର ଅଭିମାନ ତ୍ୟାଗ ହୁଏ ସେହି ଅନୁସାରେ ଉଚ୍ଚ ଉଚ୍ଚ ଲୋକକୁ ଗତ ହୁଏ । ସୁତରାଂ ନିରଭିମାନତାର ଗୋଟିଏ ଗୋଟିଏ ଅବସ୍ଥା ସହିତ ଗୋଟିଏ ଗୋଟିଏ ଲୋକର ସମ୍ବନ୍ଧ । ୧୬୩ ପୃଷ୍ଠା

ଆକାଶ ଶବ୍ଦଗୁଣକ ! ଶବ୍ଦ ଆକାରହୀନ କ୍ରିୟାପ୍ରବାହ ମାତ୍ର । ସର୍ବଶରୀର ସେହିପରି କ୍ରିୟାପୁଞ୍ଜ ମାତ୍ର--ଏହିପରି ଭାବନା ହିଁ କାୟାକାଶ ସମ୍ବନ୍ଧରେ ଭାବନା । ଶରୀରବ୍ୟାପୀ ଅନାହତ ନାଦ ଭାବନା ଦ୍ୱାରା ମଧ୍ୟ ଏହା ସିଦ୍ଧ ହୁଏ । ଶାସ୍ତ୍ରାନ୍ତରରେ ସେଇଥିପାଇଁ ଅନାହତ ନାଦ ବିଶେଷ ଭାବନାଦ୍ୱାରା ଆକାଶ ଗତି ସିଦ୍ଧ ହୁଏ ବୋଲି କଥିତ ଅଛି । ଏଜନ ୨୧୫ ପୃଷ୍ଠା

କ୍ଷେତ୍ରଜ୍ଞ ବିଷୟଜ୍ଞ ସ୍ମୃତି ସାଧନ ମଧ୍ୟରେ ଅନାହତ ନାଦର ବୋଧ ସ୍ମୃତି ଏବଂ ହୃଦୟସ୍ଥ ଜ୍ୟୋତିର ବୋଧ ସ୍ମୃତିହିଁ ପ୍ରଧାନ ।

ଏଜନ ୩୬୯ ପୃଷ୍ଠା ।

ଶିଷ୍ୟ—ଶବ୍ଦରୁ ଜଗତର ଉତ୍ପତ୍ତି—ଏ କଥା ତ ଏଇ କହିଛନ୍ତି !

ଗୁରୁ—ହଁ, ଯୋଗରସାୟନରେ କଥିତ ଅଛି—

ବଂଶୀଶବ୍ଦନିଭସ୍ତ୍ୱାଦୌ ମୃଦଙ୍ଗ ସଦୃଶୋ ଧ୍ୱନିଃ ।
ଭେରୀରବସମଃ ପଶ୍ଚାନ୍ମେଘଗର୍ଜ୍ଜନସନ୍ନିଭଃ ॥
କ୍ରମେଣାଭ୍ୟସତଶ୍ଚୈବଂ ଶ୍ରୂୟତେଽନାହତଧ୍ୱନିଃ ।
ପୃଥଗ୍ ବିମିଶ୍ରିତଶ୍ଚାପି ମନସ୍ତତ୍ର ନିୟୋଜୟେତ୍ ॥

ଶ୍ରୀମତ୍ ପଞ୍ଚାନନ ଭଟ୍ଟାଚାର୍ଯ୍ୟକୃତ ଗୁରୁଗୀତାବ୍ୟାଖ୍ୟା (ଆର୍ଯ୍ୟ ମିଶନ)।

କୂଟସ୍ଥ କାଶୀକ୍ଷେତ୍ରରେ ସର୍ବଦା ବାସ କରିବ, ସେଠାରେ ତାରକ ବ୍ରହ୍ମ ଓଙ୍କାର ଧ୍ୱନି ହେଉଅଛି । ୧୩

ସେଥି ନିମିତ୍ତ ସର୍ବପ୍ରକାର ପ୍ରଯତ୍ନ ସହକାରେ ଗୁରୁଙ୍କର ଆରାଧନା କର ଅର୍ଥାତ୍ ଓଙ୍କାର ଧ୍ୱନି ଶୁଣ । ୧୬

ସର୍ବଶ୍ରୁତିର ଶିରୋରତ୍ନ ଓଙ୍କାର ଧ୍ୱନିର ସ୍ୱରୂପ ବ୍ରହ୍ମ, ବ୍ରହ୍ମ ଯାହାଙ୍କର ପାଦପଦ୍ମରେ ବିରାଜିତ, ବେଦାନ୍ତର ସ୍ୱରୂପ ଯେଉଁ ପଦ୍ମ ଯାହା ସହସ୍ରାରରେ ଅଛନ୍ତି, ଏହିପରି ଗୁରୁଙ୍କୁ ନମସ୍କାର । ୩୭

ସବୁ ମନ୍ତ୍ରର ମୂଳ ହେଉଛି ଓଙ୍କାର । ୩୮

ଏହି ଓଙ୍କାର ଧ୍ୱନି ଶୁଣୁ ଶୁଣୁ ଚନ୍ଦ୍ରର ଆଭା କପାଳରେ ଦୃଷ୍ଟ ହୁଏ । ୩୯

ସର୍ବପ୍ରକାରେ ଗୁରୁଙ୍କୁ ହିଁ ପୂଜା କରିବ ଅର୍ଥାତ୍ ସର୍ବଦା ଓଙ୍କାର ଧ୍ୱନି ଶୁଣିବ ।

ଶିଷ୍ୟ—ଏ ହଠଯୋଗୀ ତ ?

ଗୁରୁ—ହିଁ ।

ଦୟାଲ ମହାରାଜଙ୍କର ବର୍ଣ୍ଣରତ୍ନଚନ୍ଦ୍ରୋଦୟ:—

ଯୋଗୀ ଦୁଇ ହସ୍ତର ଅଙ୍ଗୁଷ୍ଠଦ୍ୱାରା କର୍ଣ୍ଣବିବର ଚାପି ଧରିବ । ତା ଦ୍ୱାରା ଯେଉଁ ଅନାହତ ଧ୍ୱନି ଉଠିବ, ସେହି ଶବ୍ଦ ଶୁଣି ଚିତ୍ତ ସ୍ଥିର କରିବ । ଯେ ପର୍ଯ୍ୟନ୍ତ ପରମ ଶାନ୍ତ ତୁରୀୟ ଅବସ୍ଥା ପ୍ରାପ୍ତ ନ ହୁଏ, ସେ ପର୍ଯ୍ୟନ୍ତ ଏହିପରି କରିବ । ତୁର୍ଯ୍ୟାବସ୍ଥା ହେଉଛି ଚିତ୍ ଅଭି- ବ୍ୟଞ୍ଜକ ନାଦ ଅନୁଭବ । ଏହାହିଁ ନାଦାନୁସନ୍ଧାନ । ନାଦାନୁ- ସନ୍ଧାନରେ ବାୟୁ ସ୍ଥିର ହେବ ଏବଂ ଅଣିମାଦି ସିଦ୍ଧି ଆସିବ । ନାଦ ଅଭ୍ୟାସଦ୍ୱାରା ବାହାର ଶବ୍ଦ ଆଉ ଶୁଣାଯିବ ନାହିଁ । ଅର୍ଦ୍ଧମାସ ଧରି

ଏହାର ଅଭ୍ୟାସ କଲେ ସମସ୍ତ ଚିତ୍ତଚାଞ୍ଚଲ୍ୟ ଦୂର ହେବ ଏବଂ ଯୋଗୀ ସେତେବେଳକୁ ସୁଖଲାଭ କରୁଥିବେ । ପ୍ରଥମ ଅଭ୍ୟାସରେ ସମୁଦ୍ରଗର୍ଜ୍ଜନ, ମେଘଧ୍ୱନି, ଭେରୀଶବ୍ଦ ଇତ୍ୟାଦି ଶବ୍ଦ ପରି ଶବ୍ଦ ଶୁଣାଯିବ । ଆହୁରି ଅଭ୍ୟାସ କଲେ ସୂକ୍ଷ୍ମ ସୂକ୍ଷ୍ମ ଧ୍ୱନି ଶୁଣିବାକୁ ମିଳିବ । ବାୟୁ ବ୍ରହ୍ମରନ୍ଧ୍ରକୁ ଗମନ କଲାବେଳେ ସମୁଦ୍ର, ମେଘ, ଭେରୀ, ଇତ୍ୟାଦି ଶବ୍ଦ ହେବ । ବ୍ରହ୍ମରନ୍ଧ୍ରରେ ବାୟୁ ସ୍ଥିର ହେଲେ ମାଦଳ, ଶଙ୍ଖ, ଘଣ୍ଟା ଇତ୍ୟାଦି ଶବ୍ଦ ଶୁଣାଯିବ । ପ୍ରାଣ ବହୁକାଳ ବ୍ରହ୍ମରନ୍ଧ୍ରରେ ସ୍ଥିତି ଲାଭ କଲା ପରେ କ୍ଷୁଦ୍ର ଘଣ୍ଟା ବା କିଙ୍କିଣୀ ଧ୍ୱନି, ବୀଣା, ଭ୍ରମର ଝଙ୍କାର ଇତ୍ୟାଦି ବହୁ ପ୍ରକାର ଶବ୍ଦ ଦେହ ମଧ୍ୟରେ ଶୁଣାଯିବ । ବହୁଳ ଶବ୍ଦ ଶୁଣି ଶୁଣି ତନ୍ମଧ୍ୟଗତ ସୂକ୍ଷ୍ମ ସୂକ୍ଷ୍ମ ଧ୍ୱନି ଚିନ୍ତା କରିବା ଉଚିତ । ସୂକ୍ଷ୍ମ ସୂକ୍ଷ୍ମ ଶବ୍ଦ ସ୍ଥାୟୀ ହେଲେ ଚିତ୍ତ ସେଥିରେ ଆସକ୍ତ ହୋଇ ସ୍ଥିର ହୋଇଯିବ ।

ଶିଷ୍ୟ—ଦୟାଳ ମହାରାଜ ହଠଯୋଗପ୍ରଦୀପିକାର କଥା ବ୍ୟାଖ୍ୟା କରନ୍ତୁ ।

ବ୍ରହ୍ମର୍ଷି ସତ୍ୟଦେବ କହନ୍ତି—ଶକ୍ତି ଯେପରି ଏକ ଅଖଣ୍ଡ, ନାଦ ମଧ୍ୟ ସେହିପରି ଏକ ଅଖଣ୍ଡ । ଯେତେଦିନ ପର୍ଯ୍ୟନ୍ତ ଏହି ଅଖଣ୍ଡ ଶକ୍ତି ବା ନାଦର ସନ୍ଧାନ ନ ମିଳିଥାଏ, ସେତେଦିନ ପର୍ଯ୍ୟନ୍ତ ଏମାନେ ବିଭିନ୍ନ ଭାବ ଓ ବିଭିନ୍ନ ଶବ୍ଦରୂପରେ ଆତ୍ମପ୍ରକାଶ କରନ୍ତି । ଶକ୍ତି—ଅନନ୍ତରମୀୟା, ତାହାର ପ୍ରଥମ ଅଭିବ୍ୟକ୍ତି—ନାଦ । ନାଦ ଓ ଶକ୍ତି ପରସ୍ପର ଅବିନାଭାବୀ । ଯେଉଁଠାରେ ଶକ୍ତିର ଅଭିବ୍ୟକ୍ତି ସେହିଠାରେ ହିଁ ନାଦ । ସାଧକଗଣ ମାତୃକୃପାରେ ମହତୀ ଶକ୍ତିର ସନ୍ଧାନ ପ୍ର ଇଲାକ୍ଷଣି ଏହି ସୁମହାନ୍ ନାଦର ମଧ୍ୟ ସନ୍ଧାନ ପାନ୍ତି । ଏ ଜଗତରେ ଯାହା କିଛି ଜିନିଷ ଦେଖାଯାଏ, ଅଥବା ଅନ୍ତର ମଧ୍ୟରେ ଯେ କୌଣସି ଭାବର ଉଦୟ ହୁଏ, ତାହା ଗୋଟିଏ

ଗୋଟିଏ ଶବ୍ଦମାତ୍ର । ଶବ୍ଦ ନାହିଁ ଅଥଚ ପଦାର୍ଥ କିମ୍ବା ଭାବ ଅଛି, ଏହା ହୋଇ ନ ପାରେ । ଜୀବ ଏତେଦିନ ଯାଏ ଗୋଟିଏ ଗୋଟିଏ ବିଶିଷ୍ଟ ଶବ୍ଦରେ ଆସକ୍ତ ଥିଲା, ସେଥିପାଇଁ ବହୁତ୍ୱର ବନ୍ଧନ— ମହିଷାସୁରର ଅତ୍ୟାଚାର ଥିଲା । କିନ୍ତୁ ବହୁ ସୁକୃତି ଫଳରେ ଆଜ ସେ ଅଖଣ୍ଡ ନାଦର ସନ୍ଧାନ ପାଇଛି—ଏହା ସେହି ମାଆଙ୍କର ନାଦ ।

ଅବ୍ୟକ୍ତା ମା ମୋର ନାଦମୟୀ ମୂର୍ତ୍ତିରେ ପ୍ରକଟିତା ହୋଇଛନ୍ତି । ପ୍ରଥମତଃ ଏହା ଅନାହତ ନାଦରୂପରେ ପ୍ରକାଶମାନ ହୋଇଥାଏ । ସମୁଦାୟ ବ୍ୟୋମମଣ୍ଡଳ ପରିପୂର୍ଣ୍ଣ କରି ଯେଉଁ ନାଦ ଉତ୍ଥିତ ହୁଏ; ପରେ ଶରୀରର ପ୍ରତି ପରମାଣୁରେ ଏହା ପ୍ରତିଧ୍ୱନିତ ହୋଇ ଦେହଟି ନାଦମୟ ବୋଲି ମନେହୁଏ । ସେହି ଅବସ୍ଥାରେ ଏହି ସମଗ୍ର ବିଶ୍ୱ ଗୋଟିଏ ଅଖଣ୍ଡ ନାଦ ବ୍ୟତୀତ ଆଉ କିଛି ବୋଲି ମନେ ହୁଏ ନାହିଁ । ସେହି ଅଖଣ୍ଡ ନାଦରେ 'ମୁଁ'ତ୍ୱକୁ ମିଶାଇ ଦେଇ ସାଧକ ଯେଉଁ ଅନୁପମ ଆନନ୍ଦ ଭୋଗ କରନ୍ତି, ତାହା ଭାଷାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଏହାହିଁ ମାଆଙ୍କର ଘୋର ନାଦ, ଏଥିରେ ସମସ୍ତ ଲୋକ ବିକ୍ଷୁବ୍ଧ ହୁଅନ୍ତି । ସମୁଦ୍ର ସବୁ କମ୍ପିତ ହୁଅନ୍ତି, ବସୁଧା ଚଳିତ ହୁଏ, ମହୀଧରଗଣ ପ୍ରଚଳିତ ହୋଇଥାନ୍ତି । ଅନନ୍ତ ଜ୍ଞାନରତ୍ନର ଆକର ବୋଲି ଏହାକୁ ବସୁଧା କୁହାଯାଏ । ସଚ୍ଚିଦାନନ୍ଦମୟୀଙ୍କର ଘୋରନାଦ ଉଠିଅଛି, ସେ ନାଦ ସତେ କି ସର୍ବ ଭାବକୁ—ବହୁତ୍ୱକୁ ଦଳିତ ମଥିତ କରି ପୂର୍ଣ୍ଣ ଅଖଣ୍ଡ ଚୈତନ୍ୟ ରାଜ୍ୟରେ ମିଶାଇ ଦେବ ! ସତେ ଅବା ଜଡ଼ତ୍ୱର ଅଧିକାର ବିଲୁପ୍ତ ହେବ ! ସେଇଥିପାଇଁ ଏମାନଙ୍କର କ୍ଷୁବ୍ଧଭାବ ବା କମ୍ପନ । ଯେଉଁ ନାଦ ମହାଶକ୍ତି ରୂପିଣୀ ମାତୃ-କଣ୍ଠରୁ ନିର୍ଗତ ହୋଇ ସପ୍ତଲୋକ ଭେଦ କରି ଉତ୍ଥିତ ହୁଏ,

ସେ ନାଦର କି ଅପୂର୍ବ ପ୍ରଭାବ ! ଯେ ପର୍ଯ୍ୟନ୍ତ ମାତୃଚରଣରେ ତୁମର ନିଜତ୍ୱଟିକୁ ଅର୍ପଣ ନ କରିଛ, ସେ ପର୍ଯ୍ୟନ୍ତ କିଣ ସେ ଆହ୍ୱାନ ଶୁଣି ପାରିବ ? ଅଥବା ପାଇଲେ ମଧ୍ୟ କିଣ ତାହାର ମହତ୍ତ୍ୱ ଉପଲବ୍ଧି କରି ପାରିବ ? ସେହି ଚିଦାନନ୍ଦ କ୍ଷେତ୍ରରେ ଅପୂର୍ବ ଆହ୍ୱାନ—ଅନିର୍ବଚନୀୟ ନାଦ—ଯଦ୍ୱବା ଘୋର, ଯଦ୍ୱବା ମହାନ୍, ଯଦ୍ୱବା ଅମେୟ, ତଥାପି ବଡ଼ ମଧୁର ! ବଡ଼ ପ୍ରାଣମତାଣିଆ ସେ ଧ୍ୱନି ! ଚଣ୍ଡୀଙ୍କର ଚଣ୍ଡେଶ୍ୱରଙ୍କର ଅଭୟ ବାଣୀ ! ଯଥାର୍ଥରେ ସେ ଅତୁଳନୀୟ । ମା ! ତୁ ତ ହନିବନ୍ତ ଅଶ୍ରାନ୍ତ ଅନାହତ ନାଦରେ ଆମରି ହୃଦୟ ମଧ୍ୟରୁ ଡାକୁଛୁ । ଆମେ ତ ତୋ'ର ଆହ୍ୱାନ ଶୁଣି ମଧ୍ୟ ଶୁଣୁନାହୁଁ—ଜଗତର କୋଳାହଳ, ଇନ୍ଦ୍ରିୟଗଣଙ୍କର ବିଷୟସନ୍ଧାନରେ ଦୌଡ଼ାଦୌଡ଼ି କରିବାରେ ଯେଉଁ ଗୋଳମାଳ, ସେଥିରେ ତୋର ସେ ଡାକ ଆମ କାନରେ ପଶେ ନାହିଁ । ମା, ସେଇଥିପାଇଁ ତ ଘର ପୁଅ ଘରକୁ ନ ଯାଇ ବାହାରେ ପ୍ରଚଣ୍ଡ ଖରା—ଶୋକ ଦୁଃଖର ପ୍ରବଳ ଦାବାନଳରେ ପୋଡ଼ିଜଳି ମଧ୍ୟ ପୁଣି ସେଇ ମୋହର ଖେଳନା ନେଇ ମତ୍ତ ହୋଇ ରହିଛୁ । କେତେ ନାଲି ଆଖି ଦେଖାଇ, କେତେ ଗରଗର ଛଳନାକରି ଆମକୁ ଡାକୁଛୁ, କିନ୍ତୁ ଆମର ଏହି ଦୁର୍ବାର ମୋହ କୌଣସି ମତେ ଭାଙ୍ଗୁନାହିଁ । ସେହି ଆକର୍ଷଣମୟ ମଧୁର ବଂଶୀନାଦ, ଆଉ ଏହି ଉତ୍ପୀଡ଼ିତ ସନ୍ତାନର ଅସୁରଖଣ୍ଡନକାରକ ଘୋରନାଦ । ନାଦ ହିଁ ବ୍ରହ୍ମ । ନାଦତତ୍ତ୍ୱରେ ଅବଗାହନ କରିପାରିଲେ ହିଁ, ବ୍ରହ୍ମଦର୍ଶନ ବା ମାତୃ-କ୍ରୋଡ଼ରେ ଆରୋହଣ କରିପାରିବ । ବସ୍ତୁତଃ ଶବ୍ଦ ବା ନାଦ ବ୍ୟତୀତ ଅନ୍ୟ କିଛି ନାହିଁ । କେବଳ କେତେଗୁଡ଼ିଏ ଶବ୍ଦଦ୍ୱାରା ଏହି ଜଗତ୍ ରଚିତ, କେତେଗୁଡ଼ିଏ ଶବ୍ଦଦ୍ୱାରା ପରିପୁଳିତ ଏବଂ କେତେ-ଗୁଡ଼ିଏ ଶବ୍ଦଦ୍ୱାରା ଏହାର ପ୍ରଳୟ ହେଉଅଛି । ଏ ଜଗତ୍ କେତେ-

ଗୁଡ଼ିଏ ଶବ୍ଦଛଡ଼ା ଆଉ କିଛି ନୁହେଁ । ଏହି ସ୍ୱାଭାବିକ ଶବ୍ଦରୁ ହିଁ ଆଣବିକ ସ୍ପନ୍ଦନ ନିର୍ବାହିତ ହୁଏ । ସ୍ପନ୍ଦନର ସଂଯୋଗ ବିୟୋଗର ବୈଚିତ୍ର୍ୟବଶତଃ ଏହି ବିଚିତ୍ର ଜଗତ୍ ବିକାଶପ୍ରାପ୍ତ ହୁଏ । ଏହି "ଅଉମ୍" ବା "ଓଁ" ସୃଷ୍ଟିର ସର୍ବପ୍ରଥମ ନାଦ । ସାଧକଗଣ କର୍ଣ୍ଣ-ବୃତ୍ତି ନିରୁଦ୍ଧ କରି, ଅଥବା ଅନ୍ୟ ପ୍ରକ୍ରିୟାଦ୍ୱାରା ଏହି ନାଦ, ଅନାହତ କେନ୍ଦ୍ରରୁ ଶୁଣିବାକୁ ପାଆନ୍ତି । ଜଗତ୍‌ବ୍ୟାପୀ ସେ ନାଦ ଆକର୍ଷଣମୟ । ସାଧନ ସମର, ୨ୟ ଖଣ୍ଡ, ପୃଃ ୧୦୪—୧୧୦

ଶ୍ରୀ ଶ୍ରୀ ଶଙ୍କରପୁରୁଷୋତ୍ତମତୀର୍ଥ ମହାରାଜଙ୍କର ଯୋଗବାଣୀର ଶେଷରେ କଥିତ ହୋଇଅଛି—

ସମୟ ସମୟରେ ପ୍ରାଣସ୍ପନ୍ଦନର ସଙ୍ଗେ ସଙ୍ଗେ ବୋଧହୁଏ ଯେପରି ଗୁରୁଗମ୍ଭୀର ସ୍ୱରରେ "ଓଁ" ଧ୍ୱନି ଉଠୁଅଛି; ତାହା ଏତେ ମଧୁର ଓ ଆନନ୍ଦପ୍ରଦ ଯେ ତାହା କ୍ଷୁଦ୍ର ଲେଖମାରେ ଲେଖି ହେବ ନାହିଁ ବା ଭାଷାରେ କହିହେବ ନାହିଁ । ମଧୁମକ୍ଷିକା ଯେପରି ପୁଷ୍ପମଧ୍ୟରେ ମଧୁ ଆହରଣ ପାଇଁ ବସିବା ପୂର୍ବରୁ ଗୁଣୁ ଗୁଣୁ ହୋଇ ପୁଷ୍ପର ଚାରି ପାଖରେ ବୁଲି ବୁଲି ତାର ବସିବା ଜାଗାଟି ନିର୍ଣ୍ଣୟ କରି ସେଥିରେ ବସେ ଓ ପରେ ମଧୁର ଆସ୍ୱାଦରେ ନୀରବ ନିସ୍ତବ୍ଧ ହୋଇଯାଏ, ସେହିପରି ଯେପରିକି ମହାପ୍ରାଣସ୍ୱରୂପିଣୀ କୁଣ୍ଡଳିନୀ ଶକ୍ତି ମଧୁର "ଓଁ" ଧ୍ୱନି କରୁ କରୁ ରୂପସ୍ୱରୂପ ପରମଶିବ ବା ପରମବ୍ରହ୍ମରେ ମିଳିତ ହୋଇ ନିଃଶବ୍ଦ ହୋଇଯାନ୍ତି—ଏହାହିଁ ବ୍ରହ୍ମଭାବ ।

ନିଃଶବ୍ଦଂ ପରମଂ ବ୍ରହ୍ମ ପରମାତ୍ମା ସମୀର୍ଯ୍ୟତେ ।
(ନାଦବିନ୍ଦୂପନିଷତ୍)

ପୁନଶ୍ଚ—ସଶବ୍ଦଶ୍ଚାକ୍ଷରେ କ୍ଷୀଣେ ନିଃଶବ୍ଦଂ ପରମଂ ପଦମ୍ ।
(ନାଦବିନ୍ଦୂପନିଷତ୍)

ହେ ପୁତ୍ର ! ଏହିଠାରେ ହିଁ ସାଧକର ନିର୍ଗୁଣ ବ୍ରହ୍ମସ୍ୱରୂପରେ ସ୍ଥିତି । ଏହିପରି ସ୍ଥିତି ଦ୍ୱାରା ହିଁ ସାଧକ ପୁନଃ ପୁନଃ ଜନ୍ମମୃତ୍ୟୁରୂପ ଶୀଜକୁ ଧ୍ୱଂସ କରିବାକୁ ସମର୍ଥ ହୁଏ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ॥

ପ୍ରଣବଗୀତାରେ ପରମହଂସ ଶ୍ରୀମତ୍ ପ୍ରଣବାନନ୍ଦ ସ୍ୱାମୀ—

ପ୍ରଥମ ଅଧ୍ୟାୟ ୧୬ । ୧୭ । ୧୮

ତେଜସ୍ତତ୍ତ୍ୱ ଧନଞ୍ଜୟ ମଣିପୁର ଚକ୍ର । ବୈଶ୍ୱାନର ସବୁ ଦେବତାମାନଙ୍କର ମୁଖ, ତାଙ୍କର ସ୍ଥାନ ଏହି ଚକ୍ରରେ ।

ସାଧନ କ୍ରମେ ଏହି ମଣିପୁରରୁ ଯେଉଁ ବୀଣାଶବ୍ଦ ପରି ଶବ୍ଦ ଉଠେ, ତାର ନାମ ଦେବଦତ୍ତ ଶଙ୍ଖଧ୍ୱନି, ଅନୁଭବାତ୍ମିକା ବୃତ୍ତି ବା ସାନନ୍ଦ ସମ୍ପ୍ରଜ୍ଞାତ ସମାଧି ଅବସ୍ଥା ।

ହୃଦପୃଷ୍ଠ ଅନାହତ ଚକ୍ର, ସାଧନ କ୍ରମେ ଏଠାରୁ ଦୀର୍ଘ ଘଣ୍ଟା ନିନାଦବତ୍ ଶବ୍ଦ ଉଠେ; ଅହଙ୍କାର ବୃତ୍ତି ବା ସସ୍ମିତା ସମାଧି ।

ଆକାଶତତ୍ତ୍ୱ ଯୁଧିଷ୍ଠିର । ସ୍ଥାନ କଣ୍ଠ—ବିଶୁଦ୍ଧ ଚକ୍ର, ଏଠାରୁ ସାଧନ କ୍ରମେ ମେଘଗର୍ଜ୍ଜନବତ୍ ଶବ୍ଦ ଉଠେ, ତାହାକୁ ହିଁ ଅନନ୍ତ-ବିଜୟ ଶଙ୍ଖ କୁହାଯାଏ, ଏ ଶବ୍ଦରେ ମନ ମିଶାଇ ଦେଲେ ସର୍ବବୃତ୍ତି ଶୂନ୍ୟ ଅସମ୍ପ୍ରଜ୍ଞାତ ସମାଧି ଅବସ୍ଥା ଆସେ ।

ରସତତ୍ତ୍ୱ ନକୁଳ, ସ୍ଥାନ ଲିଙ୍ଗମୂଳ—ସ୍ୱାଧିଷ୍ଠାନ ଚକ୍ର, ଏଠାରୁ ବେଣୁଶବ୍ଦପରି ଶବ୍ଦ ଉଠେ; ତାହାର ନାମ ସୁଘୋଷ ଶଙ୍ଖଧ୍ୱନି, ନିଷ୍ଠୟାତ୍ମିକା ବୃତ୍ତି ବା ସବିଚାର ସମ୍ପ୍ରଜ୍ଞାତ ସମାଧି ଅବସ୍ଥା ।

ସହଦେବ ପୃଥ୍ୱୀତତ୍ତ୍ୱ—ସ୍ଥାନ ମୂଳାଧାର । ମତ୍ତଭୃଙ୍ଗପରି ଶବ୍ଦ ଉଠେ; ····· ସଂଶୟାତ୍ମିକା ବୃତ୍ତି ବା ସବିତର୍କ ସମ୍ପ୍ରଜ୍ଞାତ ସମାଧି ।

୧୯—ସାଧକ ଯେତେବେଳେ ଏ ସମସ୍ତ ସ୍ୱର ଶୁଣନ୍ତି, ସେତେବେଳେ ସେ ଅବଶ ହୋଇ ସେହି ଆଡ଼କୁ ଆକୃଷ୍ଟ ହୁଅନ୍ତି ।

ପୃଥିବୀ (ମୂଳାଧାର) ଆଉ ଆକାଶ (ବିଶୁଦ୍ଧ) ପର୍ଯ୍ୟନ୍ତ ସମସ୍ତ ସ୍ଥାନହିଁ ନାଦରେ ପରିପୂର୍ଣ୍ଣ ହୋଇଯାଏ । କିନ୍ତୁ ସେତେବେଳେ ତାଙ୍କର ମନୋବାସନା ବୃତ୍ତି ପ୍ରବଳ ଥାଏ ବୋଲି, ଭଲମନ୍ଦ ବୁଝି ନ ପାରି ଏହି ଶବ୍ଦଗୁଡ଼ିକୁ ବିପତ୍ତିଜନକ ଭାବ ପରିତ୍ୟାଗ କରିବାପାଇଁ ଚେଷ୍ଟା କରନ୍ତି, କିନ୍ତୁ ପାରନ୍ତି ନାହିଁ; ହୃଦୟ ଏକପ୍ରକାର ବ୍ୟାକୁଳ ହୁଏ । ହୃଦୟ ବିଦୀର୍ଣ୍ଣ ହୋଇଗଲା ପରି ଲାଗେ । ସାଧନାକ୍ରମେ ସର୍ବପ୍ରଥମେ ନାଦ ଉଠିବାକୁ ଆରମ୍ଭ ହେଲେ ଏହି ପ୍ରକାର ସବୁ ଅବସ୍ଥା ଆସେ । ଏ ସବୁ ନିଜେ ବୁଝିବା ଜିନିଷ ବୋଲି ଅନ୍ୟକୁ ବୁଝାଇ ହୁଏ ନାହିଁ ।

୨ । ୨୯—ସେହି ପ୍ରଣବ ଗର୍ଭରେ ନାଦ, ନାଦ ଗର୍ଭରେ ବିନ୍ଦୁ, ······ଅଖଣ୍ଡ ନାଦ ଗର୍ଭରେ ଏହି ପ୍ରକୃତିଦେବୀଙ୍କର ତାଳେ ତାଳେ ଗୋଡ଼ ପକେଇବାରେ ଯେଉଁ ବ୍ୟଞ୍ଜନ ମିଳନ ହୁଏ ତାହାକୁହିଁ ଛନ୍ଦ କୁହାଯାଏ ।

୨ । ୪୫—(ଆଜ୍ଞାଚକ୍ର) ଏହି କୂଟ ମଧ୍ୟରେ ଏକ ଅନୁପମ ସୁବର୍ଣ୍ଣୋଜ୍ଜ୍ୱଳ ବିନ୍ଦୁ ଲକ୍ଷ୍ୟ ହୁଏ—ତାହାହିଁ ଅନାଦି ବିଶ୍ୱନାଥ ମହେଶ୍ୱର—ସେହିଠାରେ ମଧ୍ୟ ସରସ୍ୱତୀ ଉତ୍ପନ୍ନା । ଏହି ମହେଶ୍ୱରଙ୍କ ମୁଖରୁ ଅନବରତ ନାଦ ଲହରୀଯୁକ୍ତ ବେଦାଦି ମନ୍ତ୍ର ଉଚ୍ଚାରିତ ହେଉଛି ।

(ଗାୟତ୍ରୀର) ଏହି ଚତୁର୍ଥ ପାଦରୁ ସନ୍ନ୍ୟାସ ହୁଏ ଅର୍ଥାତ୍ ଶବ୍ଦବିନ୍ୟାସ ଏକ ପ୍ରଣବରେ ହିଁ ପରିସମାପ୍ତ ହୋଇ ଲହରୀବିହୀନ ଏକସ୍ୱର (ଅକମ୍ପନ) ଅନାହତ ନାଦର ଉତ୍ଥାନ ହୁଏ; ଏହି ନାଦଭିତରୁ ଗୋଟିଏ ଜ୍ୟୋତିର୍ମୟ ବିନ୍ଦୁ ଫୁଟି ବାହାରେ; ତାହା ହିଁ ତାରକବ୍ରହ୍ମ, ତାଙ୍କର ଆଉ କିଛି ପରିଣାମ ନାହିଁ, ମନ ସେଥିରେ ଅଟକି ଯାଏ । ଏହି ବିନ୍ଦୁମଧ୍ୟରୁ ଏକ ହିରଣ୍ମୟ ମୂର୍ତ୍ତି ପ୍ରକାଶ ହୁଏ ; ସେ ପରମ ଶିବ ନାରାୟଣ କ୍ଷେହାଶାତ ନିରଞ୍ଜନ ପୁରୁଷ ।

୨ । ୫୨—"ଯଦା ତେ ମୋହକଲିଳଂ ।"

ବୁଦ୍ଧି ବ୍ୟବସାୟାତ୍ମିକା ହେଲେ ସବୁ ଭ୍ରମ ଘୁଞ୍ଚିଯାଏ, ଆଉ ମୋହ ରହେ ନାହିଁ । ଶବ୍ଦସ୍ପର୍ଶ ଆଦି ଆବରଣରେ ଆଉ ମୋହିତ ହେବାକୁ ହୁଏ ନାହିଁ ; ସେତେବେଳକୁ ଲୟ ମାର୍ଗରେ ପରିଶେଷରେ ଏକମାତ୍ର ଶବ୍ଦ ହିଁ ରହେ, କାଳନିର୍ଣ୍ଣୟର ଆଉ କୌଣସି ବିଷୟ ରହେନାହିଁ, ଏହି ଶ୍ରୁତି ଜ୍ଞାନଦ୍ୱାରା କାଳ ବ୍ୟକ୍ତ କରା ହୋଇଅଛି । ଶ୍ରୋତବ୍ୟ ଅର୍ଥାତ୍ ଭବିଷ୍ୟତ ଏବଂ ଶ୍ରୁତ ଅର୍ଥାତ୍ ଭୂତ, ଏ ଦୁଇଟିର ଜ୍ଞାନ (ବେଦନା) ରହେନାହିଁ ; କେବଳ ବର୍ତ୍ତମାନ ରହେ ଅର୍ଥାତ୍ ନାଦ ଅଚ୍ଛିନ୍ନ ଓ ଅନାହତ ହୋଇଯିବାରୁ ତାର ଆଉ କିଛି ଆଦି ଅନ୍ତ ରହେନାହିଁ (ସବୁ ବର୍ତ୍ତମାନ ହୋଇଯାଏ) । ପ୍ରବାହ ସରି ଆସିବାରୁ ଆଗପଛ ରହେନାହିଁ, ସବୁ ବର୍ତ୍ତମାନ ହୋଇଯାଏ ; ସେତେବେଳକୁ କାଳସ୍ରୋତ ସରିଯାଇ ସାଧକ ନିଜେହିଁ କାଳରେ ପରିଣତ ହୁଅନ୍ତି, ଫଳରେ ତାଙ୍କର ଆଉ ଭୂତ ଭବିଷ୍ୟତ ବ୍ୟବଚ୍ଛେଦ ରହେନାହିଁ, ସେ ଅପରିଣାମୀ ସତ୍ ସତ୍ତ୍ୱାରେ ପରିଣତ ହୋଇ ବର୍ତ୍ତମାନ ହୁଅନ୍ତି, ଜୀବର 'ମୁଁ' ମହାନ୍ ମୁଁରେ ମିଶିଗଲେ ଏକ ଛଡ଼ା ଦୁଇ ରହେନାହିଁ—ସର୍ବ ବିଷୟରେ ବେଦଶୂନ୍ୟ ଅବସ୍ଥା ଆସେ ।

୨ । ୫୩—ଅଚ୍ଛିନ୍ନ ଅନାହତ ନାଦଭିତରେ ମନଦେଲେ ଚିତ୍ତ ସେଥିରେ ମୁଗ୍ଧ ହୋଇଯିବାରୁ, ବୋଧଶକ୍ତି ଆଉ ଅନ୍ୟକିଛିର ଧାରଣା କରେ ନାହିଁ, କେବଳ ସେହି ନାଦ ମଧ୍ୟଗତ ପ୍ରସ୍ଫୁଟିତ ଜ୍ୟୋତିରେ ଆକୃଷ୍ଟ ହୋଇ ରହେ ; ଏହି ଅବସ୍ଥାରେ ବୋଧଶକ୍ତି "ଶ୍ରୁତିବିପ୍ରତିପନ୍ନା" ହୋଇ ଅର୍ଥାତ୍ ପ୍ରଣବ ଧ୍ୱନି ଶୁଣି ଶୁଣି ନିଶ୍ଚୟାତ୍ମିକା ହୋଇ "ନିଶ୍ଚଳ" ହୁଏ ଅର୍ଥାତ୍ ଏକ ବିନ୍ଦୁରୁ ଅନ୍ୟ ବିନ୍ଦୁକୁ ଗମନ କରେ ନାହିଁ; ପରେ ବ୍ରହ୍ମରେ ସମାହିତ ହୋଇ

"ଅଚଳ" ଅର୍ଥାତ୍ ସ୍ଥିର ହୁଏ, ଅର୍ଥାତ୍ ବୋଧଶକ୍ତିର କ୍ରିୟା ନ ଥାଏ, ସମସ୍ତ ପ୍ରକାର ସ୍ପନ୍ଦନ ରହିତ ହୋଇଯାଏ ; ସେହି ସ୍ପନ୍ଦନରହିତ ଅବସ୍ଥାହିଁ ଯୋଗାବସ୍ଥା ।

ତଥାଚ ଉତ୍ତରଗୀତାୟାଂ

ଅନାହତସ୍ୟ ଶବ୍ଦସ୍ୟ ତସ୍ୟ ଶବ୍ଦସ୍ୟ ଯୋ ଧ୍ୱନିଃ ।
ଧ୍ୱନେରନ୍ତର୍ଗତଂ ଜ୍ୟୋତିର୍ଜ୍ୟୋତିରନ୍ତର୍ଗତଂ ମନଃ ॥
ତନ୍ମନୋ ବିଲୟଂ ଯାତି ତଦ୍ ବିଷ୍ଣୋଃ ପରମଂ ପଦମ୍ ॥

୭ । ୧୪—ଏହି ଅବସ୍ଥାରେ ପ୍ରାକୃତିକ ସଙ୍ଗତ୍ୟାଗ ହୋଇଯିବାରୁ, ଅନ୍ତର୍ଦ୍ଦେଶରେ ଯେଉଁ ନାଦବ୍ରହ୍ମର ଉତ୍ଥାନ ହୁଏ, ସାଧକ ତାହାର ଅନୁସରଣ କରୁଥାନ୍ତି, ଅନ୍ୟ କୌଣସି କ୍ରିୟା କରନ୍ତି ନାହିଁ—କର୍ମତ୍ୟାଗୀ ହୁଅନ୍ତି, ସହସ୍ରାରକୁ ଉଠିଯାନ୍ତି । ଏ ସମୟରେ କେବଳ ମାତ୍ର ନାଦବ୍ରହ୍ମ ଅବଲମ୍ବନ ଥିବାରୁ ସେ ବ୍ରହ୍ମଗୃହୀ ହୁଅନ୍ତି, ଏବଂ ତାଙ୍କର ସଂକଳ୍ପ ବିକଳ୍ପ କ୍ରିୟା ମନକୁ ମନ ସଙ୍କୁଚିତ ହୋଇଯାଏ ବୋଲି ସଂଯତମନା ହୁଅନ୍ତି; ଆଉ ଚିତ୍ତ କ୍ରମେ ସେହି ନାଦ ଅଭ୍ୟନ୍ତରକୁ ପ୍ରବେଶ କରିବାରେ ଲାଗେ ବୋଲି ଏକ ଅପୂର୍ବ ଜ୍ୟୋତି ଲକ୍ଷ୍ୟ ହୁଏ; ପରେ ସେହି ଜ୍ୟୋତି ଭିତରେ ମଧ୍ୟ ପ୍ରବେଶ କରନ୍ତି; ଏହାହିଁ ମଚ୍ଚିତ୍ତ ଅବସ୍ଥା । ଶେଷକୁ ଏହି ଅନ୍ତରନୁସରଣ ବୃତ୍ତି ସରିଯାଇ ଯେଉଁ ସ୍ଥିର ଅବସ୍ଥା ହୁଏ, ତାହାହିଁ ମତ୍ପର (ମନ୍ନିଷ୍ଠ) ଅବସ୍ଥା—ଏହା ପରେ ଆଉ ଚିତ୍ତବୃତ୍ତି ନ ଥାଏ, ସେହି ଜ୍ୟୋତିରେ ମିଶି ଏକ ହୋଇଯାଏ; ଏହାହିଁ ବୃତ୍ତି ବିସ୍ମରଣ ବା ଚିତ୍ତବୃତ୍ତିର ନିରୋଧ ସମାଧାନ ଅବସ୍ଥା, ମୁକ୍ତ(ଯୋଗପ୍ରାପ୍ତ) ସମାହିତ ଅବସ୍ଥା । ଏହି ଅବସ୍ଥାରେ ଶରୀର ଗୋଟିଏ ଜଳଭଗ୍ନ କୁମ୍ଭପରି ବସିଥାଏ ମାତ୍ର ।

୯ । ୧୭—ସାଧକ ଯେତେବେଳେ ନିଦ୍ଧ୍ୟାନବିଶେଷ ଦ୍ୱାରା ନାଦରେ ଯାଇ ପହଞ୍ଚନ୍ତି, ସେତେବେଳେ ତାଙ୍କର ଜ୍ୟୋତି ପ୍ରତ୍ୟକ୍ଷ ହୁଏ । ଏହି ଜ୍ୟୋତିର ଏତେ ମହାପ୍ରବଳ ଶକ୍ତି ଯେ, ମନ ସଙ୍କଳ୍ପ ବିକଳ୍ପକୁ ଅଲଗା କରି ଦେଇ ଏହି ଜ୍ୟୋତି ଭିତରେ ପଶିଯାଏ । କାରଣ ଜ୍ୟୋତି ମନକୁ ଘୋଡ଼ାଇ ପକାଏ, ମନ ମରିଯାଏ । ମନ ନ ଥିବାରୁ ଶରୀର ବାକ୍ୟ ଆଦି ସବୁ ବିସ୍ମୃତ ହୋଇଯାଏ । ଅନ୍ତଃକରଣର ଆବରଣ ଖୋଲି ହୁଏ, ଆଉ ମୁଁ ହିଁ ଥାଏ, ମୁଁ ଛଡ଼ା ଅନ୍ୟ ବୋଧାବୋଧନ ନ ଥାଏ । ଏଇଟି ସମାଧିସ୍ଥିତି, ନିଦ୍ଧ୍ୟାନର ପରବସ୍ଥା ବା ପ୍ରଶ୍ୱାସର ଶେଷ ।

ଯୋଗୀଶ୍ୱର ଶ୍ରୀମଦ୍ ଭୂପେନ୍ଦ୍ରନାଥ ସାନ୍ୟାଲ:—

"କି ଟାଣ, କି ଆକର୍ଷଣ ! ସଂସାରର ସମସ୍ତ ବନ୍ଧନ ପଟ୍‌ପାଟ୍ ହୋଇ ଛିଣ୍ଡି ଯାଉଛି—ପ୍ରଭୁ, ଏଇ କଣ ତୁମର ବଂଶୀର ଗୀତ, ପ୍ରଭୁ ଏଇ କଣ ତୁମର କୃଷ୍ଣନାମ ? ଯେ ଏହାକୁ ଥରେ ଶୁଣିପାରେ, ସେ କଣ ଗୋଟାଏ ପ୍ରଚଣ୍ଡ ପ୍ରବାହ ଭିତରକୁ ଟାଣି ହୋଇଯାଏ । ତାକୁ ଏକଦମ୍ ସେଇ ଅସୀମ ମାଳାମ୍ବୁପ୍ରତିମ ରୂପରାଶି ପାଖକୁ ଆଣି ତେଡେଇ ଦେଇଯାଉଛି । କାହାରି "ନା" ବା "ଦରକାର ନାହିଁ" କହିବାର କ୍ଷମତା ନାହିଁ । "ହଲ୍ଦିଦଲ" ୪୧୭ ପୃଷ୍ଠା ।

"ଭଗବାନଙ୍କର ଆକର୍ଷଣୀ ଶକ୍ତିହିଁ ତାଙ୍କର ବଂଶୀ, ଯେଉଁମାନଙ୍କର ଚିତ୍ତ ଶୁଦ୍ଧ ଅର୍ଥାତ୍ ଯେଉଁମାନେ ବିଷୟତୃଷ୍ଣାହୀନ, ସେମାନେ ତାଙ୍କ ଅନ୍ତଃକରଣରେ ଏହି ବଂଶୀରବ ଶୁଣିପାରନ୍ତି । ସଜଳଜଳଦସ୍ନିଗ୍ଧକାନ୍ତି ଶ୍ୟାମସୁନ୍ଦରଙ୍କର ଏହି ମନଚୋରକରୀ ଆନନ୍ଦ ବଂଶୀସ୍ୱନ ଯେ ଥରେ ମାତ୍ର ଶୁଣିପାରେ, ତାହାର ହୃଦୟଗ୍ରନ୍ଥି ଛିନ୍ନ ହୋଇଯାଏ, ମନ ସବୁ ଛାଡ଼ି ସେତେବେଳେ କୁଆଡ଼େ ଯେପରି ଦୌଡ଼ି ଯିବାକୁ ଚାହେଁ, କୌଣସି ଏକ ଅମଳ ଧବଳ ଶୁଭ୍ର

କେତ୍ୟାନ୍ତରେ ଏହି ମନପ୍ରାଣର ବେଗ ସମୂହକୁ ବୁଡ଼ାଇ ଦେବାକୁ ଇଚ୍ଛା ହୁଏ—ଏହି ଯେଉଁ ତୀବ୍ର ଅଥଚ ମଧୁର ଆକର୍ଷଣ—ତାହା ଶ୍ୟାମସୁନ୍ଦରଙ୍କର ଅଧରଚୁମ୍ବିତ ବଂଶୀଧ୍ୱନି । ପ୍ରେମମୟଙ୍କର ଏହି ହିତାପହାରୀ ମୁରଲୀରବ ଥରେ ଯାହାର ମନର କର୍ଣ୍ଣମୂଳରେ ପ୍ରବେଶ କରେ ତାର ଆଉ ଘର ସଂସାର କରିବା ଅସମ୍ଭବ ହୁଏ । "ବଲ୍ଵଦଳ" ୪୨୮ ପୃଷ୍ଠା ।

"ଯାହାର ସୌଭାଗ୍ୟ ଉଦୟ ହୁଏ ସେହି ତାଙ୍କର ବଂଶୀଧ୍ୱନି ଶୁଣିପାରେ । ଯୋଗୀଗଣ ଆପଣା ହୃଦୟଗୁହା ଭିତରୁ ଯେଉଁ ମଧୁର ଧ୍ୱନି ଶୁଣିପାରନ୍ତି, ଯାହାକୁ ପ୍ରଣବ ଧ୍ୱନି କୁହାଯାଏ, ତାହାହିଁ ପ୍ରକୃତରେ ଶ୍ରୀକୃଷ୍ଣଙ୍କର ବଂଶୀଧ୍ୱନି । ସେ ଧ୍ୱନି ଯେତେବେଳେ ଶୁଣାଯାଏ, ସେତେବେଳେ ଚିତ୍ତର ବହିର୍ମୁଖ ବୃତ୍ତି ରୁଦ୍ଧ ହେବାରେ ଲାଗେ । ଅବ୍ୟକ୍ତରୁ ସେ ଧ୍ୱନିର ଉତ୍‌ଥାନ ଏବଂ ଅବ୍ୟକ୍ତ ଯେତେବେଳେ ଲୟ ହେବାକୁ ଲାଗେ, ସେମିତି ମନ ମଧ୍ୟ ସଙ୍ଗେ ସଙ୍ଗେ ଅବ୍ୟକ୍ତରେ ପ୍ରବେଶ କରେ । ପ୍ରଣବର ଏପରି ସୁମଧୁର ନିକ୍ୱଣ ଯେ ଶୁଣିଲାକ୍ଷଣି ଅନ୍ୟ କିଛି ଆଉ ଭଲ ଲାଗେ ନାହିଁ, ସେହି ମଧୁର ଧ୍ୱନି ଶୁଣୁ ଶୁଣୁ ଶ୍ରୋତାର ଚିତ୍ତ ମଧ୍ୟ ଅସୀମ ମଧ୍ୟରେ ଲୟ ହୋଇଯାଏ ।" ଏଜନ୍ ୪୫୦ ପୃଷ୍ଠା ।

"ଯେଉଁ ବଂଶୀର ମଧୁର ନିକ୍ୱଣ ଶତଧାରାରେ ପ୍ରତିନିୟତ ନିନାଦିତ ହେଉଅଛି, ତାହା ଶୁଣି ପାରିବା ଭଳି ମନ ଓ ଇନ୍ଦ୍ରିୟମାନଙ୍କୁ ପ୍ରସ୍ତୁତ କରିବାକୁ ହେବ । ଯଦିଓ ବଂଶୀବାଦକଙ୍କର ବଂଶୀଧ୍ୱନିର ବିରାମ ନାହିଁ, ତଥାପି ଆମେ ସାଧନସାମର୍ଥ୍ୟହୀନ, ଆମ କାନ ଭିତରେ ତାହା କେତେବେଳେ କେମିତି ପଶେ ମଧ୍ୟ, କିନ୍ତୁ ମର୍ମଭିତରକୁ ପଶିପାରେ ନାହିଁ । ଯେଉଁମାନଙ୍କର ସେହି ସୌଭାଗ୍ୟ ଉଦୟ ହୁଏ ସେହିମାନେହିଁ ତତ୍ତ୍ୱଦର୍ଶୀ, ସେଇମାନେ ହିଁ ତାଙ୍କର

ଭକ୍ତ ପ୍ରେମିକ । ଭଗବାନଙ୍କର ସେହି ସୁମଧୁର ବଂଶୀନିନାଦ ସେମାନଙ୍କ ଚିତ୍ତକୁ ଆକର୍ଷଣ କରେ । ଏହି ମନୋହରଣକାରୀ ବଂଶୀ ସେହିମାନେ ହିଁ ଶୁଣିପାରନ୍ତି—ଯେଉଁମାନେ ଶ୍ରଦ୍ଧାଳୁ, ନିଯୁମନିଷ୍ଠ ଓ ସାଧନଶୀଳ, ଯେଉଁମାନେ ଶରୀର ମନ ଇନ୍ଦ୍ରିୟର ସବୁ କାର୍ଯ୍ୟ ଦୂରକୁ ଫୋପାଡ଼ି ଦେଇ ତାଙ୍କର ସ୍ମରଣରେ ମନକୁ ଲଗାଇ ରଖନ୍ତି, ସେମାନଙ୍କ ମନ ଆଉ ଅନ୍ୟ ଜିନିଷରେ ଲାଗି ରହିପାରେ-ନାହିଁ, ସେହିମାନେ ହିଁ ସଂସାର ଯାତନାରୁ ମୁକ୍ତିଲାଭ କରନ୍ତି । ସଂସାରର ସୁଦୃଢ଼ ବନ୍ଧନରୁ ସହଜରେ ମୁକ୍ତିଲାଭ ମିଳେ ନାହିଁ । କିନ୍ତୁ ଭଗବାନଙ୍କର ବଂଶୀଧ୍ୱନି ଯେତେବେଳେ କର୍ଣ୍ଣକୁହରରେ ପ୍ରବେଶ କରେ, ସେତେବେଳେ ବନ୍ଧ ଭାଙ୍ଗିଯାଇଥିବା ପାଣି ପରି ଆମମାନଙ୍କ ମନ ତାଙ୍କର ଆଡ଼କୁ ଧାଏଁ ।" ହିଲ୍‌ଦଲ ୪୭୫ ପୃଷ୍ଠା

"ଗୁରୁ ଉପଦେଶ ଅନୁସାରେ ଚକ୍ଷୁ ଚକ୍ଷୁ ମନ ଯେତେବେଳେ ଆସ୍ତେ ଆସ୍ତେ ଶୁଦ୍ଧ ହୁଏ ଅର୍ଥାତ୍ ଲକ୍ଷ୍ୟପଥରେ ଧୀରେ ଧୀରେ ମଗ୍ନ ହେବାକୁ ଶିଖେ, ସେତେବେଳେ ସାଧନା ଅଭ୍ୟାସ ଆଉ କଷ୍ଟ ଲାଗେ ନାହିଁ, ସେତେବେଳେ ଆମେ ଆମ ହୃଦୟର ନିଭୃତ ନିକୁଞ୍ଜରେ ତାଙ୍କର ବଂଶୀଧ୍ୱନି ଶୁଣିପାରୁ । ସେତେବେଳେ ଆଉ କାହାର କଥା ମନେପଡ଼େ ନାହିଁ, ସେଥିପାଇଁ ଏ ବାଟରେ ନିଃସଙ୍ଗ ଏକୁଟିଆ ଚାଲିବାକୁ ପଡ଼େ । ସାଧକମାନେ ଯେଉଁ ବଂଶୀଧ୍ୱନି ଶୁଣିପାରନ୍ତି ତାହାକୁହିଁ ଶ୍ରୀକୃଷ୍ଣଙ୍କ ବଂଶୀନାଦ ବୋଲି କୁହାଯାଏ । ପ୍ରଣବର ଅସରନ୍ତି ଧ୍ୱନିର ମଧୁର ନିକ୍ୱଣ ସେତେବେଳେ ଚିଦାକାଶକୁ ଘୋଡ଼ାଇ ପକାଏ । ଭକ୍ତ କବୀର କହିଛନ୍ତି—"ରଗ୍ ରଗ୍ ବୋଲେ ରାମଜୀ ର ର ରୋମ୍ ରରୋରଙ୍କାର ।" ଏହି ବଂଶୀଧ୍ୱନି ଯେ କେତେ ମଧୁର, କେତେ ପ୍ରାଣମତାଣିଆ ତାହା ବର୍ଣ୍ଣନା କରିବାର ଭାଷା ସୃଷ୍ଟି ହୋଇନାହିଁ । ସେହି ବଂଶୀର ମଧୁର ସଙ୍ଗୀତକୁ "ଅନଙ୍ଗବର୍ଦ୍ଧନଂ"

ଜୁହାଯାଇଛି । ଏହି ବଂଶୀଧ୍ୱନି ଯେ ଶୁଣେ, ତା'ର "କୃଷ୍ଣକାମ"—କୃଷ୍ଣଙ୍କୁ ପାଇବାର ଇଚ୍ଛା ପ୍ରବଳବେଗରେ ବର୍ଦ୍ଧିତ ହୁଏ । ସେହି ବଂଶୀଧ୍ୱନି ଶୁଣିଲେ ଆଉ କାହାର ଘରେ ବସି ରହିବାର ଉପାୟ ନାହିଁ । ଘର ଛାଡ଼ିବାକୁହିଁ ପଡ଼ିବ, କୃଷ୍ଣଙ୍କ ପାଖକୁ ଯିବାକୁହିଁ ପଡ଼ିବ ।" ବିଲ୍ୱଦଳ ୪୭୪ ପୃଷ୍ଠା ।

"ଏହାହିଁ ବଂଶୀର ଆକର୍ଷଣ, ଏ ଟଣାରେ ଯେ ପଡ଼ିଯାଏ, ତାର ଘରକରଣା ଶିକାରେ ଟଙ୍ଗା ହୁଏ ; ସେତେବେଳେ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ସାଧକ କେବଳ ବଂଶୀଧ୍ୱନିକୁ ଅନୁସରଣ କରି କୃଷ୍ଣାଭିମୁଖରେ ଅଭିସାର କରନ୍ତି । ସଂସାରର କୌଣସି ଆକର୍ଷଣ ଆଉ ତାହାଙ୍କୁ ସେପଥରୁ ନିବୃତ୍ତ କରିପାରେ ନାହିଁ ।" ବିଲ୍ୱଦଳ ୪୭୮ ପୃଷ୍ଠା ।

"ଏହା ସେହି ବଂଶୀନିନାଦରୂପକ ପ୍ରଣବ ଧ୍ୱନି, ଯାହା ଶୁଣିଲେ ଆଉ ଦେହେନ୍ଦ୍ରିୟ ବୋଧ ରହେନାହିଁ । ସେତିକବେଳେ ଧ୍ୟାନ ଅତି ପ୍ରଗାଢ଼ ହୋଇଯାଏ; ସେ ଅବସ୍ଥାରେ ଚିତ୍ତ ଆତ୍ମାରେ ହିଁ ବୁଡ଼ିଯାଏ । ବାହାରର କୌଣସି ବିଷୟକୁ ମନ ଆଉ ଯାଇପାରେ ନାହିଁ ।" ବିଲ୍ୱଦଳ ୪୮୪ ପୃଷ୍ଠା

"ଇତର ରାଗ ଯେ ଭୁଲାଇ ଦିଏ ଏବଂ ଯେଉଁଥିରେ ପରମାନନ୍ଦ ବର୍ଦ୍ଧିତ ହୁଏ ଓ ଯେ ସମସ୍ତ ଶୋକ ନଷ୍ଟ କରିଦିଏ ତାହା ସେହି ନାଦାମୃତ, ଯାହାକୁ ଧରି ମଧ୍ୟ ଧରି ହୁଏ ନାହିଁ, ସାଧକ ଯାହା ଚେଷ୍ଟା କରି ପାଏ ନାହିଁ, କିନ୍ତୁ ସାଧନା କରୁ କରୁ ସାଧକର ଅନ୍ତର ଭିତରେ ତାହା ଗୁରୁଙ୍କ କୃପାରୁ ଆପେ ସ୍ଫୁରିତ ହୁଏ, ତାହା ଶ୍ରବଣ କରି ଭବବ୍ୟାଧିର ଶାନ୍ତି ହୁଏ ।"

ବିଲ୍ୱଦଳ ୫୦୭—୫୦୮ ପୃଷ୍ଠା

"ଯୋଗୀମାନେ କହିଥାନ୍ତି—ଏହି ଅବସ୍ଥାରେ ଅବସ୍ଥିତ ହେଲେ ଭିତରୁ ସୂକ୍ଷ୍ମଭାବରେ ପ୍ରଣବ ଧ୍ୱନି ଉଦ୍‌ଗୀତ ହେବାରେ ଲାଗେ । ସ୍ଥିର ଚିତ୍ତର ଏହାହିଁ ଗୋଟିଏ ବିଶେଷ ଲକ୍ଷଣ । ମନ ସ୍ୱତଃହିଁ ଈଶ୍ୱରମୁଖୀ ହେଲେ ମଧ୍ୟ ଯଦି କେଉଁଠି ଅଟକି ଯାଏ, ସେତେବେଳେ ତା'କୁ ସେଠାରୁ ଛଡ଼ାଇ ଆଣିବାକୁ ପ୍ରଣବ ଧ୍ୱନି ହିଁ ପ୍ରକୃଷ୍ଟ ଉପାୟ । ଏହା ହିଁ ଶ୍ୟାମଙ୍କର ବଂଶୀବାଦନ । ଏହା ଉଦ୍‌ଗୀତ ହେବା ମାତ୍ରେ ମନ ସବୁ ବିଷୟରୁ ପ୍ରତ୍ୟାହୃତ ହୋଇ ଆତ୍ମବିଷୟିଣୀ ସ୍ଥିର ବୁଦ୍ଧି ମଧ୍ୟରେ ପ୍ରବେଶ କରେ, ସେତେବେଳେ ପ୍ରାଣର ସୌରଜ୍ୟୋତିଃ, ମନର ସୂକ୍ଷ୍ମ ଚନ୍ଦ୍ରଜ୍ୟୋତିଃ, ସୂକ୍ଷ୍ମାତିସୂକ୍ଷ୍ମ ଶତାଂଶରେ ବିଭକ୍ତ କେଶାଗ୍ରବତ୍ ସୂକ୍ଷ୍ମ—ଅଥଚ କୋଟି ସୂର୍ଯ୍ୟ ପରି ପ୍ରକାଶ ଏବଂ ଚନ୍ଦ୍ର କୋଟି ସୁଶୀତଳ ଅଗ୍ନି ଜ୍ୟୋତି ଭିତରେ ପ୍ରବେଶ କରିବାରେ ଲାଗେ । କ୍ଷଣକେ ପୃଥିବୀ ଭ୍ରମଣକାରୀ ଏହି ମନ ଟିକିଏ ଅଣୁପରମାଣୁ ପରି ସୂକ୍ଷ୍ମାତିସୂକ୍ଷ୍ମ ବିନ୍ଦୁ ଭିତରେ ବିଲୀନ ହୋଇଯାଏ । ଏହାହିଁ ବ୍ରହ୍ମାନୁଭୂତି ବା ବ୍ରହ୍ମସଙ୍ଗଲାଭ । ଏହା ହିଁ ଗୋପିକାଗଣଙ୍କ ସହିତ ଶ୍ରୀକୃଷ୍ଣଙ୍କର ମିଳନ ବା ରମଣ । ଆଲିଙ୍ଗନ କଣ ? ତୁମଠାରୁ ମୁଁ ପୃଥକ୍ ନୁହେଁ, ତୁମ ଭିତରେ ପ୍ରବେଶ କରି, ତୁମଠାରେ ଆତ୍ମସମର୍ପଣ କଲେ ଯା'ଇ ମୋର ସାର୍ଥକତା—ଏହି ବୋଧ ହୋଇଯାଏ । ସେତେବେଳେ ଗୋଟିଏ ନିର୍ମଳ ଆନନ୍ଦରେ ବିମଳଧାରା ଦୁଇକୂଳ ପୂର୍ଣ୍ଣହୋଇ ଉଛୁଳି ଉଠେ । ଏହି ବିପୁଳ ରସବୋଧର ନାମାନ୍ତର ହେଲା ପ୍ରେମ । ତାହାପରେ ସାଧକ ଶବ୍ଦ ଓ ଜ୍ୟୋତିକୁ ଅତିକ୍ରମ କରି ଯେଉଁ ଧାମରେ ପ୍ରବେଶ କରନ୍ତି, ତାହାହିଁ ପରମ ଧାମ—ଅବ୍ୟକ୍ତାବସ୍ଥା ଭିତରେ ଆତ୍ମବିସର୍ଜ୍ଜନ । ସବୁ ଭୁଲାଇ ଦେବା ଦେଶ ସେ । ସେଠାକୁ ଗଲେ ସବୁ ଦେଣା ପାଉଣା ତୁଟିଯାଏ, ଯେ ଥରେ ସେଠାକୁ ଯାଏ, ତାର ଆଉ

ପୁନରାବୃତ୍ତି ହୁଏ ନାହିଁ । "ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ"—ଏହା ଶ୍ରୁତିସମ୍ମତ ସିଦ୍ଧାନ୍ତ । ଏହାର ପାଇଁ ଆମର ସାଧନା, ଜନ୍ମ ଜନ୍ମାନ୍ତର ଧରି କେତେ ଯତ୍ନ, କେତେ ତପସ୍ୟା କରିବାକୁ ପଡ଼େ । ତୁରୀୟ ବା ଚତୁର୍ଥାବସ୍ଥା ଲାଭ କରିବା ପାଇଁ ସାଧକକୁ ଜାଗ୍ରତ୍ ସ୍ୱପ୍ନ ସୁଷୁପ୍ତି—ଏହି ତିନି ଅବସ୍ଥାକୁ ଅତିକ୍ରମ କରି ଯିବାକୁ ହୁଏ, ଏହି ଚତୁର୍ଥ ଅବସ୍ଥାର ପ୍ରବେଶଦ୍ୱାରରେ ହିଁ ରାସରସର ଦ୍ୱାରର ଆରମ୍ଭ ହୁଏ । ଏହି ସମୟରେ ଗୁରୁଦତ୍ତ ବ୍ରହ୍ମମନ୍ତ୍ର ଚୈତନ୍ୟ ଲାଭ କରେ, ବହୁଜନ୍ମବ୍ୟାପୀ ସାଧନାର ଫଳ ଫଳେ । ସର୍ବତ୍ର ବ୍ରହ୍ମଦୃଷ୍ଟି ହେବା ଆରମ୍ଭ ହୁଏ । ବିଲ୍ୱଦଳ ୫୧୫—୧୬ ପୃଷ୍ଠା।

ଯୋଗୀଶ୍ୱର ଶ୍ରୀମତ୍ ପ୍ରଣବାନନ୍ଦ ସ୍ୱାମୀ ମହାରାଜଙ୍କର ଶିଷ୍ୟ ଶ୍ରୀମତ୍ ଅମୂଲ୍ୟଧନ ଭଟ୍ଟାଚାର୍ଯ୍ୟଙ୍କର ଯୋଗୀଗୀତାରେ ବର୍ଣ୍ଣିତ ହୋଇଅଛି:—

"ତା ପରେ କ୍ରିୟାରେ ରତ ହେଲେ ଓ ଗୁରୁବାକ୍ୟରେ ଶ୍ରଦ୍ଧା ଆସିଲେ ହିଁ କ୍ରମେ ନାଦର ଉତ୍ଥାନ ହୁଏ, ମଣିପୁର ଚକ୍ରରୁ ନାଦ ଉଠେ, ସମସ୍ତ ଶରୀରରେ ଖୁନ୍ଦି ହୋଇଯାଏ । କ୍ରମେ ନାଦ ସୂକ୍ଷ୍ମ ହୋଇ ବିନ୍ଦୁରେ ଲୟ ହୋଇଯାଏ । ସେହି ବିନ୍ଦୁରୁ ପୁଣି ନାନା ପ୍ରକାର ସ୍ୱରରେ ବେଦଧ୍ୱନି ଶୁଣାଯାଏ—ସେ ଅବସ୍ଥାରେ ମଧ୍ୟ ସେଇ ଶବ୍ଦ ଶୁଣି ଆଶ୍ଚର୍ଯ୍ୟ ଲାଗେ । ତା ପରେ ପୁଣି ସେହି ଧ୍ୱନି ଯେତେବେଳେ ମିଳେଇ ଯାଏ, ସେତେବେଳେ ସାଧକ ମଧ୍ୟ ମିଳେଇ ଯାନ୍ତି । କୁଆଡ଼େ ମିଳେଇ ଗଲେ ସାଧକଙ୍କର ସେ ବୋଧ ନ ଥାଏ, କାରଣ ତାଙ୍କର ମୁଁ ତ୍ୱ ଆଉ ନ ଥାଏ, ଫଳରେ ଜାଣିବାର ଅତୀତ ଅବସ୍ଥାରେ ଯାଇ ପହଞ୍ଚିଥାନ୍ତି ।" ୭୨ । ୭୫ ପୃଷ୍ଠା।

"ସେତେବେଳକୁ ସବୁ ଶବ୍ଦ ପ୍ରଣବରେ ଶେଷ ହୁଏ । ଏକସୁରିଆ ଅନାହତ ନାଦ ଉଠେ । ନାଦ ଭିତରେ ଗୋଟାଏ

ଜ୍ୟୋତିର୍ମୟ ବିନ୍ଦୁ ଦେଖାଯାଏ, ସେତେବେଳେ ମନ ସେଇଠି ଅଟକି ଯାଏ ।" ୮୦ ପୃଷ୍ଠା

"ସାଧକଙ୍କର ଯେତେବେଳେ ନାଦ ଉତ୍ଥାନ ହୁଏ, ଓଁକାରରେ ସମସ୍ତ ଶରୀର ପୂର୍ଣ୍ଣ ହୋଇଯାଏ, ସେତେବେଳେ ସାଧକ ନାଦରେ ମନ ସମର୍ପଣ କରନ୍ତି, ସଙ୍ଗେ ସଙ୍ଗେ ନାଦ ଭିତରେ ମୁଁ ର ଜ୍ୟୋତି ଦେଖି ପାରନ୍ତି । ସେତେବେଳେ ମନ କାବାଭୂତ ହୋଇ-ଯାଏ, ତାର ସଙ୍କଳ୍ପ ବିକଳ୍ପ ଶକ୍ତି ହରାଏ, ମନ ଲୟ ହୋଇଯାଏ ।" ୩୨୦ ପୃଷ୍ଠା ।

"ଭିତରେ ଅପୂର୍ବ ନାଦ ଉତ୍ଥିତ ହୁଏ, ଆଉ ସେହି ନାଦ ମଧ୍ୟରେ ଜ୍ୟୋତି ଦେଖି ପକାଇ ସେଥିରେ ମନ ଲୟ ହୋଇ ବିଷ୍ଣୁ-ପଦ ମିଳାଇଦିଏ । ୨ୟ ଖଣ୍ଡ ୪୩୩ ପୃଷ୍ଠା

ଶିଷ୍ୟ—ହଠଯୋଗୀମାନେ ଜ୍ୟୋତିର ଧ୍ୟାନ କରନ୍ତି ତ ?

ଗୁରୁ—ନାଦ ଜ୍ୟୋତି ବିନ୍ଦୁ ପ୍ରଣବ ସବୁ ତ ଏକା, ଜ୍ୟୋତି ପରେ ବିନ୍ଦୁଲାଭ କରିଥାନ୍ତି ।

ଶିଷ୍ୟ—ଭକ୍ତମାନେ କଣ ଏହି ନାଦର ସାଧନା କରନ୍ତି ?

ଗୁରୁ—ଯେଉଁ ଭକ୍ତଗଣଙ୍କର ଶ୍ରୀମଦ୍ଭାଗବତ ଏକମାତ୍ର ପ୍ରିୟ ଗ୍ରନ୍ଥ, ଭଗବାନ ନାଦରୂପରେ ବିହାର କରନ୍ତି ଏ କଥା ସେମାନେ ଭଲରୂପେ ଜାଣନ୍ତି, ଶ୍ରୀଭଗବାନଙ୍କର ନାମ କୀର୍ତ୍ତନ ଏକାନ୍ତ ଭାବରେ ତାଙ୍କର ଲୀଳା ଚିନ୍ତା କରୁ କରୁ ନାଦରେ କିଁ ବୁଡ଼ିଯାନ୍ତି, ଅହରହ ମୁରଲୀର ମଧୁର ସ୍ୱରରେ ଆପଣାକୁ ହଜାଇ ଦେଇ ତାଙ୍କରି ହୋଇଯାନ୍ତି ।

ଶ୍ରୀମନ୍ ମହାପ୍ରଭୁଙ୍କ କଥା—

"କୃଷ୍ଣବର୍ଣ୍ଣ ଶିଶୁ ଏକ ମୁରଲୀ ବାଜାୟ ।"

ମୁରଲୀର ମୋହନ ସ୍ୱରରେ ଗୋପିକାଗଣ ଉନ୍ମାଦିନୀ—

"ସଇ ଐ ବୁଝି ବାଁଶୀ ବାଜେ, ମନ ମାଝେ କି ବନ ମାଝେ ।"

ଚଣ୍ଡୀଦାସ କହିଛନ୍ତି—

ସଜନି ଲୋ ସଇ
କ୍ଷଣେକ ବୈସହ ଶ୍ୟାମେର ବାଁଶୀର କଥା କଇ ।
ଶ୍ୟାମେର ବାଁଶୀଟି, ଦୁପୁରେ ଡାକାତି
ସରବସ ହରି ନେଲ ।
ହିୟା ଦଗଦଗି ପରାନ ପୋଡ଼ାନି,
କେମନ କା ଏମତି କୈଲ ॥
ଖାଇତେ ଶୁଇତେ ଆନ ନାହିଁ ଚିତେ
ବଧିର କରିଲ ବାଁଶୀ ।
ସବ ପରିହରି କରିଲ ବାଉଶି
ମାନୟେ ଯେମନ ଦାସୀ ॥
କୁଲେର କରମ ଧୈରଯ ଧରମ
ସରମ ମରମ ଫାଁସୀ ।
ଚଣ୍ଡୀଦାସେ ଭଣେ ଏଇ ସେ କାରଣେ
କାନୁର ସରବସ ବାଁଶୀ ॥ ୧୧୨

ଶିଷ୍ୟ—ତାହା କଣ ଏହି ବେଣୁନାଦ ?

ଗୁରୁ—ନିଶ୍ଚୟ, ଚଣ୍ଡୀଦାସଙ୍କ କଥା ଶୁଣ ।

ହ୍ରୀଁ ସେ ଅକ୍ଷର ତାହାର ଉପର
ନାଚେ ଏକ ବାଜିକର
ଏକ କୁମୁଦିନୀ ଦୁନ୍ଦୁଭି ବାଜାୟ
ବାଁଶୀ କନ ତାର ସ୍ୱର ।
ଦୁନ୍ଦୁଭି ବାଁଶୀଟି ଯଖନ ବାଜିବେ
ତା ଶୁନେ ମରିବେ ଯେ
ରସିକ ଭକତ ଭୁବନେ ବ୍ୟକ୍ତ
ସଖୀର ସଙ୍ଗିନୀ ସେ ।

ଶିଷ୍ୟ—ମଧୁର ରସ ଭିତରେ କି ଏକ୍ସ କଂଶୀ ?

ଗୁରୁ—କାହ୍ନୁ ଛଡ଼ା ଗୀତ ନାହିଁ, ଚଣ୍ଡୀଦାସଙ୍କର କଥା ଆହୁର ଶୁଣ:—

ଚତୁର୍ଦ୍ଦଳେ ଅପାନ ସଙ୍ଗଭୂତେଚେ ବ୍ୟାନ ।
ମୁଖ୍ୟ ଅନୁଲୋମ ବିଲୋମ ସକଳ ପ୍ରଧାନ ॥
ଅଜପା ନାମେତେ ତାର କୁମ୍ଭକ ରେଚକ ।
ଅନୁଲୋମ ଊର୍ଦ୍ଧ୍ୱରେତା ବିଲୋମ ପ୍ରବର୍ତ୍ତିକ ॥
ପ୍ରବର୍ତ୍ତି ସାଧକ ହୃଦ ନାଭିପଦ୍ମେ ଆଶ୍ରୟ ।
ସିଦ୍ଧ ଏଁ ସହସ୍ରାଧାରେ ଆଛୟେ ନିଶ୍ଚୟ ॥
ରତି ସ୍ଥିର ପ୍ରେମ ସରୋବର ଅଷ୍ଟଦଳେ ।
ସାଧନେର ମୂଳ ଏଇ ଚଣ୍ଡୀଦାସ ବଲେ ॥

ଏ ଏହିପରି ସମସ୍ତ ପଦ୍ମର ବାୟୁର ବିବରଣ ସାଧନତତ୍ତ୍ୱରେ ଉପଦେଶ ଦେଇଛନ୍ତି ।

ଶିଷ୍ୟ— ଏ ତ ଜଣେ ବଡ଼ ଯୋଗୀ ଦେଖୁଛି ।

ଗୁରୁ—ଯୋଗୀ କିଏ ନୁହେଁ ? ଯେ ଯୋଗେଶ୍ୱରଙ୍କର ଆଶ୍ରୟ ନିଏ ସେ ଯୋଗୀ ହୋଇଯାଏ । ଆଚ୍ଛା ଏଥର ଶୁଣ । ହଂସ-ଶ୍ରୁତିରେ ନାଦର ବିବରଣ ଏହିପରି ମିଳେ—ଚିଣି ଚିଞ୍ଚିଣୀ ଘଣ୍ଟା ଶଙ୍ଖ ତନ୍ତ୍ରୀ ତାଳ ବେଣୁ ମୃଦଙ୍ଗ ଭେରୀ ମେଘ । ନାଦବିନ୍ଦୁ ଶ୍ରୁତି, ସାଗର ମେଘ ଭେରୀ ନିର୍ଝର ମାଦଳ ଘଣ୍ଟା ଢୋଲ କିଙ୍କିଣୀ ବେଣୁ ବୀଣା ଭ୍ରମର ନାଦ କଥା କହିଛନ୍ତି । ହଠଯୋଗପ୍ରଦୀପିକା ଓ ଲୟ ଯୋଗ ସଂହିତାରେ ନାଦ କଥା ପ୍ରାୟ ଏହିପରି କୁହାଯାଇଅଛି । ଶିବପୁରାଣରେ ଘୋଷ, କାଂସ୍ୟ, ଶୃଙ୍ଗ, ଘଣ୍ଟା, ବୀଣାପ୍ରଭୃତି, ବଂଶ, ଦୁନ୍ଦୁଭି, ଶଙ୍ଖ, ମେଘନାଦ କଥା କୁହାଯାଇଅଛି । ନିନଦ (ଗାଡ଼ିର ଶବ୍ଦ), ନଦଥୁ ବୃଷଭର ଶବ୍ଦ ପ୍ରଭୃତି ଶବ୍ଦ କଥା ଛାନ୍ଦୋଗ୍ୟ ଶ୍ରୁତି

କହିଛନ୍ତି । ନାଦକୋଟି ସହସ୍ରାଣି—ନାଦ କୋଟି ସହସ୍ର ପ୍ରକାର । ଆଉ ବିନ୍ଦୁ କୋଟି ଶତାନି ଚ, ଜ୍ୟୋତି କୋଟି ଶତ ପ୍ରକାର । ଶ୍ରୁତି ହିଁ ନିର୍ଣ୍ଣୟ ପାଇଁ ମାତ୍ର କେତୋଟି ନାଦର କଥା ଉଲ୍ଲେଖ କରିଛନ୍ତି, ଏହି ସମସ୍ତ ନାଦ ଓମ୍ ନାଦରେ ଲୟ ହୋଇଯାଏ । ନାଦ ବ୍ରହ୍ମ ଯେ କେତେ ରୂପ ଧାରଣ କରି ଲୀଳା କରନ୍ତି ତାହା ବର୍ଣ୍ଣନା କରିବାର ସାଧ କାହାରି ନାହିଁ ।

ଶିଷ୍ୟ—ମୁଁ ଆପଣଙ୍କ ଶ୍ରୀମୁଖରୁ ସାଧକଗଣଙ୍କର ଅନୁଭୂତ ନାଦବ୍ରହ୍ମ ଲୀଳା ଆହୁରି ଶୁଣିବାକୁ ଚାହେଁ ।

ଗୁରୁ—ଜପ କରୁ କରୁ ସାଧକ ଖୁବ୍ ବଡ଼ ଘଡ଼ିର ଶବ୍ଦ ପରି ନାଦ ଶୁଣି ପାରନ୍ତି । ସ୍ତ୍ରୀ କଣ୍ଠରେ—

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ॥

ଏହିପରି ନାଦ ଶୁଣନ୍ତି । ବହୁ ଯନ୍ତ୍ରରେ ବହୁ କଣ୍ଠରେ ଗଗନ ପବନ ପ୍ରକମ୍ପିତ କରି—

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ॥

ଏହିପରି ନାଦ, ବହୁ ବାଦ୍ୟସହ ଆରତିକ ନାଦ । ଢୋଲ୍‌ଖୋଳ ଝାଞ୍ଜମଞ୍ଜେମି ବାଦ୍ୟନାଦ, ମୃଦୁଗୀତନାଦ, ସମୁଦ୍ର ଗର୍ଜନ ନାଦ, ଜଳଭରା ମେଘଗର୍ଜ୍ଜନ ନାଦ, ପ୍ରବଳ ଝଟିକା ପରି ନାଦ, ମୃଦୁ ସ୍ୱରରେ ପରସ୍ପର ଅସ୍ପଷ୍ଟ ଆଳାପ ନାଦ, ଝରଣା ନାଦ, ଭେକଧ୍ୱନି ନାଦ, ଇଞ୍ଜିନ ନାଦ, ଜଳୋଚ୍ଛ୍ୱାସ ନାଦ, ନକୁଳଶବ୍ଦବତ୍ ନାଦ, କ୍ରମାଗତ ଜୟଗୁରୁ ଜୟଗୁରୁ ନାଦ—ସୋହଂ ସୋହଂ ନାଦ କେହି କେହି ଶୁଣି ପାରନ୍ତି ।

ଶିଷ୍ୟ—ଜୟଗୁରୁ, 'ସୋହଂ—ଏହିପରି ସ୍ପଷ୍ଟ ଶୁଣାଯାଏ ?

ଗୁରୁ—ଶୁଣାଯାଏ କଣ କହୁଛ—ଦିନ ପରେ ଦିନ ।

ଜୟଗୁରୁ ଜୟଗୁରୁ ଜୟଗୁରୁ ଜୟ, ସୋହଂ ସୋହଂ ନାଦ ଚାଲିଥାଏ ।

ଶିଷ୍ୟ—ଏ ସବୁ କଣ ଗୋଟିକ ପରେ ଗୋଟିଏ ଶୁଣାଯାଏ ?

ଗୁରୁ—ମେଘନାଦ, ଜୟଗୁରୁ ନାଦ, ସୋହଂ ନାଦ ଏକା ସଙ୍ଗେ ଶୁଣାଯାଏ, ଗୋଟିଏ ନାଦ ଚାଲୁଥିବା ସମୟରେ ଆଉ ଗୋଟିଏ ନାଦ ଉପସ୍ଥିତ ହୁଅନ୍ତି । ଯୁଗପତ୍ ସୋହଂ ମେଘ, ସିଁସିଁ ନାଦ ଚାଲେ । ଘଣ୍ଟାନାଦ, ଜଳଘୋଷନାଦ, ଭ୍ରମରନାଦ, ଓମ୍‌ନାଦ, ଓମ୍‌ଗର୍ଭ ଶଙ୍ଖନାଦ, ସୋହଂନାଦ, ବ୍ୟକ୍ତନାଦ ଅର୍ଥାତ୍ ମେଘ ଆଦି ଶବ୍ଦର ଅନୁକାରୀ ନାଦ କଥା କହିଲି । ତଦ୍‌ବ୍ୟତୀତ କେତେ ପ୍ରକାର ଅବ୍ୟକ୍ତ ନାଦ ଯେ ଲୀଳା କରନ୍ତି ତାହା ବର୍ଣ୍ଣନା କରିବାର ଶକ୍ତି କାହାରି ନାହିଁ—ପୃଥିବୀର ଧୂଳିକଣା ଗଣନା କରିବାକୁ କେହି ହୁଏତ ସମର୍ଥ ହୋଇପାରେ, କିନ୍ତୁ ନାଦ ଯେ କେତେ ପ୍ରକାର ଲୀଳା କରନ୍ତି ତାହା ବର୍ଣ୍ଣନା କରିବାର ସାଧ କେବେହେଁ କାହାରି ହେବ ନାହିଁ ।

କେତେବେଳେ କ୍ଷଣକ୍ଷଣକେ ଭିନ୍ନ ଭିନ୍ନ ରୂପରେ ଲୀଳା କରନ୍ତି, କେତେବେଳେ ସୋହଂ ସୋହଂ ସୋହଂ ରୂପରେ ବହୁକ୍ଷଣ ଧରି ଖେଳୁଥାନ୍ତି ।

ଚିତ୍ତ ଯେତେବେଳେ ଏକ ସ୍ତରରୁ ଅନ୍ୟ ସ୍ତରକୁ ଉଠେ, ସେଠାରେ ଶବ୍ଦ ପରିଚିତ ବୋଲି ମନେହୁଏ । ଓହ୍ଲାଇବା ପରେ ସେ ସ୍ମୃତି ଧ୍ୱଂସ ହୋଇଯାଏ । ମନେ ରଖିବି ବୋଲି ଭାବିଲେ ମଧ୍ୟ ମନେ ରହେ ନାହିଁ । ବାପା, ନାଦର ସମସ୍ତ ବିବରଣ ତୁମକୁ କହିଲି ଭଳି ସାଧ ମୋର ନାହିଁ ।

ମେଘ ନାଦ, ଜମ୍ବୁଗୁରୁନାଦ, ସୋହଂନାଦ ଏମାନେ ଯେତେବେଳେ ଉପସ୍ଥିତ ହୁଅନ୍ତି, ପ୍ରାୟ ସବୁ ସମୟରେ କ୍ରୀଡ଼ା କରନ୍ତି । ଏମାନଙ୍କର ସଙ୍ଗୀ ନାଦ ଆଉ ଗୋଟିଏ ଅଛନ୍ତି—ସିସି—ଦକ୍ଷିଣ କର୍ଣ୍ଣଠାରୁ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ଏହାଙ୍କର ବିହାର ଭୂମି । ଏ ଯେତେବେଳେ ସୀମନ୍ତ ପ୍ରଦେଶକୁ ଆସନ୍ତି, ସେତେବେଳେ ହୃଦୟ ପୂର୍ଣ୍ଣ ହୋଇଯାଏ, ଭ୍ରୂମଧ୍ୟରେ ବିନ୍ଦୁ ଭାସେ, ଲେଖିବା ବେଳେ ଖାତାରେ ବିନ୍ଦୁ ପଡ଼େ, ବିନ୍ଦୁ ଦେଖାଯାଏ, କିନ୍ତୁ ଏତେ ସ୍ପଷ୍ଟ ଯେ କହିହେବ ନାହିଁ । ନାଦ ଅବଶ କରି ଆୟତ୍ତ କରନ୍ତି, ଗୁରୁ-କୃପାରେ ଯାହାଙ୍କର ନାଦ ଅନୁଭୂତ ହୋଇଅଛି—ଯେ ସର୍ବଦା ନାଦ ଅନୁଭବ କରୁଛନ୍ତି—ସେ ଭଗବତ୍ ପ୍ରସଙ୍ଗ ଛଡ଼ା ଅନ୍ୟ ପ୍ରସଙ୍ଗରେ ରହିପାରନ୍ତି ନାହିଁ । ବାପା, ମୁଁ ତୁମକୁ ଠିକ୍ ବୁଝାଇ ପାରିଲି ନାହିଁ ।

ଶିଷ୍ୟ—ନାଦ ଶୁଣିଲେ ଭାରି ଆନନ୍ଦ ହୁଏ ?

ଗୁରୁ—ମେଘନାଦ, ସୋହଂନାଦ, ବୀଣାନାଦ, ମୃଦୁଗୀତ ନାଦ ଖୁବ୍ ଆନନ୍ଦପ୍ରଦ; ମୃଦୁ ତାର ଯନ୍ତ୍ରର ନାଦ ବଡ଼ ମଧୁର, କୁଣ୍ଣୁ କୁଣ୍ଣୁ ହୋଇ କଣ ଠିକ୍ ବୁଝାପଡ଼େ ନାହିଁ । ଶୂନ୍ୟରେ ଏପରି ଗୋଟିଏ ନାଦ ଅଛି ଯେ ବାୟୁକୁ ସ୍ଥିର କରିଦିଏ । ପୁଣି ବାମ-ଭାଗରେ ଏକାବେଳକେ ଶୁଣାଯାଏ ଏପରି ଗୋଟିଏ ନାଦ ଅଛି, ଯାହା ଶ୍ରବଣ କଲେ ଭୟ ହୁଏ—ସତେକି ମୃତ୍ୟୁକାଳ ଉପସ୍ଥିତ ହେଲା ଏହିପରି ମନେହୁଏ ।

କେତେବେଳେ କେତେବେଳେ ନାଦ ଶୁଣୁ ଶୁଣୁ ସଂଜ୍ଞା ଲୋପ ହୋଇ ଆସିଲେ ମନରେ ଭୟ ହୁଏ ।

ସିସି ନାଦଟିକୁ ମୁଁ ଅର୍ଦ୍ଧମାତ୍ରା ବା ନକୁଳ ଧ୍ୱନି ବୋଲି ଭାବେ । ତାର ନାଁ ଦେଇଛି ପୂର୍ଣ୍ଣାମୃତ ।

ଗୋଟଝିପିଲା ନୂପୁର ପିନ୍ଧି ନାଚିଲେ ଯେପରି ଶବ୍ଦ ହୁଏ, ସେହିପରି ନାଦ ଅଛି । ଝରଣା ନାଦ ସ୍ପଷ୍ଟ ମନେହୁଏ—ଝର ଝର ହୋଇ ପାଣି ପଡ଼ୁଛି । କେତେବେଳେ କେମିତି ପାଟିରେ ସ୍ୱତନ୍ତ୍ର ପ୍ରକାର ସ୍ୱାଦ ଅନୁଭବ ହୁଏ ।

ଶିଷ୍ୟ—କେଉଁ ନାଦରେ ଜ୍ୟୋତି ପ୍ରଭୃତି ଦେଖାଯାଏ ?

ଗୁରୁ—ଜୟଗୁରୁ ସୋହଂ, ମେଘନାଦ, ସିସିନାଦ,—ଏମାନେ ଯେତେବେଳେ କଣ୍ଠର ଉପରଭାଗରେ ଖେଳନ୍ତି, ସେତେବେଳେ ଭିତରେ ବାହାରେ ଜ୍ୟୋତି ଦେଖାଯାଏ । ଅତି କ୍ଷୁଦ୍ର ବିନ୍ଦୁ ବାହାରେ ବେଶୀ ଦେଖାଯାଏ । ଆକାଶ, ଶ୍ୱେତଜ୍ୟୋତି ପ୍ରଭୃତି ଦୃଷ୍ଟିଗୋଚର ହୋଇଥାଏ ।

କୌଣସି ସାଧକ ବୃଷନାଦ ଶୁଣୁ ଶୁଣୁ ପାଗଳ ହୋଇ ଯାଇଥିଲେ ।

ଶିଷ୍ୟ—ନାଦ ଶୁଣୁ ଶୁଣୁ ପାଗଳ ହୋଇଗଲେ ?

ଗୁରୁ—ଆହାରଦୋଷରୁ ଏବଂ ବ୍ରହ୍ମଚର୍ଯ୍ୟ ରକ୍ଷିତ ନ ହେଲେ ମସ୍ତିଷ୍କ ବିକୃତ ହୋଇଯାଇପାରେ । ଯେତେବେଳେ ମହାନ ନାଦ ଉତ୍ଥିତ ହୁଅନ୍ତି ସେତେବେଳେ ମୁଣ୍ଡ ଠିକ୍ ରଖିବା କଷ୍ଟକର ହୋଇଉଠେ, ସାଧକର ସନ୍ଦେହ ହୁଏ ଯେ ମୁଁ ହୁଏତ ପାଗଳ ହୋଇଗଲି ।

ଶିଷ୍ୟ—କିପରି ପୁଣି ସାଧକ ଶାନ୍ତ ହୁଅନ୍ତି ?

ଗୁରୁ ନାଦହିଁ ଶାନ୍ତ କରି ଦିଅନ୍ତି । କେହି କେହି ସାଧକ ନାଦ ଉପସ୍ଥିତ ହେଲେ ବୁଝି ନ ପାରି ବ୍ୟାଧି ଭାବି ଚିକିତ୍ସା କରାଇ ଥାନ୍ତି । କଲେ କଣ ହେବ, ଯେ ପର୍ଯ୍ୟନ୍ତ ନାଦମୟୀ ମା ପୁଣି ସହସ୍ରାରରେ ପରମଶିବଙ୍କଠାରେ ଲୀନ ନ ହେବେ, ସେ ପର୍ଯ୍ୟନ୍ତ

ଏ ନାଦର ଆଗମ ହେବ ନାହିଁ । ନାଦ ଶୁଣି ଉତ୍କଣ୍ଠା ଉପସ୍ଥିତ ହେଲେ ସେ ସମୟରେ ମୌନ ଧ୍ୟାନ ତ୍ୟାଗ କରିବା ଉଚିତ ।

ଶିଷ୍ୟ—ନାଦଯୋଗୀ ଏହାର ଦ୍ୱାରା ପୂର୍ଣ୍ଣତ୍ୱ ଲାଭ କରନ୍ତି ।

ଗୁରୁ—ହଁ, ନାଦଯୋଗୀମାନଙ୍କର ଅନ୍ୟ କୌଣସି ଧାରଣାର ଆବଶ୍ୟକ ହୁଏ ନାହିଁ, ନାଦ ଶୁଣୁ ଶୁଣୁ ଚିତ୍ତ ଲୟ ହୋଇଯାଏ ।

ରାଜଯୋଗ ଲାଭ ପାଇଁ ବିଚାର ଅଭ୍ୟାସ କରିବାକୁ ହୁଏ ନାହିଁ ।

ଗୁରୁ—ଖେଚରୀ, ନାଦାନୁସନ୍ଧାନ, ତ୍ରାଟକ ପ୍ରଭୃତି ଦ୍ୱାରା ଯେଉଁ ସମାଧି ହୁଏ, ତାହା ରାଜଯୋଗର ଅନ୍ତର୍ଗତ ।

ରାଜଯୋଗସମାଧିଶ୍ଚ ଉନ୍ମନୀ ଚ ମନୋନ୍ମନୀ ।
ଅମରତ୍ୱଂ ଲୟସ୍ତତ୍ତ୍ୱଂ ଶୂନ୍ୟାଶୂନ୍ୟଂ ପରଂପଦମ୍ ॥ ୩
ଅମନସ୍କଂ ତଥାଦ୍ୱୈତଂ ନିରାଲମ୍ବଂ ନିରଞ୍ଜନମ୍ ।
ଜୀବନ୍ମୁକ୍ତିଶ୍ଚ ସହଜା ତୁର୍ଯ୍ୟା ଚେତ୍ୟେକବାଚକାଃ ॥ ୪

ଏମାନେ ସମସ୍ତେ ଏକ ସମାଧିବାଚକ ଶବ୍ଦ ।

ଶିଷ୍ୟ—ଜ୍ଞାନବିଚାର କରିବାକୁ ପଡ଼େ ନାହିଁ ?

ଗୁରୁ—ନା, ଦେହାତ୍ମା ବୋଧ ସ୍ୱତଃ ଦୂର ହୋଇଯାଏ, ପୂର୍ଣ୍ଣ ଜ୍ଞାନର ଉଦୟ ହୁଏ ।

ଶିଷ୍ୟ—ଯୋଗୀ ଆଉ ଜ୍ଞାନୀ ଭିତରେ ପାର୍ଥକ୍ୟ କଣ ?

ଗୁରୁ—ପ୍ରତ୍ୟାହାର କ୍ଷେତ୍ରରେ ଉପସ୍ଥିତ ହୋଇ ଯେଉଁମାନେ ତତ୍ତ୍ୱ ଧାରଣାଦ୍ୱାରା ସ୍ଥିତିପଦ ଲାଭ କରନ୍ତି, ସେମାନେ ଜ୍ଞାନୀ ଏବଂ ଯେଉଁମାନେ ଜ୍ୟୋତିଃ ବା ନାଦର ଧାରଣାରେ ସମାଧି ଲାଭ କରନ୍ତି ସେମାନଙ୍କୁ ଯୋଗୀ କୁହାଯାଏ । ସ୍ଥିତିର କୌଣସି ତାରତମ୍ୟ ହୁଏ ନାହିଁ । ଚିତ୍ତବୃତ୍ତିର ନିରୋଧ ହେଲେ ଦ୍ରଷ୍ଟା ସ୍ୱ ସ୍ୱ ରୂପରେ ଅବସ୍ଥିତ ହୁଅନ୍ତି ।

ଶିଷ୍ୟ—ଯେଉଁମାନେ ଭଗବଦ୍‌ଭକ୍ତ ସେମାନଙ୍କର ନାଦଦ୍ୱାରା ଅଭୀଷ୍ଟ ସିଦ୍ଧ ହୁଏ ?

ଗୁରୁ—ନିଶ୍ଚୟ । ଶ୍ରୀଭଗବାନଙ୍କର ଦର୍ଶନପ୍ରାର୍ଥୀ ଅନନ୍ୟ ଭକ୍ତ ନାଦ ଶୁଣୁ ଶୁଣୁ ସାକ୍ଷାତ୍ ଦର୍ଶନ ଲାଭ କରନ୍ତି । ଲୀଳାଚନ୍ଦ୍ରାସହ ନାଦାନୁସନ୍ଧାନ ବଡ଼ ସରସ ସାଧନା ।

ଶିଷ୍ୟ—ବର୍ତ୍ତମାନ ମଧ୍ୟ ଭକ୍ତ ଶ୍ରୀଭଗବାନଙ୍କର ସାକ୍ଷାତ୍ ଦର୍ଶନ ଲାଭ କରିବା ସମ୍ଭବ ?

ଗୁରୁ—ହଁ, ଯେତେବେଳେ ଭକ୍ତ ଭଗବାନଙ୍କୁ ଦର୍ଶନ କରିବା ପାଇଁ ସର୍ବସ୍ୱ ତ୍ୟାଗ କରି-ଏକାନ୍ତ ଭାବରେ ତାହାଙ୍କୁ ନାଦ ଅବଲମ୍ବନ କରି ଧ୍ୟାନ କରିବାରେ ଲାଗନ୍ତି, ସେତେବେଳେ ସମାଧି ଉପସ୍ଥିତ ହୁଏ; ଶ୍ରୀଭଗବାନ ଦର୍ଶନ ଦାନ କରି ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରନ୍ତି ।

ଶିଷ୍ୟ—ମୂର୍ତ୍ତିର କୌଣସି କଳ୍ପନା କରିବାକୁ ହୁଏ ?

ଗୁରୁ—ନା, ମନ୍ତ୍ର ଅଥବା ନାଦ ଅନନ୍ୟଭାବରେ ଆଶ୍ରୟ କରି ରହିଲେ ହିଁ ଦର୍ଶନଲାଭ ହୁଏ, ଏହା ମନଦ୍ୱାରା କଳ୍ପିତ ମୂର୍ତ୍ତିର ଧ୍ୟାନ ନୁହେଁ—ଏହା

"ଭକ୍ତଚିତ୍ତାନୁସାରେଣ ଜାୟତେ ଭଗବାନଜଃ ।"

ଶିଷ୍ୟ—ସାଧକଗଣଙ୍କୁ କଣ ନିୟମ ଅବଲମ୍ବନ କରିବାକୁ ହୁଏ ?

ଗୁରୁ—ଅଳ୍ପାହାର, ସଙ୍ଗତ୍ୟାଗ, ନିର୍ଜ୍ଜନରେ ଅବସ୍ଥାନ ଏବଂ ସମର୍ଥ ହେଲେ ବ୍ରାହ୍ମମୁହୂର୍ତ୍ତରେ, ମଧ୍ୟାହ୍ନରେ, ସାୟାହ୍ନରେ ଏବଂ ମଧ୍ୟରାତ୍ରରେ ଗୁରୂପଦିଷ୍ଟ ସାଧନ କରିବା, ସେଥିରେ ଅସମର୍ଥ ହେଲେ ଭୋରରୁ ଏବଂ ସନ୍ଧ୍ୟାରେ ଦୁଇଥର ଜପ ଇତ୍ୟାଦି ଅନୁଷ୍ଠାନ କରିବା ଉଚିତ । ସାତ୍ତ୍ୱିକ ଦ୍ରବ୍ୟ ଆହାର କରିବା କର୍ତ୍ତବ୍ୟ । ଅଳ୍ପାହାର,

ବ୍ରହ୍ମଚର୍ଯ୍ୟ ଓ ଶ୍ୱାସରକ୍ଷା ହିଁ ସାଧନାର ପ୍ରାଣ । ସ୍ତ୍ରୀଠାରୁ ଦୂରରେ ଅବସ୍ଥାନ କରିବା ସାଧକର କର୍ତ୍ତବ୍ୟ ଏବଂ ସାଧିକାର ମଧ୍ୟ ସର୍ବତୋ-ଭାବରେ ପୁରୁଷ ସଂସ୍ରବ ତ୍ୟାଗ କରିବା କର୍ତ୍ତବ୍ୟ । ଏ ସବୁରେ ଯେଉଁମାନେ ଉଦାସୀନ ହୁଅନ୍ତି, ପରମାନନ୍ଦ ଲାଭ କରିବା ସେ-ମାନଙ୍କ ପକ୍ଷରେ ଆକାଶ-କୁସୁମ ସଦୃଶ ଅଳୀକ ।

ଅଳ୍ପାହାର ବ୍ୟତୀତ ସାଧନା ହୋଇପାରେ ନାହିଁ ।

ମହାଭାରତ ଶାନ୍ତିପର୍ବରେ କଥିତ ହୋଇଅଛି:—

"ଅଳ୍ପାହାରନିରତ ବ୍ରହ୍ମଚାରୀ ତପସ୍ୱୀ ସହଜରେ ଯୋଗସିଦ୍ଧି ଲାଭ କରନ୍ତି ।"

"ନିର୍ଜ୍ଜନ ସ୍ଥାନରେ ସଂଯତ ହୋଇ ପୂର୍ବରାତ୍ର ଓ ପରରାତ୍ରରେ ଛଅମାସ ଯୋଗାନୁଷ୍ଠାନ କଲେ ବ୍ରହ୍ମଭାବ ପ୍ରାପ୍ତି ହୋଇଥାଏ । ଶୂନ୍ୟ ଗିରିଗୁହା, ନିର୍ଜ୍ଜନ ଗୃହ, ଦେବସ୍ଥାନ ଆଶ୍ରୟ କରି ଯୋଗ କରିବାକୁ ହୁଏ । ଯେ ଛଅମାସକାଳ କ୍ରମାଗତ ଯୋଗସାଧନା କରନ୍ତି ସେ ବେଦୋକ୍ତ କାର୍ଯ୍ୟ ଅତିକ୍ରମ କରିଥାନ୍ତି, ଶୂଦ୍ର ବା ଧର୍ମାକାଙ୍କ୍ଷିଣୀ ସ୍ତ୍ରୀ ଯଦି ଏହି ପଥ ଅବଲମ୍ବନ କରନ୍ତି ତାହା ହେଲେ ସେମାନଙ୍କର ପରମ ଗତି ହୁଏ ।" ଶାନ୍ତିପର୍ବ ୨୪୦ ଅଧ୍ୟାୟ ।

"ମାନବ ଯୋଗବଳରେ କାମ, କ୍ରୋଧ, ମୋହ, ଅନୁରାଗ, ସ୍ନେହ—ଏହି ପାଞ୍ଚ ଦୋଷ ପରିତ୍ୟାଗ କରିପାରିଲେ ମୋକ୍ଷଲାଭ ପାଇଁ ଅଧିକାରୀ ହୁଏ ।" ଶାନ୍ତିପର୍ବ ୩୦୧ ଅଧ୍ୟାୟ

ଶିଷ୍ୟ—ନାଦବ୍ରହ୍ମଙ୍କୁ ଲାଭ କରି ପାରିଲେ ତ ଯୋଗ, ତାଙ୍କୁ କିପରି ଭାବରେ ଲାଭ କରାଯାଏ ?

ଗୁରୁ—ପରାଙ୍ମୁଖୀ ମୁଦ୍ରା ପ୍ରଭୃତିଦ୍ୱାରା ନାଦାନୁସନ୍ଧାନ ଗୁରୁଦେବଙ୍କ ଉପଦେଶ କ୍ରମେ ବ୍ରହ୍ମଚାରୀ, ମିତାହାରୀ, ସଙ୍ଗତ୍ୟାଗୀ ସାଧକ କରିଥାନ୍ତି ।

ଶିଷ୍ୟ—ତାହା ତ ଅସ୍ୱାଭାବିକ, ଯେତେବେଳଯାଏ କଣ୍ଠ ରୁଦ୍ଧ କରିଥିବ, ସେତିକବେଳେ ଯାଏ ରହିବ, ସର୍ବଦା ନାଦଲାଭର ଉପାୟ କଣ ?

ଗୁରୁ—ସାଧିଯୋଗେ ଗୁରୁଦେବଙ୍କର ଉପଦେଶକ୍ରମେ ଯଥାବିଧି ମନ୍ତ୍ର ପୁରଶ୍ଚରଣ ଆଦି ଦ୍ୱାରା ମନ୍ତ୍ର ଚୈତନ୍ୟ ହେଲେ ଜ୍ୟୋତି ଓ ନାଦର ଆବିର୍ଭାବ ହୁଏ ।

ସିଦ୍ଧଯୋଗରେ ଗୁରୁଦେବ ମନ୍ତ୍ର ଚୈତନ୍ୟ କରି ଦିଅନ୍ତି, ସେହି ମନ୍ତ୍ର ଜପ କରୁ କରୁ ନାଦ ଜ୍ୟୋତିଃ ଲାଭ ହୁଏ ।

ଶିଷ୍ୟ—ଯେଉଁମାନେ ମନ୍ତ୍ର ଆଦି ଜପ କରିବାପାଇଁ ଅସମର୍ଥ, ଧୈର୍ଯ୍ୟହୀନ ଅଥବା ସାଂସାରିକ କାର୍ଯ୍ୟରେ ଅବସର ପାଆନ୍ତି ନାହିଁ—ସେମାନଙ୍କର ଉପାୟ କଣ ?

ଗୁରୁ—ବାପା, କଳିଯୁଗରେ ଉପାୟ ପାଇଁ ଚିନ୍ତା ନାହିଁ । ଏ ଯୁଗରେ ଖାଲି ଶ୍ରୀଭଗବାନଙ୍କର ନାମକୀର୍ତ୍ତନ ଦ୍ୱାରା ଭକ୍ତ କୃତାର୍ଥ ହୋଇପାରେ ।

କୃତେ ଯଦ୍ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।
ଦ୍ୱାପରେ ପରିଚର୍ଯ୍ୟାୟାଂ କଳୌ ତଦ୍ଧରିକୀର୍ତ୍ତନାତ୍ ॥

ବିଷ୍ଣୁପୁରାଣ, ଭାଗବତ

ଧ୍ୟାୟନ୍ କୃତେ ଯଜନ୍ ଯଜ୍ଞୈସ୍ତ୍ରେତାୟାଂ ଦ୍ୱାପରେଽର୍ଚ୍ଚୟନ୍ ।
ଯଦାପ୍ନୋତି ତଦାପ୍ନୋତି କଳୌ ସଙ୍କୀର୍ତ୍ତ୍ୟ କେଶବମ୍ ॥

ବିଷ୍ଣୁରହସ୍ୟ

ଯଥା ଚୈବୋତ୍ତମଂ ଲୋକେ ତପଃ ଶ୍ରୀହରିକୀର୍ତ୍ତନମ୍ ।
କଳୌ ଯୁଗେ ବିଶେଷେଣ ବିଷ୍ଣୁପ୍ରୀତ୍ୟୈ ସମାଚରେତ୍ ॥

ସ୍କନ୍ଦପୁରାଣ

କେବଳ ନାମସଙ୍କୀର୍ତ୍ତନ—ନାମସଙ୍କୀର୍ତ୍ତନ ଦ୍ୱାରା ହିଁ ମଣିଷ କୃତକୃତ୍ୟ ହୁଏ ।

ଶିଷ୍ୟ—ନାମସଙ୍କୀର୍ତ୍ତନ ଦ୍ୱାରା ନାଦବ୍ରହ୍ମ ଲାଭ କରାଯାଇ ପାରେ ?

ଗୁରୁ—ନିଶ୍ଚୟ, ସର୍ବଦା ନାମକାରୀ ଭଗବାନଙ୍କର ସାକ୍ଷାତ୍ ଦର୍ଶନ ଲାଭରେ ସମର୍ଥ ହୁଏ ।

ଅତିବଡ଼ ମହାପାପୀ, କାମ କ୍ରୋଧ ଲୋଭ ମୋହ ପ୍ରଭୃତିରେ ଆକୁଳଚିତ୍ତ ମାନବ ଯଦି ଶ୍ରୀଭଗବାନଙ୍କର ନାମ କୀର୍ତ୍ତନ କରେ, ତା ହେଲେ ସେ ବ୍ୟକ୍ତି ମଧ୍ୟ ଭଗବତ୍‌କୃପାଲାଭରେ ସମର୍ଥ ହୁଏ ।

ଯେ କୌଣସି ପ୍ରକାରେ, ହେଳାରେ ହେଉ କି ଶ୍ରଦ୍ଧାରେ ହେଉ, ଇଚ୍ଛାରେ ହେଉ କି ଅନିଚ୍ଛାରେ ହେଉ, ଏପରିକି ଉପହାସ କରି ମଧ୍ୟ ଯେ ଭଗବାନଙ୍କର ନାମ ଗ୍ରହଣ କରେ ସେ ମଧ୍ୟ ଧନ୍ୟ-ବାଦର ଯୋଗ୍ୟ । ଯଥା—

ମଧୁରଂ ମଧୁରେଭ୍ୟୋଽପି ମଙ୍ଗଳେଭ୍ୟୋଽପି ମଙ୍ଗଳଂ ।
ପାବନଂ ପାବନେଭ୍ୟୋଽପି ହରେର୍ନାମୈବ କେବଳମ୍ ॥
ପୀୟୂଷାଂ ପୀୟୂଷାଂ କର୍ଣ୍ଣେ ମୀଯୂଷାଂ ମୀଯୂଷାଂ ବଚଃ ।
ଗୀୟୂଷାଂ ଗୀୟୂଷାଂ ନିତ୍ୟଂ ହରେର୍ନାମୈବକେବଳମ୍ ।
ତୃଣୀକୃତ୍ୟ ଜଗତ୍ ସର୍ବଂ ରାଜତେ ସକଳୋପରି ।
ଚିଦାନନ୍ଦମୟଂ ଶୁଦ୍ଧଂ ହରେର୍ନାମୈବ କେବଳମ୍ ॥
ତପଃ ପରଂ କୃତଯୁଗେ ତ୍ରେତାୟାଂ ଜ୍ଞାନମୁଚ୍ୟତେ ।
ଦ୍ୱାପରେ ଯଜ୍ଞମିତ୍ୟୂଚୁର୍ନାମ ଏକଂ କଳୌଯୁଗେ ॥ ପରାଶର
ହରେ ରାମ ହରେ ରାମ ରାମ ରାମ ହରେ ହରେ ।
ଯେ ରଟନ୍ତି ହୃଦଂ ନାମ ସର୍ବପାପଂ ତରନ୍ତି ତେ ॥

କେବଳ ନାମ କର, ସେଇଥିରେ କୃତାର୍ଥ ହୋଇଯିବ । ନାମ କର, ଆଉ ଜଡ଼ ଚେତନ ସମସ୍ତଙ୍କୁ ପ୍ରଣାମ କରିବା ଅଭ୍ୟାସ କର ।

ହରିନାମ ବ୍ରତଂ ଯସ୍ୟ ହରିନାମ ଚ ଯତ୍ତପଃ ।
ସ୍ୱୟଂ ଭବାର୍ଣ୍ଣବାତ୍ ତ୍ରାତା ଗୋବିନ୍ଦୋ ମୁନିପୁଙ୍ଗବ ॥

ଯାହାଙ୍କର ହରିନାମ ବ୍ରତ, ହରିନାମ ତପସ୍ୟା, ହେ ମୁନିଶ୍ରେଷ୍ଠ ! ତାଙ୍କୁ ସ୍ୱୟଂ ଗୋବିନ୍ଦ ଭବସାଗରରୁ ତ୍ରାଣ କରନ୍ତି । ଜଡ଼ ଚେତନ ସବୁ ହରିଙ୍କର ଶରୀର ବୋଲି ଭାବି ନାମ କର ।

ଶ୍ରଦ୍ଧୟାବିରତଂ କୃଷ୍ଣନାମଗାନରତୋ ଜନଃ ।
କୁର୍ଯ୍ୟାତ୍ ସଦୈବ ସର୍ବତ୍ର ତଚ୍ଚିନ୍ତାଂ କୃପୟାଚ୍ୟୁତଃ ॥

ଯେଉଁ ବ୍ୟକ୍ତି ଶ୍ରଦ୍ଧା ସହକାରେ ଅବିରତ କୃଷ୍ଣନାମ କୀର୍ତ୍ତନ କରନ୍ତି, ଅଚ୍ୟୁତ ଶ୍ରୀଭଗବାନ୍ ସବୁ ସ୍ଥାନରେ ସବୁ ସମୟରେ ତାଙ୍କର ଚିନ୍ତା କରିଥାନ୍ତି । ଭକ୍ତ ସେତେବେଳେ ପ୍ରେମଲାଭ କରି ପୁଲକରେ ଆନନ୍ଦରେ ଅଶ୍ରୁରେ ନିଜକୁ ହଜାଇ ଦିଅନ୍ତି ।

ଯେ ନାମଯୁକ୍ତା ବିଚରନ୍ତି ଭୂମୌ
ତ୍ୟକ୍ତ୍ୱାଚ କାମାନ୍ ବିଷୟାଂଶ୍ଚ ଭୋଗାନ୍ ।
ତେଷାଞ୍ଚ ମୁକ୍ତିଂ ପରମାଂ ନିନିଷ୍ଠାଂ
ଦ୍ୟାସ୍ୟାମି ନିତ୍ୟଂ ମନସା ନିଯୁକ୍ତଃ ॥

ଶ୍ରୀଭଗବାନ୍ କହିଛନ୍ତି—ଯେଉଁମାନେ ମୋର ନାମଯୁକ୍ତ ହୋଇ କାମନା ବିଷୟଭୋଗ ସମସ୍ତ ତ୍ୟାଗ ପୂର୍ବକ ପୃଥିବୀରେ ଭ୍ରମଣ କରନ୍ତି, ସେମାନଙ୍କୁ ମୁଁ ମୁକ୍ତି ଏବଂ ପରମନିଷ୍ଠା ଦାନ କରେ । ପ୍ରେମ ଛଡ଼ା ପରମାଶାନ୍ତି ମିଳେ ନାହିଁ । ଭଗବତ୍ ପ୍ରେମ ପଞ୍ଚମ ପୁରୁଷାର୍ଥ, ତାହା ସେହି କେବଳ ଦାନ କରନ୍ତି ।

ନାହଂ ବେଦୈର୍ନ ତପସା ନେଜ୍ୟୟା ନାପି ତୀର୍ଥତଃ ।
ସନ୍ତୁଷ୍ୟାମି ଦ୍ୱିଜଶ୍ରେଷ୍ଠ ଯଥା ନାମ୍ନାଂ ପ୍ରକୀର୍ତ୍ତନାତ୍ ।
ଗାନେନ ନାମଗୁଣସ୍ତୋମୈର୍ମମ ସାଯୁଜ୍ୟମାପ୍ନୁୟାତ୍ ॥
ଅଦ୍ଭୁତରାମାୟଣ

ଶ୍ରୀଭଗବାନଙ୍କର ଶ୍ରୀମୁଖବାଣୀ—ବେଦ ତପସ୍ୟା ଯଜ୍ଞ ଓ ତୀର୍ଥଦ୍ୱାରା ମୁଁ ସେପରି ସନ୍ତୁଷ୍ଟ ହୁଏ ନାହିଁ, ନାମ କୀର୍ତ୍ତନ ଦ୍ୱାରା ଯେପରି ହୋଇଥାଏ; ମୋର ନାମ ଓ ଗୁଣଗାନ କଲେ ସାଯୁଜ୍ୟ ମୁକ୍ତି ଲାଭ ହୁଏ ।

ଖଂ ବାୟୁମଗ୍ନିଂ ସଲିଲଂ ମହୀଞ୍ଚ
ଜ୍ୟୋତୀଂଷି ସତ୍ତ୍ୱାଣି ଦିଶୋ ଦ୍ରୁମାଦୀନ୍ ।
ସରିତ୍ ସମୁଦ୍ରାଶ୍ଚ ହରେଃ ଶରୀରଂ
ଯତ୍ କିଞ୍ଚ ଭୂତଂ ପ୍ରଣମେଦନନ୍ୟଃ ॥

ସ୍ଥାବର ଜଙ୍ଗମାତ୍ମକ ଚରାଚର ବିଶ୍ୱବ୍ରହ୍ମାଣ୍ଡ ହରିଙ୍କର ଶରୀର —ଏହା ଭାବି ସମସ୍ତଙ୍କୁ ପ୍ରଣାମ କର, ଆଉ ନାମ କର ।

ତନମନସେ ଭଜନ ନବନ ପଡ଼େ ତୋ ବଚନ ସେ ହୀ ଭଜନ କରନା ଚାହିୟେ । ଭଜନ ମେଁ ସ୍ୱୟଂ ଐସୀ ଶକ୍ତି ହୈ ଜିସକେ ପ୍ରତାପ ସେ ଆଗେ ଚଲ କର ଆପନେ ଆପ ହୀ ସବ କୁଛ ଭଜନ-ମୟ ହୋ ଯାତା ହୈ ॥

ଔର ଭଜନ ମେଁ ଆଜ କାଲ୍‌କେ ଦୁର୍ବଲ ପ୍ରକୃତିକେ ନର-ନାରିୟୋଁକେ ଲିୟେ ସବସେ ଅଧିକ ଉପଯୋଗୀ ଔର ଲାଭଦାୟକ ହୈ—ଭଗବାନ୍‌କେ ନାମକା ଜପ ଔର କୀର୍ତ୍ତନ । ବସ, ଜପ ଆର କୀର୍ତ୍ତନପର ବିଶ୍ୱାସ କରକେ ନାମକା ଶରଣ ଲେ ଲୋ, ନାମ ଆପହୀ

ଶକ୍ତି ସେ ଅପ୍‌ନେ—-ଆପହୀ ତୁମେଁ ଅପନା ଲେଗା । ଔର ନାମ ନାମୀ ମେଁ ଅଭେଦ ହୈ, ଇସ୍‌ଲିୟେ ନାମକେ ଦ୍ୱାରା ଅପନାୟେ ଜାକର ନାମୀ ଭଗବାନ୍‌କେ ଦ୍ୱାରା ତୁମ ସହଜହୀ ଅପନାୟେ ଜାଓଗେ । ସ୍ୱାଦ୍ ଚକ୍‌ଖୋ, ଜିସକୋ ଭଗବାନ୍ ନେ ଆପନା ଲିୟା ଉସୀକା ଜନ୍ମ ଔର ଜୀବନ ସଫଲ ହୈ ଧନ୍ୟ ହୈ ।

କଳିଯୁଗରେ ସହଜରେ ମିଳନ୍ତି ନାମ ଓ ଲୀଳାଚିନ୍ତା ଦ୍ୱାରା । ନାଦଯୋଗୀ ମଧ୍ୟ ଲୀଳାଚିନ୍ତା ଦ୍ୱାରା ପ୍ରେମଲାଭ କରିବାକୁ ସମର୍ଥ ହୁଅନ୍ତି । ସବୁ ସେହି, ସବୁ ସେହି, ସବୁ ସେହି ।

ଶିଷ୍ୟ—ଦେବ । ଏହି ଶ୍ରୀଶ୍ରୀନାଦବ୍ରହ୍ମଲୀଳାମୃତ ଶୁଣି ମୁଁ କୃତାର୍ଥ ହେଲି । ଆଶୀର୍ବାଦ କରନ୍ତୁ ଯେପରି ଆପଣଙ୍କ ଚରଣରେ ମୋର ଦୃଢ଼ ଅନୁରାଗ ହେଉ । ମୋର କୋଟି କୋଟି ପ୍ରଣାମ ଗ୍ରହଣ କରନ୍ତୁ ।

ଗୁରୁ—ଶ୍ରୀଭଗବାନଙ୍କ କୃପାରୁ ତୁମେ ପରମା ଶାନ୍ତି ଲାଭ କର । କେବଳ ତୁମେ ନୁହଁ, ଶ୍ରୀଶ୍ରୀନାଦବ୍ରହ୍ମଲୀଳାମୃତ ତୁମକୁ କହି ମୁଁ ମଧ୍ୟ କୃତାର୍ଥ ହେଲି ।

ବିଶାଳବିଶ୍ୱସ୍ୟ ବିଧାନବୀଜଂ
ବରଂ ବରେଣ୍ୟଂ ବିଧି-ବିଷ୍ଣୁ-ସର୍ବୈଃ ।
ବସୁନ୍ଧରା-ବାରି-ବିମାନ-ବହ୍ନି
ବାୟୁ-ସ୍ୱରୂପଂ ପ୍ରଣବଂ ବିବନ୍ଦେ ।
ଧ୍ୟାନଂ ବଳାତ୍ ପରମହଂସକୁଳସ୍ୟ ଭିନ୍ଦନ୍
ନିନ୍ଦନ୍ ସୁଧାମଧୁରିମାନମଧୀରଧର୍ମା ।
କନ୍ଦର୍ପଶାସନଧୁରାଂ ମୁହୁରେଷ ଶଂସନ୍
ବଂଶୀଧ୍ୱନିର୍ଜୟତି କଂସନିସୂଦନସ୍ୟ ॥

ନାଦାତ୍ମକଂ ନାଦବୀଜଂ ପ୍ରଯତଂ ପ୍ରଣବସ୍ଥିତମ୍ ।
ବନ୍ଦେ ତଂ ସଚ୍ଚିଦାନନ୍ଦଂ ମାଧବଂ ମୁରଲୀଧରମ୍ ॥
ରାମଂ ରାମାନୁଜଂ ସୀତାଂ ଭରତଂ ଭରତାନୁଜଂ ।
ସୁଗ୍ରୀବଂ ବାୟୁ-ସୂନୁଞ୍ଚ ପ୍ରଣମାମି ପୁନଃ ପୁନଃ ॥
କାମତୋଽକାମତୋ ବାପି ଯତ୍ କରୋମି ଶୁଭାଶୁଭମ୍ ।
ତତ୍ ସର୍ବଂ ତ୍ୱୟି ସନ୍ନ୍ୟସ୍ତଂ ତ୍ୱତ୍‌ପ୍ରଯୁକ୍ତଃ କରୋମ୍ୟହମ୍ ॥

—୦—

ଜୟଗୁରୁ—ଶ୍ରୀଗୁରୁ

# ଶ୍ରୀଶ୍ରୀନାଦଲୀଳାମୃତ ଉପସଂହୃତ

## ନାଦୋପାସନା

୧ । ନାଦାନୁସନ୍ଧାନକାଳ୍ପେ ଆସନସ୍ଥ ହୋଇ ଜଳଶୁଦ୍ଧ ଆସନଶୁଦ୍ଧି କରି ସୂର୍ଯ୍ୟମଣ୍ଡଳରେ ଗୁରୁ ଓ ଇଷ୍ଟଦେବତାଙ୍କର ଧ୍ୟାନ କରି ପ୍ରଣାମାନ୍ତେ ମସ୍ତକରେ ଗୁରୁଦେବଙ୍କର ଧ୍ୟାନ କରିବେ ।

୨ । ସୂର୍ଯ୍ୟ ସ୍ଥାବର-ଜଙ୍ଗମ ସମସ୍ତଙ୍କର ଆତ୍ମା, ସୂର୍ଯ୍ୟଙ୍କର ରଶ୍ମି ମନୁଷ୍ୟର ନାଡ଼ିସମୂହ ସହିତ ଏକ ହୋଇ ରହିଛି, ଯେପରି ଗ୍ରାମରୁ ଗ୍ରାମାନ୍ତରକୁ ଯିବା ବାଟ—ସେହିପରି ନାଡ଼ିସମୂହରୁ ସୂର୍ଯ୍ୟ-ମଣ୍ଡଳ ପର୍ଯ୍ୟନ୍ତ ଗୋଟିଏ ପଥ ବିସ୍ତୃତ ହୋଇଅଛି, ସୂର୍ଯ୍ୟଙ୍କର ରଶ୍ମିଦ୍ୱାରା ମୋର ଭିତର ବାହାର ଆଚ୍ଛାଦିତ—ଏହିପରି ଧ୍ୟାନ କରିବ ।

୩ । ସେହି ସୂର୍ଯ୍ୟରଶ୍ମି ସୂର୍ଯ୍ୟମଣ୍ଡଳସ୍ଥ ଇଷ୍ଟଦେବତାଙ୍କର କୃପାଦୃଷ୍ଟି—ତନ୍ମଧ୍ୟରେ ମୁଁ ବୁଡ଼ି ରହିଛି—ଏହିପରି ଧ୍ୟାନ କରିବାକୁ ହେବ ।

୪ । ସ୍ୱର୍ଗଦ୍ୱାରର ପାଞ୍ଚଟି ଦ୍ୱାରପାଳ ଅଛନ୍ତି—ସେମାନଙ୍କର ଉପାସନା କରିବା ପ୍ରୟୋଜନ । ପ୍ରଥମ—ହୃଦୟରେ "ପ୍ରାଣାୟ ପ୍ରାଣନାଥାୟ ପ୍ରିୟାୟ ପରମାତ୍ମନେ ନମଃ" ବୋଲି ମନେ ମନେ ପ୍ରଣାମ କରି ଦ୍ୱିତୀୟ—ଗୁହ୍ୟଦେଶରେ "ଅପାନାୟ ନମଃ"—ବୋଲି ପ୍ରଣାମ କରି ତୃତୀୟ—ସର୍ବାଙ୍ଗରେ "ବ୍ୟାନାୟ ନମଃ" ବୋଲି ପ୍ରଣାମ ପୂର୍ବକ ଚତୁର୍ଥ—ନାଭିରେ "ସମାନାୟ ନମଃ" ବୋଲି ପ୍ରଣାମ କରି ପଞ୍ଚମ—କଣ୍ଠରେ "ଉଦାନାୟ ନମଃ" ବୋଲି ପ୍ରଣାମ କରିବ ।

୫ । ଗୁହ୍ୟଦେଶରେ ମୂଳାଧାରରେ ବାମରେ "ଇଡ଼ାୟୈ ନମଃ", ଦକ୍ଷିଣରେ "ପିଙ୍ଗଳାୟୈ ନମଃ", ସୁଷୁମ୍ନା ମଧ୍ୟରେ ବଜ୍ରାୟୈ ନମଃ" ବୋଲି ପ୍ରଣାମ କରିବ ।

୬ । ମୂଳାଧାରରେ ଚତୁର୍ଦ୍ଦଳ ପଦ୍ମ ଅଛି, ତା ମଧ୍ୟରେ ତ୍ରିକୋଣମଣ୍ଡଳରେ ଶିବଲିଙ୍ଗ ଅଛନ୍ତି । ତାହାଙ୍କୁ (ସାର୍ଦ୍ଧତ୍ରିବଳୟା- କାରରେ—ସାଢ଼େ ତିନି ପରସ୍ତ) ଘେରି କୁଳକୁଣ୍ଡଳିନୀ ନିଦ୍ରିତା ଅଛନ୍ତି; "କୁଣ୍ଡଳିନ୍ୟୈ ନମଃ" ବୋଲି ପ୍ରଣାମ ପୂର୍ବକ "ସଦାନନ୍ଦମୟୀ ମା—କରୁଣାମୟୀ ଗୁରୋ"—ଏହିପରି ପାଞ୍ଚମିନିଟ୍ ଦଶମିନିଟ୍ ପନ୍ଦର ମିନିଟ୍ ଡାକିଲେ ଉତ୍ତର ମିଳିବ, ସମ୍ଭବ ହେଲେ ଯେ ପର୍ଯ୍ୟନ୍ତ ଉତ୍ତର ନ ପାଇବ ସେ ପର୍ଯ୍ୟନ୍ତ ଡାକିବେ ।

୭ । ମୂଳାଧାରଠାରୁ ବ୍ରହ୍ମରନ୍ଧ୍ରପର୍ଯ୍ୟନ୍ତ ପଦ୍ମସୂତ୍ରପରି ସୂକ୍ଷ୍ମ ଜ୍ୟୋତିର୍ମୟୀ ସୁଷୁମ୍ନା ନାଡ଼ିର ଧ୍ୟାନ କଲେ ନାଦଯୋଗୀ ସତ୍ୱର କୃତାର୍ଥ ହେବେ ।

୮ । କ୍ରୀଡ଼ା ଚିନ୍ତା କଲେ ନାଦର ଧ୍ୟାନ ସରସ ଭାବରେ ହେବ ।

୯ । ସମସ୍ତ ଚିନ୍ତା ତ୍ୟାଗକରି ନାଦରେ ଧ୍ୟାନ ଦେଲେ ଯୋଗ-ସାମ୍ରାଜ୍ୟ ନିଶ୍ଚୟ ଲାଭ ହେବ ।

୧୦ । ସୂକ୍ଷ୍ମନାଦରେ ମସ୍ତକସ୍ଥ ନାଦରେ ଧ୍ୟାନ ଦେବେ ।

୧୧ । ନାଦଯୋଗୀ ପ୍ରଥମେ ଖଣ୍ଡ ମୌନ—ପରେ ଅଖଣ୍ଡ ମୌନ ଗ୍ରହଣ କଲେ ନାଦର ପ୍ରକୃତ ରୂପ ଲାଭ କରିବାକୁ ସମର୍ଥ ହୁଅନ୍ତି ।

---

